# ଆମ ପାଠପଢ଼ା ସମୟ

(୧୯୩୦-୪୪)

*ସ୍ମୃତିଚାରଣ*

**ବିଷ୍ଣୁଚରଣ ମହାନ୍ତି**

*ପ୍ରକାଶକ :*

**ଶିକ୍ଷା ସନ୍ଧାନ**

ଏନ୍.ଡି.-୭, ୨ୟ ମହଲା

ଭି.ଆଇ.ପି ଏରିଆ

ପୋ-ଆଇ.ଆର୍.ସି. ଭିଲେଜ

ଭୁବନେଶ୍ୱର-୭୫୧୦୧୫

ଦୂରଭାଷ : ୦୬୭୪-୨୫୫୬୧୦୯

ଆଇ.ଏସ୍.ବିନ-୧୩:୯୭୮-୮୧-୮୭୯୮୨-୬୪-୭

ପ୍ରଥମ ସଂସ୍କରଣ : ୧୪, ଏପ୍ରିଲ ୨୦୧୧

*ମୁଦ୍ରଣ :*

**ଜଗନ୍ନାଥ ଗ୍ରାଫିକ୍ସ**

୩୯୩, ସହିଦନଗର, ଭୁବନେଶ୍ୱର

ଫୋନ୍-୯୪୩୭୧୧୯୯୧୧

ମୂଲ୍ୟ - ଟ. ୭୫/-

## AMA PATHAPADHA SAMAY

1930-44

*Writer :*

**Bishnu Charan Mohanty**

*Publisher :*

**SIKSHA SANDHAN**

N.D-7, 2nd Floor

VIP Area, IRC Village

Bhubaneswar - 751015

Phone : 0674-2556109

ISBN -13:978-81-87982-64-7

*Printing :*

**Jagannath Graphics**

393, Sahid Nagar, Bhubaneswar

Ph. : 9437119911

Price : ₹ 75.00

# ଉତ୍ସର୍ଗ



✓ କାଙ୍ଗାଳିଚରଣ ମହାନ୍ତି

ଜନ୍ମ : ୧୮୮୮

ମୃତ୍ୟୁ : ୧୯୬୦ ଗୋଷ୍ଠାଷ୍ଟମୀ

*ମୋର ପରମପୂଜ୍ୟ ପିତା ଯେ ଅବିଶ୍ୱସନୀୟ ଦାରିଦ୍ର୍ୟ ମଧ୍ୟରେ ଅନାଦର ଓ ଅମର୍ଯ୍ୟାଦା ସହି ତାଙ୍କର ଏକମାତ୍ର ପୁତ୍ରକୁ ତାଙ୍କ ଇପ୍ସିତ ସେଇ ଯୁଗର ହାକିମ କରାଇପାରିଲେ ଓ ତାକୁ କହିଥିଲେ 'ଆମେ ଦୁଃଖୀ ଲୋକ, ତାଙ୍କରି କଥା ତମେ ସବୁବେଳେ ମନେ ରଖିଥିବ' ।*

*ତାଙ୍କରି ସ୍ମୃତିରେ*

- ଅଧମ ପୁତ୍ର

# ଅବତାରଣା

ମୋର ମଧ୍ୟମା କନ୍ୟା ନୟାଗଡ଼ କଲେଜର ପ୍ରାଣୀବିଜ୍ଞାନ ରିଡର ବୁଲମା (କବିତା) ତାର ଜଣେ ବାନ୍ଧବୀଙ୍କର ପିତାଙ୍କର ଆତ୍ମଜୀବନୀ ପଢ଼ି ମତେ ନିଜ କଥା ଲେଖିବାକୁ କହିଲା । ଚାକିରି ଜୀବନରେ ମୋର ଦୁଃଖ ସୁଖ, ତିକ୍ତ ଅଭିଜ୍ଞତା, ପ୍ରବଳର ଅତ୍ୟାଚାର, ସ୍ତୋତ୍ରଂ କସ୍ୟ ନ ତୁଷ୍ଟୟେ ଏହି ନୀତିବାକ୍ୟ ନ ମାନି ନାନା ପ୍ରକାରର ଲାଞ୍ଛନା ଏ ସବୁ ମୋର 'ରୋମନ୍ଥନ ଏକ ବ୍ୟର୍ଥ ଅତୀତର' ପୁସ୍ତକରେ ଲିପିବଦ୍ଧ । ବହିଟିର ଦ୍ୱିତୀୟ ସଂସ୍କରଣ ଶିକ୍ଷାସନ୍ଧାନ ଭୁବନେଶ୍ୱର ଦ୍ୱାରା ପ୍ରକାଶିତ ହୋଇଛି । ଗାଁର ରଷଭାଇ (୯୨) ଦିନେ କହିଲେ ତମ ବାପା ଗାଁରେ କରଣମାନଙ୍କ ମଧ୍ୟରେ ନିର୍ଦ୍ଧନତମ ଥିଲେ ତଥାପି ତମେ କେମିତି ଗାଁର ପ୍ରଥମ ଗ୍ରାଜୁଏଟ ହେଲ ? ରଷଭାଇ ଜଣେ ସଫଳ ପ୍ରାଥମିକ ଶିକ୍ଷକ ଓ ଭାଗ୍ୟବାନ ଗୃହସ୍ଥ । ନିଜ ପିଲାମାନଙ୍କ ମଧ୍ୟରୁ ଦୁଇଜଣଙ୍କୁ ଡାକ୍ତର ଓ ଅନ୍ୟମାନଙ୍କୁ ସୁପ୍ରତିଷ୍ଠିତ କରାଇ ପାରିଛନ୍ତି । ମୋର ଦୃଢ଼ ମନୋବଳ, ସବୁ ପ୍ରକାର ଅସୁବିଧାର ମୁକାବିଲା ଶକ୍ତି ସହିତ ମୋର ନୀତିନିୟମ ଓ ଧର୍ମଭୀରୁ ବାପାଙ୍କର ସବୁ ସମୟରେ ମୋତେ ଦେବା ଦମ୍ଭ ଓ ନିଜେ ନାନା ଅଭାବନୀୟ ପରିସ୍ଥିତିରେ ପଡି ମଧ୍ୟ ମୋର ରୋଜଗାରକୁ ଆଶା ନ ରଖି ମୋର ଶିକ୍ଷା ସମାପ୍ତିକୁ ଅନେଇଥିବା ଏହାର ମୂଳ ଥିଲା । ପୁଣି ଗାଆଁର ଓ ଗାଆଁ ବାହାରର ଅନେକ ସହୃଦୟ ସହାନୁଭୂଶୀଳ ବ୍ୟକ୍ତି ମୋତେ ନାନା ପ୍ରକାର ସାହାଯ୍ୟ କରି ଆଜୀବନ ଋଣୀ କରିଛନ୍ତି । ଭାବିଲି ମୋର ପାଠପଢ଼ା ସ୍ମୃତି ସହିତ ଆମ ଗାଁର ଷାଠିଏ ବରଷର ସାମାଜିକ ଚିତ୍ର ଭବିଷ୍ୟତ ପାଇଁ ଲେଖି ରଖିବି ।

ଏହି ଉଦ୍ଦେଶ୍ୟରେ ଆଜି ରଥ ଦ୍ୱିତୀୟା ତା ୧୩-୭-୨୦୧୦ ଦିନ ମୋର ସ୍ମୃତି ଚାରଣ ଆରମ୍ଭ କରି ବିଦ୍ୟାରମ୍ଭଠାରୁ ବି.ଏ. ପାସ୍ ଗଣେଶ ଚତୁର୍ଥୀ ତା ୧୧-୯-୨୦୧୦ରେ ଶେଷ କଲି । ସାଧ୍ୟମତେ ସଠିକ ତଥ୍ୟ ଦେବାକୁ ଉଦ୍ୟମ କରିଛି ।

ସହିଦନଗର, ଜଗନ୍ନାଥଗ୍ରାଫିକ୍ସର ସ୍ୱତ୍ୱାଧିକାରୀ ଶ୍ରୀ ଅନନ୍ତ କୁମାର ରଥ ଛପା, ଫଟୋ, ମାନଚିତ୍ର ଓ ପ୍ରଚ୍ଛଦପଟର ଚିତ୍ର ପ୍ରସ୍ତୁତିରେ ସାହାଯ୍ୟ କରି ଅଳ୍ପସମୟରେ ପ୍ରକାଶ କରାଇ ପାରିଥିବାରୁ ମୋର ଧନ୍ୟବାଦାର୍ହ ।

- ବିଷ୍ଣୁ ଚରଣ ମହାନ୍ତି

# :: ସୂଚୀପତ୍ର ::





# ଗାଁ ନାଁ କଣିଆଁ

ପ୍ରାୟ ଚାରିଶହ ବର୍ଷ ତଳର କଥା । ଭାରତରେ ମୋଗଲମାନେ ରାଜା । ବେପାର କରିବାକୁ ଇଂରେଜମାନେ ଗୋଟିଏ କମ୍ପାନି ଗଢ଼ି ଏ ଦେଶକୁ ଆସିଲେ । ଶାସକ ସମ୍ରାଟଙ୍କୁ ଯଥୋଚିତ ମର୍ଯ୍ୟାଦା ଦେଇ ସୁବିଧା ହାସଲ କଲେ । ଉପକୂଳମାନଙ୍କରେ ସୁବିଧା ଜାଗାରେ ବନ୍ଦର ଦେଖି ସେଇଠାରୁ ଜାହାଜ ଚଳାଚଳ କରେଇଲେ । ପୂର୍ବ ଉପକୂଳରେ ସେମିତି ଆନ୍ଧ୍ରପ୍ରଦେଶର ମସଲିପଟନରେ ସେମାନଙ୍କର ଗୋଟିଏ ବାଣିଜ୍ୟ କେନ୍ଦ୍ର ଥାଏ । ସେଠାରେ ଥରେ ମାଲମତାର ଅଭାବ ପଡ଼ିଲା । ଲୁଗାପଟା କର୍ପାସବସ୍ତ୍ର ସେମାନେ ନିଜ ଦେଶକୁ ଭାରତରୁ ନେଉଥାଆନ୍ତି । ତାଙ୍କ ଦେଶରେ ଶିଳ୍ପ ବିପ୍ଳବ ହୋଇ ନଥାଏ । କେତେ ଜଣ ଉଦଯୋଗୀ ନାବିକ ଗଙ୍ଗାନଦୀ ମୁହାଣ ଆଡ଼କୁ ଉତ୍ତର ଦିଗରେ ଚାଲିଲେ । କିଛିବାଟ ଯାଇ ପଟୁଆନଦୀ ମୁହାଣରେ ହରିଶପୁର ଦେଖି ଉଚହାଇଲେ । ଛୋଟ ଡଙ୍ଗାରେ ମାଲ ଧରି ଉଜାଣି ଉଠିଲେ । କେଶିଦା ବୋଲି ଜାଗାଟିଏ ପଡିଲା । ଛକଜାଗା । କଟକକୁ ରାସ୍ତା ଅଛି । ସେଠାରୁ ସେମାନେ ଆଗକୁ ଚାଲିଲେ । ବାଟରେ ପଡିଲା ବାଲିକୁଦା ବେଣାହାର ପ୍ରଗନାର ବଡଗ୍ରାମ । ଆହୁରି ଆଗକୁ ଗଲେ । ହରିହରପୁରରେ ପହଞ୍ଚିଲେ । ସେଠାରେ କିଛିଦିନ ରହିଲେ । କଟକ ଆଡ଼କୁ ଚାଲିଲେ ରାଜଶକ୍ତିର ଅନୁମୋଦନ ଆଶାରେ । ସେଠାରେ ରାଜା, ମାଲକଣ୍ଠି (ମୁକୁନ୍ଦଦେବ) ତାଙ୍କୁ ଭଲ ବ୍ୟବହାର ଦେଖାଇଲେ । ଓଡ଼ିଶାରେ ସେମାନେ ଆସ୍ଥାନ ଧୀରେ ଧୀରେ ଭଲଭାବେ ଜମାଇଲେ । କାଳକ୍ରମେ ଏହି ଇଷ୍ଟ ଇଣ୍ଡିଆ କମ୍ପାନୀ ବେପାର ସାଙ୍ଗରେ ରାଜ୍ୟ ଦଖଲ କଲେ । ସେତେବେଳର




ସୌଜନ୍ୟ : ଜନଗଣନା ରିପୋର୍ଟ ୨୦୦୧

ବଡ ରାଜଶକ୍ତି ସହିତ ଲଢ଼େଇ କଲେ । ରାଜ୍ୟ ଖୁବ୍ ବଡ଼ ହୋଇଗଲା । ଲୋକଙ୍କ ମନରେ ବିରକ୍ତି ଆସିବାରୁ ସେମାନେ ଏକାଠି ହୋଇ ବିଦ୍ରୋହ କଲେ । ଅଠରଶହ ସତାବନ ମସିହା କଥା । ଯାହାକୁ ସେମାନେ କହିଲେ ସିପାହୀ ବିଦ୍ରୋହ । ଇଲଣ୍ଡର ରାଜଶକ୍ତି ଏହାପରେ ସେମାନଙ୍କୁ ରାଜ୍ୟ ଶାସନରୁ ଅବ୍ୟାହତି ଦେଇ ନିଜେ ଶାସନ ଭାର ନେଲେ । ମହାରାଣୀ ଭିକ୍ଟୋରିଆ ଭାରତ ସାମ୍ରାଜ୍ଞୀ ଆଖ୍ୟା ଧାରଣ କଲେ । ୧୮୦୩ ମସିହାରେ ଦେଶରେ ମରହଟ୍ଟା ଶାସନ ଟଳମଳ ହେଉଥାଏ । ଓଡ଼ିଶା ତାଙ୍କର ଦଖଲରେ ମାତ୍ର ସେମାନଙ୍କର ବର୍ଗୀ ଅଶ୍ୱାରୋହୀ ସୈନ୍ୟମାନେ ଏପରି ଜୁଲମ କରୁଥାଆନ୍ତି ଯେ ଲୋକେ ସେଇ କୁଶାସନର ଅନ୍ତ ଖୋଜୁଥାଆନ୍ତି । ଇଂରେଜମାନେ ଏତିକି ବେଳେ ଓଡ଼ିଶା ଦଖଲ କଲେ । କଟକ ପୁରୀ ବାଲେଶ୍ୱର ତିନି ଜିଲ୍ଲା । ଦକ୍ଷିଣ ଓଡ଼ିଶା ଆଗରୁ ସେମାନେ ନିଜାମଙ୍କ ହାତରୁ ନେଇଥାଆନ୍ତି । ସେତେବେଳେ ବାଲେଶ୍ୱର ଜିଲ୍ଲାରେ ଏବର ମେଦିନିପୁର ଜିଲ୍ଲାର ବହୁତ ଓଡ଼ିଶାଭାଷୀ ଅଞ୍ଚଳ ମଧ୍ୟ ରହିଥାଏ । କଟକରେ ଶାସନ କର୍ତ୍ତା ରଖି କମ୍ପାନି ଶାସନ ଚଳେଇଲା ।

ମହାରାଣୀ ଭିକ୍ଟୋରିଆ ଶାସନ ନେଲାପରେ ଓଡ଼ିଶାରେ ୧୮୬୬ ମସିହାରେ ବଡ ଦୁର୍ଭିକ୍ଷ ପଡିଲା । ଗଜପତି ରାଜାଙ୍କ ନ'ଅଙ୍କରେ ଘଟିଥିବା ଯୋଗୁ ଏହା ନଅଙ୍କ ଦୁର୍ଭିକ୍ଷ । ବହୁତ ଜନକ୍ଷୟ ହେଲା । ପଶୁସଂପଦ ମଧ୍ୟ ସେମିତି ପ୍ରାୟ ଶୂନ୍ୟ ହେଲା । ସରକାରୀ ହେଲା ଯୋଗୁ ଦୁର୍ଭିକ୍ଷ କରାଳ ରୂପ ନେଲା । ଏହା ଶେଷରେ ଶାସକଙ୍କୁ ମଧ୍ୟ ଜଣାପଡିଲା । ଲୋକଙ୍କ ଚାଷ ମୂଳବ୍ୟବସାୟ ଓ ଜୀବିକା ଏହା ଖାଲି ବରଷାପାଣି ଉପରେ ଭରସା କରି । ବରଷା ନ ହେଲେ ବିଲରେ ଫସଲ ଉପୁଜାଇ ହେଉନାହିଁ । ବହୁତ ନଦୀ ଅଛି । ପାଣି ଭରିଛି । ସେ ପାଣି ରଇତ ଜମିକୁ ନିଆଯାଇ ପାରିବ । ଖଜଣା ସାଙ୍ଗରେ ସେ ଜଳକର ପଛକେ ଦେବ । ଏଥିପାଇଁ ଗୋଟାଏ କମ୍ପାନି ଗଢ଼ାହେଲା । ସେ ଅଳ୍ପ କିଛି କେନାଲ ଖୋଳିଛି ତାଙ୍କର ଟଙ୍କା ସରିଗଲା । ତେଣୁ ସରକାର କେନାଲ ଖୋଳେଇବା ଦୟିତ୍ୱ ନେଲେ । ମହାନଦୀରେ ଆନିକଟ କଲେ । ସେଠାରୁ କେନାଲ ବାହାର କଲେ ତାଳଦଣ୍ଡା ଯାଏ ନେବାକୁ । ବେପାରୀ ଜାତି । ବନ୍ଦରରୁ ଜାହାଜ ସୁବିଧା ଦେଖିଲେ କାରବାର ବଢ଼ାଇବେ । କଟକ ଜିଲାରେ ମହାନଦୀ ମୁହାଣରେ ଥାଏ ଫଲ୍ସ ପଏର୍ଟ ପାଖରେ ଗୋଟିଏ ବନ୍ଦର । ଏଇଟି ବେଶି ବଡ଼

ନଥାଏ । ବାଲେଶ୍ୱରରେ ଚାନ୍ଦବାଲି ବଡ଼ ବନ୍ଦର । କେନାଲ ତାଳଦଣ୍ଡା ଯାଇ ସେଇଠୁ ଫଲ୍ସ ପଏଣ୍ଟ ସାଙ୍ଗରେ ଜୋଡି ହୋଇଯିବ । ଏଇ କେନାଲରେ ମାଲ ନବା ଆଣିବା ହେବ । ବନ୍ଦରର କାରବାର ବଢ଼ିବ ।

ସେହି କେନାଲ ୭ ମାଇଲ ଆସିଲା । ମହାନଦୀର ମୁହାଣରେ ବନ୍ଦର ଥାଏ । ମାତ୍ର ତାହାର ଶାଖା ଯାହାର ତଳ ଅଞ୍ଚଳରେ ଦେବୀ ନାଁ ଥିଲା ତାର ମୁହାଣରେ ବନ୍ଦର ନଥାଏ । ଅଥଚ ଥରେ ସେଇ ନଦୀ ମୁହାଣବାଟେ ଇଂରେଜମାନେ ଏଇ ରାଇଜ ଭିତରେ ପଶିଥିଲେ ଏ କଥା ସେ ବେପାରୀ ଜାତି ଭୁଲି ନ ଥିଲା । ସେଇ ରାସ୍ତାରେ ୭ ମାଇଲଠାରେ ଫକୀରପଡାରୁ ତାଳଦଣ୍ଡା କେନାଲରୁ ମାଛଗାଁ କେନାଲ ଅଲଗା କରାଗଲା । ପୂର୍ବଦିଗକୁ ଯିବାକୁ । ନାଗପୁର ପାଞ୍ଚମାଇଲଯାଇ ବନ୍ଦ ରହିଲା । ତାଳଦଣ୍ଡା କେନାଲରେ ମାଲନେଇ ଡଙ୍ଗା ଯା ଆସ କରୁଥାଏ । ମାଛଗାଁ କେନାଲରେ ସେଥିପାଇଁ ଲକ ବ୍ୟବସ୍ଥା କରିବାକୁ ଖରଚ ବେଶି ହିସାବ ହେଲା । ଉତ୍ତରରେ ମହାନଦୀ । ଦକ୍ଷିଣରେ କାଠଯୋଡି (ଦେବୀ) । ଦୁଇ ନଈ ମଝିରେ ଏ କେନାଲ ମାନ ଖୋଳାହୋଇଥାଏ । ତା ସାଙ୍ଗରେ ମାଛଗାଁକୁ ଯୋଡିବାକୁ କଟକଠାରୁ ରାସ୍ତା ବାହାରିଲା । ୧୧ ମାଇଲ ପରେ ଫକୀରପଡା ଆଗକୁ ସେହି ରାସ୍ତା ଦିଭାଗ ହୋଇଗଲା । ତାଳଦଣ୍ଡା କେନାଲ ପାଖେ ପାଖେ ଗୋଟିଏ ଗଲା । ଆଉ ଗୋଟିଏ ମାଛଗାଁ ଯାଏ ଆଉ ୩୨ ମାଇଲ । ଏହା ଭିତରୁ କଟକରୁ ୧୪ ଚଉଦ ମାଇଲ ପକ୍କା, ବାକି କଚା । ମାତ୍ର ସେ ରାସ୍ତାରେ ଧାନ ଚାଉଳ ଲୁଣ ବେପାର ଭଲ ଚାଲୁଥାଏ । ମାଲ ସବୁ କଟକ ଆସେ । ଫେରନ୍ତା ମଧ ମାଲ ଯାହା ବାହାରୁ ଆମଦାନି ହୋଇଥାଏ ତାହା ଯାଏ । ତାଳଦଣ୍ଡା ମାଛଗାଁ କେନାଲ । ଲମ୍ବେଇବା କରନାଳି ଖୋଳିବା ଖରଚ ହିସାବ କରାଗଲା । ପ୍ରାୟ ତିନି ସାଢ଼େତିନି କୋଟି ଟଙ୍କା ଉପରେ । ଏହି ସମୟରେ କଲିକତାରୁ ରେଲଲାଇନ ବି.ଏନ୍.ଆର୍. କମ୍ପାନି ଖ୍ରୀ. ୧୯୦୦ ବେଳକୁ କଟକ ଯାଏ ଆଣିଲା । କଟକରେ ଗୋଟିଏ ରେଲଷ୍ଟେସନ ହେଲା । କଟକରେ ପ୍ରାୟ ଷାଠିଏ ହଜାର ଲୋକଙ୍କ ବସତି । ଆଉ କିଏ ହିସାବ କଲା ମାଛଗାଁ ଯାଏ କେନାଲ ଖୋଳି ମାଲ ସରବରାହ ବ୍ୟବସ୍ଥା କରିବା ଅପେକ୍ଷା ରେଲଲାଇନ ନେଲେ ବେଶି ଉପକାର ହେବ । ଖରଚ ହିସାବ ଖୁବ୍ ବେଶି ହେବ ନାହିଁ । ଏତେ ବିଚାର କରି ଶେଷରେ ଦେଖାଗଲା ଦେବୀ ମୁହାଣରେ

ବହୁତ ବାଲିବନ୍ଧ ରହୁଛି । ବଡ଼ ଜାହାଜ ଆସି ହେବ ନାହିଁ । ଛୋଟ ଛୋଟ ଜାହାଜରେ କେତେ ମାଲ ଅଣାଯିବ ? ବନ୍ଦର ଖୋଲା ବନ୍ଦ ରହିଲା । ମାତ୍ର ଯେଉଁ ଜନହିତକର ମାଛଗାଁ କେନାଲ ଓ ମାଛଗାଁ ରାସ୍ତା କାମ ହୋଇସାରିଥିଲା ତାହା ସେମିତି ରହିଗଲା । ଇଏତ ଇତିହାସର କଥା ମାତ୍ର ୧୯୩୦ ମସିହା ବେଳକୁ ଦେଖିବାକୁ ମିଳିଲା ।

କଟକରୁ ମାଛଗାଁ ରାସ୍ତା ଜଗତସିଂହପୁର ଯାଏ ପକ୍କା ଅର୍ଥାତ ସେଇ ୩୯ ମାଇଲରେ ନାଲି ମୋରମ ଗେଙ୍ଗୁଟି ପଡି କାଦୁଅ ନ ହେବା ପରି ହୋଇଛି ତାହା ଉପରେ ଶଗଡ଼ ପରି ଭାରି ଯାନ ଚଳାଚଳ କରେ । କାଦୁଆ ଗହିରରେ ପଥର ପକାଯାଇଥାଏ ଗେଂଗୁଟି ବିଛା ଆଗରୁ । ଜୋର ନାଳ ଅତିକ୍ରମ କରିବାକୁ ଏଥିରେ ପୋଲ ଥାଏ । ଜଳ ନିଷ୍କାସନ ବ୍ୟବସ୍ଥା ଥାଏ । ଜିଲାବୋର୍ଡ ହେଲାଦିନୁ ସେମାନେ ଏହାର ରକ୍ଷଣାବେକ୍ଷଣ କରୁଥାନ୍ତି । ଏଥିପାଇଁ ପଥକର ଖରଚ ହେଉଥାଏ । ଥାନେ ଥାନେ କେତେଜଣ ଓଭରସିଅର (ଜୁନିଅର ଇଂଜିନିୟର) ଏଥିପାଇଁ ଥାଆନ୍ତି । ଏହି ରାସ୍ତା ବାଲିକୁଦା ପରେ ଗୋଟିଏ ଗାଁକୁ ଦିଭାଗ କରି ଆଗେଇ ଯାଇଛି । ଗୋଟାଏ କିଲୋମିଟର ଯାଇ ଅଳକାନଦୀକୁ ମଧ୍ୟ ଦିଭାଗ କରି ପୁଣି ଦିଭାଗ ହୋଇଛି । ଗୋଟିଏ ଯାଇଛି ବୋରିକିନା ଅନ୍ୟଟି ମାଛଗାଁ । ଏଇ ଦିଖଣ୍ଡିତ ହେବା ଗ୍ରାମର ନାମ କଣିଆଁ । ଇଂରେଜ ସରକାର ୧୮୦୩ରେ କଟକ ଦଖଲ କରି ଦେଶରେ ସୁଶାସନ ପ୍ରତିଷ୍ଠା କରିବା ପର୍ଯ୍ୟନ୍ତ ମରହଟ୍ଟା ବର୍ଗୀମାନେ ଦେଶର ମାଲିକ । ମରହଟା ଶାସନ ଟଳମଳ ହେବା ଅବସ୍ଥାରେ ସେମାନେ ପ୍ରକୃତ ମାଲିକ । ବର୍ଗୀ ଅର୍ଥ ମରହଟ୍ଟା ଅଶ୍ୱାରୋହୀ ଆକ୍ରମଣକାରୀ ଦଳ । ଏମାନେ ଖଜଣା ଆଦାୟ ଉତାରେ ମଧ୍ୟ ଜୁଲମକରି ଅଧିକ ଅର୍ଥ ଆଦାୟ କରୁଥିଲେ । ଫସଲ ଭଲ ହେଲେ ଖଜଣା ଉପରେ ଅଧିକା ନେଉଥିଲେ । ଫସଲ ହାନି ହେଲେ ଛାଡମାଡ ନଥିଲା । ବର୍ଗୀ ଆସିବା ଶୁଣିଲେ ଲୋକମାନେ ବଣକୁ ନ ହେଲେ ଦୂର ବନ୍ଧୁ ଗାଁକୁ ଗାଈଗୋରୁ ଛୁଆପିଲା ଧରି ପଳାଇ ଯାଉଥିଲେ । ସେମାନେ ଗଲେ ସୁବିଧା ଦେଖି ଲେଉଟୁଥିଲେ । ଲୋକମାନେ ନିଜ ଆର୍ଥିକ ଅବସ୍ଥା ଜଣାପଡିବ ବୋଲି ଭଲ ଘର କରୁନଥିଲେ । ସୁନାରୂପା ଅଳଙ୍କାର ବ୍ୟବହାର କରୁ ନଥିଲେ । ଏପରିକି ଘରେ ଭଲ କଂସାବାସନ କୁସନ ମଧ୍ୟ ରଖୁନଥିଲେ । ଜଣେ ସ୍ଥାନୀୟ ଶିକ୍ଷିତ ବୟସ୍କଙ୍କ ଠାରୁ ଶୁଣିଛି ଅଧିକାଂଶ ପତରରେ ଖାଉଥିଲେ ।

ଏମିତିକି ପଖାଳ ଖାଇବାକୁ ଗୋଟିଏ ମାଟି ସରା ନ ହେଲେ ଗାତ କରି ତା ଭିତରେ ପତର ପୁରାଇ ଖାଉଥିଲେ । ଯାହା ସଞ୍ଚୟ ଥିଲା ତାକୁ ମାଟିରେ ଗାତ ଖୋଳି ତା ମଧ୍ୟରେ ଲୁଚାଇ ରଖୁଥିଲେ । ସମୟ ସମୟରେ ଏହିସ୍ଥାନ ଭୁଲିଯାଉଥିଲେ ବା ପରିବାରର ଅନ୍ୟ କେହି ତାଙ୍କ ଅଜ୍ଞାତରେ ନେଇ ଯାଉଥିଲେ । ତେଣୁ ବ୍ୟୟ ସଂକୋଚନ ହେତୁ ସାଧାରଣ ଆର୍ଥିକ ଅବସ୍ଥା ଶୋଚନୀୟ ଥିଲା । ମରହଟ୍ଟାଙ୍କର ଗୋଟିଏ ମାହାଲର ନାମ ଥିଲା ନାଗପୁର । ଉର୍ବର ଜମି ଓ ନାଳ ଜୋର ଯୋଗୁ ଜମିରେ ପାଣି ମଡେଇବାର ସୁବିଧା ଫଳରେ ଏହା ଲାଭଦାୟକ ମାହାଲ ଥିଲା । ସେମାନେ ଏହାର ସଦର ମହକୁମା ନାଁ ଦେଲେ ନାଗପୁର। ତାଙ୍କର ଭୋନ୍‌ସ୍ଲାମାନେ ସେଇ ନାମରେ ଏକ ସହରରେ ଆସ୍ଥାନ ଜମେଇ ଥାଆନ୍ତି । ଏହି ମାହାଲର ଗୋଟିଏ କୋଣରେ ଗାଁଟିଏ । ଅଳକା ନଦୀ (ଦେବୀର ଏକ ଶାଖା ନଦୀ) ବଢ଼ି ବେଳେ ବନ୍ଧ ଭାଙ୍ଗି ଚାରିଆଡ଼େ ପଟୁମାଟି ଏ ଗାଁରେ ବିଛେଇ ଦେଇଥାଏ । ଜମି ଅତି ଉର୍ବର । ମାହାଲର କୋଣରେ ଗାଁଟି ବୋଲି ନା ଦେଲେ କୋଣିଆଁ । କାଳକ୍ରମେ ଏହା ହେଲା କଣିଆଁ ।

୨୦୦୧ ମସିହା ଜନଗଣନାରେ ଏହାର ଆୟତନ ୨୩ ହେକ୍ଟର, ଲୋକ ସଂଖ୍ୟା ୧୬୫୧, ଗୃହସ୍ଥ ସଂଖ୍ୟା ୩୭୪, ପୁରୁଷ ସ୍ତ୍ରୀ ସଂଖ୍ୟା ପ୍ରାୟ ସମାନ ଥିଲା ।

**ଗ୍ରାମର ଲୋକଙ୍କ ଜୀବିକା :**

ଗାଁରେ ସବୁ ପାଟକର ଲୋକେ ବାସ କରୁଥିଲେ । ମାତ୍ର କରଣଙ୍କ ସଂଖ୍ୟା ବେଶି । ତା ତଳକୁ ଖଣ୍ଡାୟତ, ଏହା ବ୍ୟତୀତ ଗୁଡ଼ିଆ ତନ୍ତି, ବଢ଼େଇ, କମାର, ଧୋବା, ଗଉଡ଼, ତେଲି ଆଦି ଅନ୍ୟ ଜାତିର ଲୋକ ମଧ୍ୟ ଥାଆନ୍ତି । ସେତେବେଳ କୁହାଯାଉଥିବା ଅନ୍ତ୍ୟଜ (ଦଳିତ) ମାନଙ୍କ ମଧ୍ୟରୁ ପଶ୍ଚିମ ଦିଗରେକେତେ ଘର ବାଉରି ଥାଆନ୍ତି । ସେମାନେ ପ୍ରାୟ ଶ୍ରମଜୀବୀ । ଘରେ ଦିଘର ଲୁଗା ବୁଣନ୍ତି, ସେମାନେ ଅପେକ୍ଷାକୃତ ସ୍ୱଚ୍ଛଳ ଓ ଅନ୍ୟମାନଙ୍କର ଗୁରୁଘର । ସେମାନେ ତାଙ୍କୁ ବାହାଘରବେଳେ ନାମ କର୍ଣ୍ଣମନ୍ତ୍ର ଦିଅନ୍ତି । ସେମାନଙ୍କୁ ଟିକେ ଛାଡ଼ି ଆଉ କେତେଘର ହାଡି ଥାଆନ୍ତି । ସେମାନେ ମଲା ଜନ୍ତୁର ଛାଲ ଉତାରି ତାହା ବିକୁଥିଲେ । କେତେକ ମଲା ଗୋରୁ ମାଂସ ଖାଉଥିଲେ । ଗୋରୋଚନା ଗୋରୁଙ୍କର ପୀତ ବର୍ଣ୍ଣ ଶୁଷ୍କ ପିତ୍ତ । ଏହା

ସେମାନେ ବାହାର କରନ୍ତି । ଏହା ମନ୍ଦଦୃଷ୍ଟି ଏଡାଇବାରେ ଓ ଦେବସେବାରେ ବ୍ୟବହୃତ ହେଉଥିଲା । ଏହାଛଡ଼ା ସେମାନେ ବାହାଘର ଯାନିଯାତ୍ରା, ଜନ୍ମଦିନ ମାନଙ୍କରେ ଢ଼ୋଲ ମହୁରୀ ପେଁକାଳି ଆଦି ବାଜା ବଜାଉଥିଲେ । ସେମିତି ବାଉରୀମାନେ ଶଙ୍ଖ ବଜାଉଥିଲେ । ଶୁଭକାର୍ଯ୍ୟ ଆରମ୍ଭରେ ସେମାନଙ୍କୁ ଏଥିପାଇଁ ଲୋଡା ପଡୁଥିଲା । ସେମାନେ ଏଥିପାଇଁ ଭଲ ନଗଦ ଅର୍ଥ ପାଉଥିଲେ ବା ସମମୂଲ୍ୟର ଶସ୍ୟ ନେଉଥିଲେ । ଉତ୍ତରପୂର୍ବ ଦିଗରେ କେତେଘର କଣ୍ଡରା ଥାଆନ୍ତି । ଜଣେ ତା ଭିତରୁ ପୁରୁଷାନୁକ୍ରମେ ଗାଁର ଚଉକିଦାର । ସେ ମଧ୍ୟ ସବୁରି ଠାରୁ ସ୍ୱଚ୍ଛଳ । ଦେଶ ସ୍ୱାଧିନ ହେବା ପର୍ଯ୍ୟନ୍ତ ଅଛୁଆଁ ମନୋଭାବ ରହିଥିଲା । ଗାଁରେ ବ୍ରାହ୍ମଣ ଗୋଟିଏ ଘର । ସେ ମଧ୍ୟ ଶ୍ରୋତ୍ରୀୟ ନୁହନ୍ତି । ଦେଉଳରେ ପୂଜା ପ୍ରସାଦ ପ୍ରସ୍ତୁତି ସେମାନଙ୍କର କାମ । ସେମାନଙ୍କର ଯଜମାନ ଘର ନଥାଏ । ମାତ୍ର କାହାର କିଛି ଉତ୍ସବ ହେଲେ ରନ୍ଧାବଢ଼ାରେ ସେମାନେ ଲୋଡା ପଡ଼ନ୍ତି । ପଂକ୍ତି ଭୋଜନରେ ଅନ୍ୟ ଜାତିର କେହି ରାନ୍ଧିଲେ ତାହା ସମସ୍ତଙ୍କର ଗ୍ରହଣୀୟ ନଥାଏ । ଗୃହରେ ପୂଜା ପାଠ ବ୍ରତ ଉପନୟନ ଆଦି ପାଇଁ ଶତପଥି ସଞ୍ଚାର ବ୍ରାହ୍ମଣ ଅଳାଭୋର ତେରତାଙ୍ଗ ଶାସନରୁ ପୁରୋହିତ ଆସିଥାନ୍ତି । ସମାଜରେ ସେମାନଙ୍କର ମର୍ଯ୍ୟାଦା ବେଶି । ଅବ୍ରାହ୍ମଣ ସେମାନଙ୍କୁ ଓଳକି (ନମସ୍କାର) ହେଲେ ସେମାନେ ଆଶୀର୍ବାଦ କରୁଥିଲେ । ବ୍ରହ୍ମୋତ୍ତର ନିଷ୍କର ଭୂମି ସେମାନେ ଶାସନରେ ଭୋଗ କରୁଥିଲେ । ଯଜମାନି ସହିତ ମୁଖ୍ୟତଃ ଅଧ୍ୟୟନ ଓ ଅଧ୍ୟାପନା ସେମାନଙ୍କର ବୃତ୍ତି ଥିଲା । ଗାଁରେ ଜନସଂଖ୍ୟା, ଖାଦ୍ୟ ଉତ୍ପାଦନ ଓ ଜମି ପରିମାଣ ଅନୁପାତରେ ବେଶି ଥିଲା । ଚାଷରେ ବେଶି ନାମମାତ୍ର ଚାଷୀ । ଗୋଟିଏ ପରିବାର ଜମିଦାର । ୫/୬ ଟି ପରିବାରରେ ଜମି ପାଞ୍ଚ ଏକରରୁ ଅଧିକା ଥାଏ ଏବଂ ଘରେ ମକଦ୍ଦମ । ସେମାନେ ଜମିଦାରଙ୍କ ତରଫରୁ ତାଙ୍କ ନିର୍ଦ୍ଧାରିତ ଗ୍ରାମରୁ ସରକାରୀ ସ୍ୱୀକୃତିରେ ଖଜଣା ଅସୁଲ ଦାୟିତ୍ୱ ନେଇଥାଆନ୍ତି । ଖଜଣା ଅସୁଲ କରି ତାହା ଉପରେ କମିସନ ପାଆନ୍ତି ଓ କିଛି ମକଦ୍ଦମି ଜମି ଉପଭୋଗ କରନ୍ତି । ଲୋକମାନେ ବାହାରକୁ ଉପାର୍ଜନ ଆଶାରେ ଯାଆନ୍ତି କାରଣ କୃଷି ଆୟ ସମସ୍ତଙ୍କୁ ଜୀବିକାର୍ଜନ ପାଇଁ ଯଥେଷ୍ଟ ନଥାଏ । କେତେକ ସରକାରୀ ବେସରକାରୀ (ଜମିଦାରି, ମଠ ମହନ୍ତ ସିରସ୍ତା)ରେ କାମ କରନ୍ତି । କେହି ଉଦ୍ୟମଶୀଳ ବ୍ୟକ୍ତି କଲିକତା ଯାଇ ସେଠାରେ ଚଟକଳ

(ଝୋଟ କାରଖାନା)ରେ କାମ କରି ଘରକୁ ମାସକୁ ଭଲ ପଇସା ପଠାନ୍ତି । ଘରେ ଦି ଘର ପୁରୀରେ ପଣ୍ଡାଙ୍କର ଧୂଳିଆ ଗୁମାସ୍ତା ଥାଆନ୍ତି ।

ଶ୍ରୀ ଜଗନ୍ନାଥ ମହାପ୍ରଭୁ ସେବକ ପଣ୍ଡାମାନଙ୍କର ଯଜମାନ ନିର୍ଦ୍ଦିଷ୍ଟ ଅଞ୍ଚଳ ଓଡ଼ିଶା ଓ ଭାରତର ଅନ୍ୟ ଅଞ୍ଚଳରେ ଅଛି । ସେମାନେ ପଣ୍ଡାମାନଙ୍କର ତରଫରୁ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ଶୁଖିଲା ମହାପ୍ରସାଦ ନିର୍ମାଲ୍ୟ ତୁଳସୀ ଧରି ଯାଇ ସେହି ଅଞ୍ଚଳ ମାନଙ୍କରୁ ବିଭିନ୍ନ ପର୍ବ ଓ ଉତ୍ସବମାନଙ୍କରେ ଯାତ୍ରୀ ସଂଗ୍ରହ କରି ଆଣନ୍ତି । ଯାତ୍ରୀମାନେ ପଣ୍ଡାମାନଙ୍କର ଲଜିଂ ହାଉସରେ ରହନ୍ତି ଓ ଗୁମାସ୍ତାମାନେ ନିଜ କରାମତି ଅନୁସାରେ ଦରମା ବା କମିସନ ପାଇଥାନ୍ତି । ଏହା ବର୍ଷର ନିର୍ଦ୍ଦିଷ୍ଟ ସମୟରେ ଥାଏ । ଧୂଳି ଗୋଡ଼ରେ ସେମାନେ ଚାରିଆଡେ ବୁଲୁଥିଲାରୁ ଧୂଳିଆ ଗୁମାସ୍ତା ନାଁ ପାଇଥାଆନ୍ତି । ଜଣେ ଦି ଜଣ ପୁରୀ ମଠବାଡ଼ିରେ ଗୁମାସ୍ତା କାମ କରୁଥିଲେ । ଆଉ କେତେଜଣ ଜଗୁଆଳି ନିଯୁକ୍ତି ପାଉଥିଲେ । ନିଜର କର୍ମକୁଶଳତା ଓ ଆନୁଗତ୍ୟ ଉପରେ ଏହା ପୁରୁଷାନୁକ୍ରମିକ ମଧ ହେଉଥିଲା । ମାତ୍ର ସାଧାରଣଲୋକ ଘର ଛାଡ଼ିବାକୁ ବିମୁଖ ଥିଲେ । ଖଣ୍ଡାୟତମାନେ ଚାଷ କରୁଥିଲେ ମଧ ଘରେ ଦିଘରକୁ ଛାଡ଼ିଦେଲେ ଅନ୍ୟମାନଙ୍କ ପାଇଁ ଜମିର ସ୍ୱଳ୍ପତା, କୃଷିଜାତ ମୂଲ୍ୟର କ୍ରମ ହ୍ରାସ ଓ ଖଜଣା ବୃଦ୍ଧି ଯୋଗୁ ଏହା ଲାଭଦାୟକ ନଥିଲା ।

କମାର ବଢ଼େଇ କୃଷି ଉପକରଣ ତିଆରି ଓ ରକ୍ଷଣା ବେକ୍ଷଣରେ ସହାୟକ ଥିଲେ । ଜାଗିରି ଜମି ନପାଉଥିଲେ ସେମାନେ ବରଷକେ ଥରେ ଖାଉନ୍ଦଠାରୁ ପାରିଶ୍ରମିକ ଧାନ ଆକାରରେ ପାଉଥିଲେ । ବାରିକ ଖିଅର ବ୍ୟତୀତ ଶୁଭ ଓ ଅଶୌଚ କାର୍ଯ୍ୟରେ ସହାୟକ ଥିଲା । ଦୂର ଦୂରାନ୍ତରଙ୍କୁ ସେ ମଧ ବାର୍ତ୍ତାବହ ଥିଲା । ବିଶ୍ୱାସନୀୟତା ତାର ପ୍ରଥମ ଯୋଗ୍ୟତା ଥିଲା । ସେମାନେ ବାର୍ଷିକ ପାରିଶ୍ରମିକ ବଡ ଚାଷୀଠାରୁ ଜମି ଜାଗିର ଆକାରରେ ଓ ଅନ୍ୟମାନଙ୍କ ଠାରୁ ଧାନ ବା ପଇସା ଆକାରରେ ପାଉଥିଲେ । ଧୋବା ମଧ ସେମିତି ଜାଗିର ନ ପାଇଥିଲେ ବରଷକୁ କିଛି ଧାନ ବା ନଗଦ ପଇସା ମାଲିକ ଠାରୁ ହାସଲ କରୁଥିଲେ । ଲୁଗା ସଫା ନିମିତ୍ତ ସାବୁନ ବ୍ୟବହାର କେବଳ ସହରରେ ଥିଲା । ଗାଁ ଧୋବା ସୋଡ଼ା ସହିତ କଦଳୀ ବାଉଁଙ୍ଗା ଆଦି ପୋଡି ତାର କ୍ଷାର (ପାଉଁଶ)କୁ ଲୁଗା ସଫାରେ ବ୍ୟବହାର କରୁଥିଲେ । କେହି ମାଂସ ଖାଇବାକୁ

ଇଚ୍ଛା କଲେ ଜନ୍ତୁଙ୍କୁ ମାରି ମାଂସଖଣ୍ଡ ଖାଦ୍ୟୋପଯୋଗୀ କରିବା ତାହାର କାମ ଥିଲା । କାଠ ଜାଳେଣି ପାଇ ଦରକାର ହେଲେ ସେ ଗଛ କାଟି ଖଣ୍ଡ ଖଣ୍ଡ କରି ଜାଳେଣି ପ୍ରସ୍ତୁତ କରୁଥିଲା । କେହି ମରିଗଲେ ଶବ ପୋଡ଼ା ହେବା ପାଇଁ କାଠ ସେ ମଧ ପ୍ରସ୍ତୁତ କରି ଶ୍ମଶାନକୁ ନେଉଥିଲା । ସେମିତି ଗୋପାଳମାନେ ଗାଈ ମହିଷି ପାଳି ଦୁଗ୍ଧ ବେପାର କରୁଥିଲେ । ସବାରି ପାଲିଙ୍କି ଆଦି ବୋହିବାରେ ସେମାନଙ୍କର ସେବା ଅତ୍ୟାବଶ୍ୟକ ଥିଲା । ବାହାଘରରେ ବର ବରଯାତ୍ରୀ ଓ କନ୍ୟାଘରୁ ବୋହୁ ଆଣିବାରେ ମଧ ସେହି ବେହେରା ମାନଙ୍କର ସେବା ଲୋଡ଼ା ପଡୁଥିଲା । ଜାତି ଭେଦ ଏପରି ପ୍ରବଳ ଥିଲା ଯେ କେହି ନିଜ କୁଳ ଧର୍ମ ଛାଡୁନଥିଲେ । ପ୍ରତ୍ୟେକ କୁଳର ଜଣେ କୁଳ ନାୟକ ଥିଲା ଓ ତାର ପ୍ରଭାବ ଏପରି ଥିଲା ଯେ ତାର ଇଲାକା ମଧରେ ତାର ଅଲିଖିତ ନିର୍ଦ୍ଦେଶକୁ କେହି ଅମାନ୍ୟ କରିବାକୁ ସାହସ କରୁନଥିଲେ । ବର୍ଷେ ଦୁଇବର୍ଷ ଅନ୍ତରରେ ଏହି ଜାତିଆଣ ସଭା କୁଳନାୟକଙ୍କ ଆହ୍ୱାନକ୍ରମେ ବିଭିନ୍ନ ଗ୍ରାମରେ ବସି ନିୟମ ଲଙ୍ଘନକାରୀମାନଙ୍କର ଦୋଷର ବିଚାର କରୁଥିଲେ ଓ ଅନ୍ୟମାନଙ୍କ ପରାମର୍ଶ କ୍ରମେ କୁଳନାୟକ ଦଣ୍ଡର ବ୍ୟବସ୍ଥା କରୁଥିଲେ । ଏହା ଅର୍ଥ ଦଣ୍ଡ ବା ଶାରୀରିକ ନିର୍ଯ୍ୟାତନା ଥିଲା । କେତେକ ଜାତିରେ ବାଲ୍ୟବିବାହ ଓ ଅନ୍ୟ କେତେଙ୍କର ବିଧବା ବିବାହ ପ୍ରଚଳିତ ଥିଲା । ଜାତି ଭାଇମାନଙ୍କୁ ଅବହେଳା କଲେ ବିବାହ ଉତ୍ସବ ଆଦିରେ ଭୋଜି ନ ଦେଲେ ଦଣ୍ଡର ବ୍ୟବସ୍ଥା ଥିଲା । ଗୋଟିଏ ଜାତିଆଣ ସଭାରେ ଜଣେ ଦୋଷୀକୁ ଗରାଏ ପାଣି ଗୋଟାଏ ଗୁଆ ଉପରେ ମୁଣ୍ଡରେ ରଖି ଘଣ୍ଟା ଘଣ୍ଟା ଜାତିଭାଇମାନଙ୍କ ଆଗରେ ଠିଆ ହେବା, ଲେଖକ ୧୯୩୦ ମସିହା ପାଖା ପାଖି ସମୟରେ ଦେଖିଛି । ନିଶ ରଖିବା, ଚୁଟି ନ ରଖିବା, ନିଶାସେବନ, କୁଳଚାର ଅମାନ୍ୟ ପ୍ରଧାନ ଅପରାଧ ଥାଏ ।

ବିଦ୍ୟା ଶିକ୍ଷା ସୀମିତ ଥିଲା । ଅତି ଅଳ୍ପ ଲୋକ ନାମ ଦସ୍ତଖତ କରୁଥିଲେ । ନ ହେଲେ ବଦଳରେ ଟିପ ଦେଉଥିଲେ । ତାଛଡ଼ା ପ୍ରତି ପାଟକର ଗୋଟିଏ ସନ୍ତକ ଥାଏ । ଦସ୍ତଖତ ବା ବାମବୃଦ୍ଧାଙ୍ଗୁଠି ଟିପ ବଦଳରେ ଅପାଠୁଆ ଲୋକ ନିଜ ଜାତିର ସନ୍ତକ କଲମ ଛୁଆଇଁ ଦଲିଲମାନଙ୍କରେ ଲେଖାଉଥିଲେ ଓ ଏହା ଆଇନତଃ ଗ୍ରହଣୀୟ ଥିଲା । ଜାତି ମୁଖିଆ କୁଳନାୟକଙ୍କ ନିର୍ଦ୍ଦେଶ ଲଙ୍ଘନ କଲେ ବା ଜମିଦାରଙ୍କର ହୁକୁମ୍

ତାମିଲ କରିବାରେ ତ୍ରୁଟି କଲେ ତାକୁ ନିଆଁ ପାଣି ବାସନ୍ଦ କରା ହେଉଥିଲା । ଏହା ଫଳରେ ସେ ସମାଜରେ ଏକଘରକିଆ ହୋଇ ଅସାମାଜିକ ଜୀବ ଭାବରେ କାଳ କାଟୁଥିଲା । ଏହି ଡର ସେମାନଙ୍କୁ ବାଧ୍ୟ ଓ ସୁବୋଧ କରୁଥିଲା । ମାତ୍ର ଜମିଦାରମାନଙ୍କର ଜୁଲମ ଇଂରେଜ ଶାସନ ଦୃଢ଼ ହେବା ପରେ ମଧ୍ୟ ଅନୁଭୂତ ହେଉଥିଲା । ଖଜଣା ଆଦାୟ ସହିତ ସେମାନେ ନାନା ପ୍ରକାର ବେଆଇନ ପାଉଣା ଅସୁଲ କରୁଥିଲେ । ସରକାରଙ୍କ ଦୃଷ୍ଟିକୁ ଆସିଲେ ଏହା ଦଣ୍ଡନୀୟ ଥିଲେ ମଧ୍ୟ ସେଥିପ୍ରତି କେହି ସାହସ କରୁନଥିଲେ । ବେଆଇନ ପାଉଣା ମାନ ଥିଲା, ଅନେକ । ମୁଖ୍ୟ କେତେଗୋଟି ହେଲା ଖରଡାପଟି (ଅସୁଲ ଦେଲେ ବୋଲି) ବାହାଚିନା, ପତିତପାବନ ଖରଚା, ସୁନିଆଁ, ଦାଖଲଖାରଜ, ବିଶୋଧନ, ପିଆଦା ଖରଚା, ରଫା ଖରଚା, କୁଆଁରପୁନମୀ, ହୋଲିଯାତ୍ରା ଖରଚା, ହାଡି ଖରଚା, ରସଦ ଖରଚା, ମାଗଣ, ପଡିଆ ଉଠିଆ, କଲିକତି ସଲାମି (ଜମିଦାର କଲିକତା ଗଲେ ତାଙ୍କର ସବୁ ପ୍ରଜା ସେଠାରେ କର୍ମନିଯୁକ୍ତି ଥିଲେ ସଲାମି ଦେଇ ସାକ୍ଷାତ) । ଏମିତିକି ହାତୀକିଣା ରାଜସ୍ୱ ଆଦାୟ ସୁବିଧା ନିମିତ୍ତ କେତେକ ଗ୍ରାମକୁ ନେଇ ଗୋଟିଏ ପ୍ରଗଣା । ଆମର ବେଣାହାର ପ୍ରଗଣା । ତାକୁ ଲାଗି ଦେଗାଁ, ବାଖରାବାଦ, ସୁଜାନଗର, କୋଦିଣ୍ଡା, ସାଇବିରି, ସାଇଲୋ ଇତ୍ୟାଦି । ପ୍ରତି ମାହଲରେ ଜଣେ ଜମିଦାର, ଜଣେ ଜମିଦାରର ଏକାଧିକ ମାହାଲ ଥିଲା ମାତ୍ର କ୍ଷୁଦ୍ର ସର୍ପର ବିଷ ଉତ୍କଟରେ ଥିଲା । ଜଗତସିଂହପୁର ଥାନାରେ ୭୯୪ ଓ ତିର୍ତ୍ତୋଲ ଥାନାରେ ୮୧୭ ଗାଁ ଥିଲା । ଜଗତସିଂହପୁର ଜନଗହଳି ସବୁଠୁ ବେଶି । ବର୍ଗ ମାଇଲରେ ପାଞ୍ଚଶ ତେଅସ୍ତରି । ତିର୍ତ୍ତୋଲରେ ସବୁଠୁ କମ୍ ।

ଖଣ୍ଡାୟତମାନଙ୍କ ମଧ୍ୟରେ ମକଦ୍ଦମ ଘର ବେଶି ଜମିର ମାଲିକ ଥିଲେ । ଗଣେଶ୍ୱର ସ୍ୱାଇଁ ଅନେକ ଜମି ନିଜ ଅମଳରେ ଅର୍ଜନ କରିଥିଲେ । ଲୋକେ କହନ୍ତି ଅଧିକାଂଶ ସତ ଉପାର୍ଜିତ ନଥିଲା । ପ୍ରାୟଶ୍ଚିତ ନିମିତ୍ତ ପରବର୍ତ୍ତୀ କାଳରେ କୌଣସି ଜ୍ୟୋତିଷର ପରାମର୍ଶରେ ତାଙ୍କର ଉତ୍ତରାଧିକାରୀ ଗାଁରେ ଶ୍ରୀରଘୁନାଥ ମନ୍ଦିର ନିଜ ବ୍ୟୟରେ ନିର୍ମାଣ କରି ପ୍ରତିଷ୍ଠା ଓ ଦେବାଦେବୀଙ୍କର ନିତ୍ୟ ସେବାପୂଜା ନିମିତ୍ତ ଭୂସଂପତ୍ତିର ବ୍ୟବସ୍ଥା କରିଥିଲେ । ଜମିଦାର ଘର ଗୋଟିଏ ମକଦ୍ଦମ ପାରସୀ ଶବ୍ଦ ।



ଦକ୍ଷିଣ କଟକର କିଲ୍ଲା ଓ ପ୍ରଗଣା

ସୌଜନ୍ୟ : ମାଡକ୍ସ ରିପୋର୍ଟ ୧୮୯୦

ଅର୍ଥ ପ୍ରଧାନ ବା ମୁଖିଆ । ତିନି ପ୍ରକାରର ମକଦ୍ଦମ ଥିଲେ ମୌରସି (ପୁରୁଷାନୁକ୍ରମ) ଖରିଦଦାର ଓ ଜାତି । ସ୍ୱାଇଁ ଘର ମୌରସି ମକଦମ ଥିଲେ । ଶେଷ ମକଦମ ନିଃସନ୍ତାନ ଥିବାରୁ ତାଙ୍କ ସ୍ୱତ୍ୱ ଲୋପ କରାଇ ସେହି ବଂଶର ଜଣେ ଚାଲାଖ ବ୍ୟକ୍ତି ନିଜକୁ ଜାତି ମକଦମ ବୋଲି ଜମିଦାର ଓ ସରକାରୀ ସ୍ୱୀକୃତି କରାଇନେଲେ । ଜାତି ଅର୍ଥ ସବୁ ଜାତିର ଲୋକ ତାଙ୍କୁ ମକଦମ ହେବା ସ୍ୱୀକୃତି ଲୋଡ଼ୁଛନ୍ତି । ଖଜଣା ଅସୁଲ ଦାୟିତ୍ୱ ସହିତ କମିସନ ସ୍ୱରୂପ କିଛି ଜମିଭୋଗ ତାଙ୍କ ପ୍ରାପ୍ୟ ଥିଲା ।

ଇଂରେଜମାନେ ଓଡ଼ିଶା ଦଖଲ କରି ପ୍ରଥମେ ପ୍ରଜାମାନଙ୍କ ସ୍ୱତ୍ୱାସ୍ୱତ୍ୱ ନିର୍ଦ୍ଧାରଣ ଓ ତାହା ସହିତ ଦଖଲ ଜମିର କ୍ଷେତ୍ରଫଳ ଠିକ୍ କରିବାକୁ ବସିଲେ । ଜମିଦାର ଥିଲେ ଅନେକ ଯେଉଁମାନଙ୍କର ମାହାଲ ଥିଲା ଏକ ବା ତତୋଧିକ । କଟକ ଜିଲ୍ଲାରେ ବଡ଼ମାହାଲ ପ୍ରାୟ ପାଞ୍ଚଶହ । ଛୋଟିଆ ମାହାଲ ସଂଖ୍ୟା ତାର ପ୍ରାୟ ଆଠଗୁଣ । ହାରାହାରି ୧୯୦୦ ମସିହା ବେଳକୁ ସାଧାରଣ ଗୋଟିଏ ମାହାଲର କ୍ଷେତ୍ରଫଳ ଥାଏ ୧୨୬୫ ଏକର ଯାହା ପାଇଁ ଧାର୍ଯ୍ୟ ଖଜଣା ପ୍ରାୟ ୨୪୭ ଟଙ୍କା । ପୁଣି ହରିଶପୁର, ମରିଚପୁର, ସୁକିନ୍ଦା ଦର୍ପଣ, କଳକଳା, ପଟିଆ ଡମପଡା ପରି ଚିରସ୍ଥାୟୀ ବନ୍ଦୋବସ୍ତ ମାହାଲ । ସେମାନେ ସରକାରଙ୍କୁ କେତେକ ଜମା ଦେବେ ତାହା ସବୁଦିନ ପାଇଁ ଧରାବନ୍ଧା । ଅନେକ ବଡସାନ ମାହାଲରେ ପ୍ରଜାର ଜମିମାପ ହୋଇ ଜମି ଦଖଲ ହିସାବ ହେବା ପରେ ଖଜଣା ଧାର୍ଯ୍ୟ ହେଉଥିଲା । ମାପ କରିବାକୁ ପଦିକାର ଥାଏ । ଏହା ଏକ ବାଉଁଶ ଲାଠି । ମାତ୍ର କେଉଁଠି ସାତଫୁଟ କେଉଁଠି ବାରଫୁଟ । ଶେଷରେ ମାଡକୁ ବନ୍ଦୋବସ୍ତରେ ଏକ ପଦିକ । ଲମ୍ୱ ଧାର୍ଯ୍ୟ ହେଲା ୧୦ଫୁଟ ୫ଇଞ୍ଚ ଯାହାକୁ ଚବିଶ ଦସ୍ତି ପଦିକା କୁହାଗଲା । ତା ଆଗରୁ ଇଂରେଜମାନେ ଆସି ଅନେକ ଗୁଡିଏ ବନ୍ଦୋବସ୍ତ କରିଥାଆନ୍ତି ମାତ୍ର ସେମାନେ ସେଥିରେ ସନ୍ତୁଷ ନଥାନ୍ତି । ପ୍ରଜାମାନେ ମଧ ବାରମ୍ୱାର ଖଜଣା ଓ ଜମି କ୍ଷେତ୍ରଫଳ ବଦଳିବାରେ ଅସନ୍ତୁଷ୍ଟ । ଖଜଣା ଦାଖଲ ନ ଦେଲେ ୧୮୦୬ ଠାରୁ ମାହାଲ ନିଲାମ ବ୍ୟବସ୍ଥା ହେଲା । ତା ପୁଣି କଲିକତାରେ ଫୋର୍ଟ ଉଇଲିୟମରେ । ଖଜଣା ଦେବାକୁ କଉଡି ବଦଳରେ ରୂପା ଟଙ୍କାର ଚଳଣି ହେଲା । ଏସବୁ ଅସୁବିଧାରେ ଲାଭ ହେଲା ଅଣ ଓଡ଼ିଆ ବେପାରିଙ୍କର । ନହେଲେ କମ୍ପାନି ଚାକିରିଆଙ୍କର ଯେଉଁମାନେ ସାମାନ୍ୟ ଅର୍ଥ ଜମାଦେଇ ଗୋଟିଏ ଲେଖାଁ

ମାହାଲ କିଣିନେଲେ ।

ଏମିତି ଘଡ଼ିସନ୍ଧି ବେଳେ କମ୍ପାନୀ ଅନ୍ତର୍ଯ୍ୟାମୀ ମହାନ୍ତି ନାମକ ଜଣେ ବ୍ୟକ୍ତିଙ୍କୁ ନାଗପୁର (ବେଣାହାର) ପ୍ରଗଣାର କାରକୁନ (କାନଗୋଇ ବା କାନୁନ୍‌ଗୋ) ନିଯୁକ୍ତି କଲେ । ସେ ପୁରୀ ଜିଲ୍ଲାର ଦଧିମାଛଗାଡିଆ ଗ୍ରାମରୁ ଆସିଲେ । ସେ ଗାଁର କରଣମାନେ ହିସାବ କିତାବରେ ଭାରି ଟାଣ ଥିଲେ । ବିଶ୍ୱସ୍ତ ଥିବାରୁ ରାଜପୃଷ୍ଠପୋଷକତା ମଧ୍ୟ ସେମାନଙ୍କ ପଛରେ ଥିଲା । କରଣ ଅନ୍ତର୍ଯ୍ୟାମୀ ମହାନ୍ତିଙ୍କର କାଶ୍ୟପ ଗୋତ୍ର । ଲେଖକ ଉକ୍ତ ଗାଁକୁ ଯାଇ ତାଙ୍କର ଇତିବୃତ୍ତି ସଂଗ୍ରହ କରିବା ଅବସରରେ ଜାଣିବାକୁ ପାଇଲେ ସେ ଗାଁରେ ବର୍ତ୍ତମାନ କାଶ୍ୟପ ଗୋତ୍ରର କେହି କରଣ ନାହାନ୍ତି । ଅବଶ୍ୟ ଖୁବ୍ ବୟଷ୍କ କେତେଜଣଙ୍କ ଠାରୁ ସେ ଶୁଣିବାକୁ ପାଇଲେ, ଯେ ପୂର୍ବେ ଅନେକ ଜୀବିକା ଉପାର୍ଜନ ପାଇଁ ବିଭିନ୍ନ ଅଞ୍ଚଳକୁ ଚାଲିଯାଇଛନ୍ତି । ତାଙ୍କ ବଂଶର କେହି ମୂଳ ପୀଠରେ ଏବେ ରହୁନାହାନ୍ତି । ପରେ ବେଣାହାରରେ ତାଙ୍କ ଉତ୍ତର ପୁରୁଷ ଖେଦିଗଲେ । ଅନ୍ତର୍ଯ୍ୟାମୀଙ୍କୁ ମାହାଲ ଅସୁଲଭାର ଦିଆଗଲା । ସେ ଭଲ କାମ କଲେ । ସମୟ ମୁତାବକ କମ୍ପାନି ଦେୟ ପଇଠ କଲେ । ନିଜ ଯୋଗ୍ୟତା ହେତୁ ତାଙ୍କୁ ଏ ମୁଲକର ଜମିଦାର କରାଗଲା । କାଳକ୍ରମେ ସେ ଅନେକ ଗୁଡିଏ ମାହାଲ ନିଜେ ଖରିଦ୍‌କରି ସରକାରୀ ସ୍ୱୀକୃତିରେ ଦଖଲ କଲେ । ନିଜର ବିଶେଷତ୍ୱ ପ୍ରତିପାଦନ କରିବାକୁ ସେ ନିଜ ନାଁର ମୂଳରେ କାନୁନ୍‌ଗୋ ଯୋଡିଲେ । ପ୍ରଗଣାରେ ସେ ଏକମାତ୍ର କାନୁନ୍‌ଗୋ ତାହା ଜଣାଇଲେ ।

କାନୁନ୍‌ଗୋ ଅନ୍ତର୍ଯ୍ୟାମୀ ମହାନ୍ତିଙ୍କର ପୁତ୍ର ଡଣ୍ଡୁ । ଡଣ୍ଡୁଙ୍କ ପୁଅ ନନ୍ଦ । ନନ୍ଦଙ୍କ ବେଳକୁ ତାଙ୍କର ଜମିଦାରି ବଢ଼ିକରି ଆଖିଦୃଷ୍ଟିଆ ହୋଇଗଲାଣି । ମାହାଲ ଜମା ଦାଖଲ କରିବାକୁ ତାଙ୍କୁ ଆଗ ଲୋଡା ପଡୁଥିଲା । ସବୁବେଳେ ପୂର୍ବର ମର୍ଯ୍ୟାଦା ରକ୍ଷାକରି ସମୟାନୁବର୍ତ୍ତୀ ହେବା ସହଜ ନଥିଲା । ତେଣୁ ଖଜଣା ଦାଖଲ ଅନ୍ତହେଲା ଅପରାଧରେ ନନ୍ଦ କାନଗୋଇଙ୍କୁ ନାନା ନିର୍ଯ୍ୟାତନା ଦିଆଗଲା । ସେ ଭୟରେ ଭବିଷ୍ୟତରେ ଏପରି ଦଣ୍ଡ ଯେମିତି ନ ମିଳେ ସେଥିପାଇଁ ନିଜେ ରହୁଥିବା ମାହାଲକୁ ରଖି ଅନ୍ୟ ମାହାଲ ମାନ ସରକାରଙ୍କୁ ଛାଡ଼ିଦେଲେ । ଖ୍ରୀ. ୧୯୩୦ ପର୍ଯ୍ୟନ୍ତ ତାଙ୍କ ବଂଶାବଳୀ ନିମ୍ନ ପ୍ରକାର ଥିଲା ।

ବଂଶାବଳୀରୁ ଜଣାଯିବ ତଣ୍ଡୁଙ୍କର ତିନିପୁଅଙ୍କ ମଧ୍ୟରୁ କନିଷ୍ଠ ରସାନନ୍ଦ ।

**ସାରଣୀ (କ)**







୧. ବନମାଳି ଯୋଗୀନ୍ଦ୍ର ଗୋବିନ୍ଦଚନ୍ଦ୍ର ସାଧୁଚରଣ ହାଡିବନ୍ଧୁ

୨. କାହ୍ନୁଚରଣ

୩. ପ୍ରାଣକୃଷ୍ଣ

## (ଖ)
## ବିଜୟରାମ (କନିଷ୍ଠ ଛପଣ)




## (ଗ)




ଜୟରାମ ଦଶପଣ ଜମିଦାର ଥାଇ ତାଙ୍କ ପୁଅମାନଙ୍କ ଅମଳରେ ଜମିଦାରି ହରାଇ କିଛି ନିଜ-ଚାଷ ନିଜଯୋତ ଜମି ଦଖଲ କରୁଥିଲେ । ସେମାନେ ଅମିତବ୍ୟୟୀ ଥିଲେ । ଅଗଣିଙ୍କର ଦୁଇ ପୁଅ ଅନ୍ୟ ଉପାର୍ଜନ ଫଳରେ ସଛଳ ଥିଲେ, ମାତ୍ର ଜ୍ୟେଷ୍ଠ ବନମାଳି ପାଗଳ ହୋଇଗଲେ । ତାଙ୍କ ପୁତ୍ର ମଧୁସୂଦନ ଅବିବାହିତ ଥିଲେ । କାହ୍ନୁଚରଣଙ୍କର ଜ୍ୟେଷ୍ଠ ପୁତ୍ର ମାନ୍ୟବର ରାଜ୍ୟପାଳଙ୍କ ଦପ୍ତରରେ ଉଚ୍ଚ ପଦରୁ

ଅବସର ନେଲେ । ୨ୟ ନିତ୍ୟାନନ୍ଦ ରାଜସ୍ୱ ପରିଷଦରେ ମୁଖ୍ୟ ଅମଲା ଥିଲେ । ପ୍ରାଣକୃଷ୍ଣଙ୍କର ଜ୍ୟେଷ୍ଠ ପୁତ୍ର ବୀରକିଶୋର ଗ୍ରାମର ପ୍ରଥମ ଇଂଜିନିୟର ଓ ୨ୟ ଅଦ୍ୱୈତ ଶିକ୍ଷାପାଇ ପ୍ରଥମ ବିଦେଶଯାତ୍ରୀ ଥିଲେ । ଉଦୟନାଥଙ୍କ ଏକମାତ୍ର ପୁତ୍ର ଗୋବିନ୍ଦ ଚନ୍ଦ୍ର ପ୍ରତିଷ୍ଠିତ ପ୍ରାଥମିକ ପ୍ରଧାନଶିକ୍ଷକ ଥିଲେ, ବିଶ୍ୱନାଥଙ୍କ ଦୁଇପୁତ୍ର ରାଜ୍ୟ ପୁଲିଶ୍ ବିଭାଗରେ ଚାକିରୀ କରୁଥିଲେ । କାଶୀନାଥଙ୍କ ପୁତ୍ର ଯୋଗେନ୍ଦ୍ର ବିଭିନ୍ନ ସମୟରେ ଭୂମିପରିଚାଳନା ଦାୟିତ୍ୱରେ ରହୁଥିଲେ ।

**ସାରଣୀ (ଖ)**

ବିଜୟରାଜ ଛପଣ ଜମିଦାର ଥାଇ ତାଙ୍କ ଜ୍ୟେଷ୍ଠପୁତ୍ର ଦାମୋଦର ଅନ୍ୟଭାଇମାନଙ୍କର ଅଂଶ ମଧ୍ୟରୁ କିଛି ଖରିଦ କରିଥିଲେ, ପରାକ୍ଷିତ ଓ ବଳରାମ ନିଜର ଅମିତବ୍ୟୟତା ଯୋଗୁ ଜମିଦାରି ହରାଇଥିଲେ । ରଘୁନାଥ ସରକାରି ଅମଲାଥିଲେ ।

**ସାରଣୀ (ଗ)**

ରସାନନ୍ଦଙ୍କର ପୁତ୍ର ଭଗବାନ, ତାଙ୍କର ତିନିପୁତ୍ର ଜ୍ୟେଷ୍ଠ ଜଗଦୀଶ ଅକାଳରେ ମୃତ । କନିଷ୍ଠ ହାଡ଼ିବନ୍ଧୁ ତାଙ୍କ ପୁଅ କାଙ୍ଗାଳିଙ୍କୁ ଶିକ୍ଷାଦେଇ ଉପାର୍ଜନ କ୍ଷମ କରାଇଥିଲେ । ନିଜ ପୁତ୍ର ରାଘବାନନ୍ଦ । ଉପେନ୍ଦ୍ର ତଳମାଳ ଅଞ୍ଚଳରେ ଚାହାଳି କରି ଉପାର୍ଜନ କରୁଥିଲେ । ଗୋଡା ଗାଁରେ ନିଜର ଚାଷଜମି ରଖିଥିଲେ । ସେ ଧୁଡୁକି ବଜାଇ ଗୀତ ଗାଉଥିଲେ ।

ତଣ୍ଟୁଙ୍କର ଜଣେ ପୁଅ ଅର୍ଜୁନ ଯୌତୁକଭାବରେ ଜମିଦାରି ପାଇ ଅନ୍ୟତ୍ର ନରିଲୋ ଗ୍ରାମରେ ବାସ କରୁଥିଲେ । ପୂର୍ବତନ ରାଜ୍ୟପାଳ ନିତ୍ୟାନନ୍ଦ ତାଙ୍କର ବଂଶଧର । ୧୯୩୦ ମସିହା ବେଳକୁ ଆମ୍ଭମାନଙ୍କର ଜ୍ଞାତି ଭିତରେ ଶମ୍ଭୁ ମହାନ୍ତି, କୁଶ ମହାନ୍ତି, ସୁଦର୍ଶନ ମହାନ୍ତି ଥିଲେ । ସେମାନେ ଯୋଗିନ୍ଦ୍ରଙ୍କ ପରି ମାଛଗାଁ ରାସ୍ତାର ଉତ୍ତରପଟେ ରହୁଥିଲେ । ଶୁଭ ଅଶୁଭ ଅଶୌଚ ଶୌଚରେ ସେମାନେ ଭାଗୀ ଥିଲେ । କୁଶଙ୍କର ବଂଶଧରମାନେ ବର୍ତ୍ତମାନ ଢେଙ୍କାନାଳ ସହରରେ ରହୁଛନ୍ତି । ଜ୍ୟେଷ୍ଠ ପୁତ୍ର ବ୍ରହ୍ମାନନ୍ଦ ମ୍ୟୁନିସିପାଲଟିରେ ଟାଣୁଆ ୱାର୍ଡ ମେମ୍ବର ଥିଲେ ।

## ଆମ ପରିବାର

ଏହି ରସାନନ୍ଦଙ୍କର ଦାୟାଦ ମାତ୍ର ସେମାନେ କନିଆ ଭାରିଯା (ଅବୈଧ ବିବାହ ନୁହେଁ) ସନ୍ତାନଯୋଗୁ ସଂପତ୍ତି ଅଧିକାରରୁ ବଞ୍ଚିତ । ୧୯୩୦ର ପତନୋମୁଖ ଏହି ସମୟରେ ଦଶପଣର ଜମିଦାରି ମାହାଲ ନ ଥାଏ । ଛଅପଣର ଅଂଶୀଦାରମାନେ ଲାଟବନ୍ଦୀ ସମୟରେ ମାହାଲର ସଦର ଜମି ଦୁଇ ଶହ ଟଙ୍କାରୁ କମ ହେବ ଦାଖଲ କରୁଥିଲେ । ଏହାର ଆୟ ସ୍ୱରୂପ କିଛି ନିଜଚାଷ ଓ ନିଜଯୋତ ଜମି ଭୋଗ କରୁଥିଲେ । ୧୯୩୭ ମସିହା ପର୍ଯ୍ୟନ୍ତ ଦାଖଲଖାରଜ ଫିଜରୁ କିଛି ଆୟ ପାଉଥିଲେ । ଘରଡ଼ିଅରେ କେହି ପାହି ପ୍ରଜା ଥିଲେ ସ୍ଥିତିବାନ ସତ୍ୱ ନଥିଲେ ତାକୁ ବେଦଖଲ କରିବା ଧମକ ଦେଖାଇ କିଛି ରୋଜଗାର କରୁଥିଲେ । କଂଗ୍ରେସ ସରକାର ୧୯୩୮ରେ ଅଧିକାର ଦେବା ପର୍ଯ୍ୟନ୍ତ ପ୍ରଜାର ନିଜ ଜମିରେ ଗଛ ବା ମାଛ ଉପରେ ଅଧିକାର ନ ଥିଲା । ଜମିଦାର ଏଥିରୁ କିଛି ଆୟ ମଧ୍ୟ ପାଉଥିଲେ । ମୋଟ ଉପରେ ଯାହା ଆୟ ଥିଲା ପରିବାରକୁ ଚଳାଇବାରେ ଯଥେଷ୍ଟ ଥିଲା । ମାତ୍ର କେହି ନିଜର ଭାବୁଥିଲେ ପ୍ରଜାଠାରୁ ଅସୁଲ ଖଜଣାକୁ ଖଜଣା ଖାନାରେ ଜମା ନ ଦେଇ ମାହାଲ ନିଲାମରେ ଉଠାଉଥିଲେ । ଜମିଦାରମାନଙ୍କ ସଦର ଜମା ଦାଖଲ ପାଇଁ ବର୍ଷରେ ୨ଟି କିସ୍ତି ଥିଲା । ଅପ୍ରେଲ ୨୮ ଓ ନଭେମ୍ବର ୮ । ସଦର ଜମୀ ଅଧା ଅଧା କରି ଦେବାକୁ । ଜମୀ ନଦେଲେ ବୈସନ୍ତାନୀ (ବେସୁଲତାନି) ତାରିଖ ହୋଇ ମାହାଲ ନିଲାମରେ ଉଠୁଥିଲା । ସେତେବେଳେ ତାଙ୍କୁ ବାହାରର ଅନ୍ୟ କେହି ନିଲାମରେ କିଣି ନେଇ ସରକାରୀ ସ୍ୱୀକୃତି ପାଉଥିଲେ । ଜମିଦାର ଅନ୍ୟ ଗାଁରେ ଥାଇ କଣିଆଁ ଗାଁର ମାହାଲରେ ମଧ୍ୟ କିଛି ସ୍ୱତ୍ତ୍ୱ ଏପରି ଅର୍ଜନ କରିବା ମଧ୍ୟ ଦେଖାଯାଉଥିଲା । ବଡ ବଡ ବଗିଚା ଥିଲା । ବଗାଏତ ଓ ମଛଦିଆ (ମାଛ ରହୁଥିବା ପୋଖରୀ ବା ନଦୀ) ଜଣେ ବା ଏକାଧିକ ଭୂସତ୍ତ୍ୱାଧିକାରୀଙ୍କର । ବଗିଚାରୁ ଫଳ ତୋଳିବାରେ ସହାୟକଙ୍କୁ ଫଳରୁ କିଛି ଭାଗ ମିଳୁଥିଲା ।

ସେମିତି ମାଛ ଧରିବାରେ ଗାଁର ସବୁ ଲୋକ ଭାଗ ନେଉଥିଲେ । ଜାଲ , ଖଇଁଚି, ପୋଲୁହରେ ମାଛ ଧରୁଥିଲେ । ଯାହା ମାଛ ପାଉଥିଲେ ତା ଉପରେ ମଛଦିଆ ମାଲିକ ତୋଲା (ତୋଳି ନେଉଥିବାରୁ ହୁଏତ ଏମିତି ନାମ ହୋଇଛି)

ସଂଗ୍ରହ କରୁଥିଲେ । ଗାଁର ନିକଟତମ ସାପ୍ତାହିକ ହାଟ ବାଲିକୁଦାରେ । ବାଲିସାହି ଜମିଦାରମାନଙ୍କ ଜମିରେ । ସେତେବେଳେ ଏହା ବର୍ତ୍ତମାନର ହାଇସ୍କୁଲ ପଡିଆରେ ବସୁଥାଏ । ମଙ୍ଗଳବାର ଶୁକ୍ରବାର ଦି ଦିନ ଉପରବେଳା ୩/୪ଟାରୁ ରାତି ଦି ଘଡିଯାଏ ବସୁଥିଲା । କୃଷିଜାତ ଦ୍ରବ୍ୟ ବିକ୍ରି ଉପରେ ସେମିତି ତୋଳା ଅସୁଲ ହେଉଥିଲା । ଧାନ, ଚାଉଳ, ଲୁଗାପଟା, ବାସନକୁସନ, କାଠ କି ଲୁହା ସାମଗ୍ରୀ ବିକ୍ରି ଉପରେ ମୂଲ୍ୟ ଅନୁସାରେ ସେମିତି ତୋଳା ପଇସାରେ ସୁନା-ରୂପା ଧାର୍ଯ୍ୟ ଥିଲା । ଏହା ମାଲିକଙ୍କର ଏକ ଲାଭଦାୟକ ଅର୍ଜନ ଥିଲା । କଟକ ଜିଲ୍ଲାର ସବୁଠାରୁ ସେତେବେଳେ ବଡ ସାପ୍ତାହିକ ହାଟ ଥାଏ ଜଗତସିଂହପୁରର ସୋମନାଥ ହାଟ । ଏହା ମଙ୍ଗଳବାର ଓ ଶନିବାର ବସେ । ଧାନ, ଚାଉଳ ପନିପରିବା ଶଗଡ଼ ଶଗଡ଼ ହୋଇ ବିକ୍ରି ପାଇଁ ଆସେ । ବେଳେ ବେଳେ ବିକ୍ରି ନ ହୋଇ ଧାନ ଚାଉଳ ଫେରିଯାଏ । ଲୋକମାନଙ୍କର କ୍ରୟ ଶକ୍ତି ଅତି ଦୁର୍ବଳ । ପରିବାପତ୍ର ଉପରେ ତୋଳା ଅସୁଲ ହୋଇ ତାହା ମଧ ଶଗଡ଼ ଶଗଡ଼ ଆମଦାନି ହୁଏ । ବିଶେଷ କରି ଶୀତ ଦିନରେ । ତାହା ମଧ ହାଟ ମାଲିକ ଶେଷରେ ନିଲାମ କରି ନଗଦ ଅର୍ଥ କିଛି ପାଆନ୍ତି । ଲେଖକ କଲେଜରେ ପଢୁଥିବା ସମୟରେ ଦେଖିଛି ଜଣେ ପ୍ରଜା ତାର ଝିଅ ବାହାଘର ନିମିତ୍ତ ନିମନ୍ତ୍ରଣ ଜମିଦାର ନିଲୁବାବୁ (ଶ୍ୟାମାଚରଣ ମହାପାତ୍ର)ଙ୍କୁ ଜଣାଇଲା ଛପା ନିମନ୍ତ୍ରଣ ପତ୍ରର ପ୍ରଚାର ହୋଇ ନଥାଏ । ମୌଖିକ ଗୁଆ ମହାପ୍ରସାଦ ନିମନ୍ତ୍ରଣ ବନ୍ଧୁ ଘରକୁ ପଠାଯାଏ । ଅନ୍ୟମାନଙ୍କୁ ମୌଖିକ ଶୁଣାଇ ଦିଆଯାଏ । ନିଲୁବାବୁ ତାର ଝିଅ ବାହାଘର ଭୋଜି ତାରିଖ ଜାଣି ହାଟ ଗୁମାସ୍ତାଙ୍କୁ ସେହି ତାରିଖରେ ତା ଘରକୁ ଅଧ ଶଗଡ଼େ ପରିବା ସବୁ ପ୍ରକାର ମିଶାଇ ପଠାଇଦେବା ହୁକୁମ କଲେ । ପରିବା ପତ୍ର ଶଗଡ଼ ଗାଡ଼ିରେ ଓଦଗରେ ଲଦି ବୁହାଯାଏ ।

ସାଧାରଣ ଗମନାଗମନ ଚାଲିକରି । ଦୂର ଜାଗାକୁ ଶଗଡ଼ରେ ଛାତ ବନ୍ଧା ଡାଟ ଶଗଡ଼ରେ ଯାଉଥିଲେ । ସ୍ତ୍ରୀଲୋକମାନେ ଏହି ଡାଟ ଶଗଡ଼ରେ ବା ବେହେରା ବାହିତ ଶବାରୀରେ ଯାଉଥିଲେ । ସେମିତି ଅବସ୍ଥାପନ୍ନ ବା କ୍ଷମତାସୀନ ବ୍ୟକ୍ତି ତାମଜାନିରେ ଯାଉଥିଲେ । ଏହା ଖୋଲା ପାଲିଙ୍କି ପରି । ବେହେରା ବୋହୁଥିଲେ । କେହି କେହି ଟଟୁ ଘୋଡା ରଖିଥାନ୍ତି । ଜଗତସିଂହପୁରଠାରୁ କଟକକୁ ବସଚାଲେ ।

ମଟରଭଡା ଶସ୍ତା-ବେଳେବେଳେ ପ୍ରତିଯୋଗିତା ହେତୁ ଆହୁରି ଶସ୍ତା ହୁଏ ମାତ୍ର ଶେଷରେ ସବୁ ବସ ମାଲିକମାନେ ଗୋଟିଏ ଆସୋସିଏସନ କରି ମଟରଗାଡି ଚଳାଇଲେ । ପାଗ ଭଲ ଓ ରାସ୍ତା ଅବସ୍ଥା ଦେଖି ଜଗତସିଂହପୁରରୁ କାଦୁଅପଟା ନ ହେଲେ ବାଲିକୁଦା ଆସେ । କେନାଲରେ ଦୁଇତରଫରୁ ବେଳେ ବେଳେ ମଣିଷଟଣା ବୋଟ ଚାଲେ । ନୂଆ ବଜାରରୁ ମାଛଗାଁ କେନାଲରେ ବିରିବାଟି ଓ ଅନ୍ୟ ଏକ ଲକ ଡେଇଁ ହରିହରପୁର ଦଶନମ୍ବର ପୋଲଯାଏ । କେନାଲ ବାଁପଟେ ଦୁଇ ଦୁଇ ଚାରିଜଣ ମଣିଷ ଦଉଡି ଧରି ଏହି ବୋଟକୁ ଟାଣନ୍ତି । ଭଡା ମଟରଭଡାର ଚଉଠେ । ସକାଳ ୯ଟାରୁ ନୂଆବଜାରରୁ ଆସି ସଂଜ ସୁଦ୍ଧା ଜଗତସିଂହପୁରରେ । ଦୈନିକ ଲେଉଟା ଯାତ୍ରା ସେମିତି । ବୋଟରେ ମୁଢ଼ି ଚଣା, ଭଜା, ଚିନାବାଦାମ ଭଜା, ଉଖୁଡା ଆଦି ଗୋଟିଏ ଲୋକ ବିକୁଥାଏ । ଶସ୍ତା ଯୋଗୁ ଓ ଚାଲି ନ ପାରିବା ନିବଲୁଆ ଲୋକ ଏଥିରେ ଯାଆନ୍ତି ।

ମାଲ ବହନ ପାଇଁ ବଳଦିଆମାନେ ବୋଝବୁହା ବଳଦ ରଖିଥାଆନ୍ତି । ସେମାନଙ୍କର ପିଠିରେ ନାନା ପ୍ରକାର ମାଲ ଲଦି ବିଭିନ୍ନ ଜାଗାକୁ ଯାଇ ମାଲ ବିକ୍ରି କରନ୍ତି । ଦୂର ଦୂରାନ୍ତରରୁ ଶଗଡ଼ରେ ମାଲ ଆସୁଥିଲା । ଆମ ଗାଁରେ ଅନେକ ଶଗଡ଼ିଆ ଥାଆନ୍ତି । ସେମାନେ ମାଛଗାଁ ରାସ୍ତାରେ ଶଗଡ଼ରେ ଧାନ ଚାଉଳ ରବି ଫସଲ ଧରି କଟକ ନୂଆ ବଜାର ବା ମାଲଗୋଦାମ ଯାଏ ଯାଆନ୍ତି । ସେଠାରୁ ଫେରିବା ବେଳେ ଗୁଆ ମସଲା କିରୋସିନି, ଚିନି, ବସ୍ତା ଗୁଡ, ଲୁଗାପଟା, ସୂତା ଧରି ଫେରନ୍ତି । ରାସ୍ତାରେ ସେମାନେ ଚଟି ଦେଖି ବିଶ୍ରାମ କରନ୍ତି । ସେଠାରେ ନିଜ ବିଶ୍ରାମ ସହିତ ସେମାନଙ୍କର ବଳଦମାନଙ୍କର ଖାଦ୍ୟର ଯଥେଷ୍ଟ ତତ୍ତ୍ୱ ନିଅନ୍ତି । ଗାଁ ମୁଣ୍ଡରେ ବୋରିକିନା ମାଛଗାଁ ଦୁଇଟା ବିଭିନ୍ନ ଅଞ୍ଚଳକୁ ରାସ୍ତା ଥିବାରୁ ଏଠାରେ ବେପାର ବାଣିଜ୍ୟ କାରବାର ଲାଭଦାୟକ ଥିଲା । ଆମ ଗାଁର ଘନ ବିଶ୍ୱାଳ ନାମରେ ଜଣେ ଚାଷୀ ଲୋକ ବ୍ୟବସାୟ କରି କେତେ ବରଷ ଭଲ ପଇସା କମେଇଲେ । ଖୁବ୍ ଜାକଜମକରେ ଶାରଦୀୟ ଲକ୍ଷ୍ମୀପୂଜା ମଧ କରୁଥିଲେ । ଆମେ ସାନ ପିଲା ଥାଇ ପାଠ ପଢ଼ା ଆରମ୍ଭ କଲାବେଳେ ପ୍ରଥମେ ତାଙ୍କ ଦୋକାନରେ ଚିନାବାଦାମ, ଚିନି, ନବାତ (କନ୍ଦ), ଭେଲିଗୁଡ଼ ସହିତ ଶିଲଟ, ଶିଲଟ ଖଡ଼ି, ପଥର ଖଡି (ଭୂଇଁରେ

ଲେଖିବାକୁ) ପର କଲମ, କାଠି କଲମ, ବାଲି କାଗଜ ଦେଖିଲୁ । ଶଗଡ଼ରେ ଏହାର ଆମଦାନି ଓ ବିକ୍ରୟ ପିଲା ମନରେ ଆନନ୍ଦ ଓ ବିସ୍ମୟ ଆଣୁଥାଏ । କେତେବର୍ଷ ପରେ ତାଙ୍କ ଦୋକାନ ଭାଙ୍ଗିଗଲା । ସେ ତଳିତଳାନ୍ତ ହୋଇଗଲେ । ବୋଧହୁଏ ମହାଜନ ଦେଣାରେ ଜମିବାଡ଼ି ନିଲାମ ହୋଇଗଲା, ସେଇ ଜାଗାରେ କଟକ ଆଡୁ କଛି ମହାଜନ ହାଜି ଜମାଲ ନୁର ମହମଦ ଫାର୍ମ ଗୋଟିଏ ଦୋକାନ ବସେଇଲା । ଏକା ଧରଣର ମାଲ ସେମାନେ ଆଣି କାରବାର କଲେ ଦୋକାନରେ । ଘନ ବିଶ୍ୱାଳଙ୍କର ଓ ହାଜିଜମାଲର ଏକାଧିକ ବିକ୍ରି ସହକାରୀ (ସେଲ୍ସମ୍ୟାନ) ରହୁଥିଲେ । ଦୋକାନର ସଫଳତା ସେମାନଙ୍କର ନିଷ୍ଠାପରତା ଓ ଆନୁଗତ୍ୟ ଉପରେ ନିର୍ଭର କରୁଥିଲା । କରିମ ସାହେବ ବୋଲି ଜଣେ କଛି ମୁସଲମାନ ବହୁଦିନ ଏହି ଶାଖା ପରିଚାଳନା କଲେ । ସେ ଆମ ପିଲାମାନଙ୍କୁ ଭାରି ଶରଧା କରୁଥିଲେ । ଚିନାବାଦାମ, ଲଜେଞ୍ଜ, ଆଦି ଖୁସିରେ ଦେଉଥିଲେ । ଅନେକ ବରଷ ଏହି ଦୋକାନ ଚାଲିଥିଲା ।

## ଗାଁର ସାହି ଓ ତାର ବିଶିଷ୍ଟ ବ୍ୟକ୍ତି

ଗାଁର ବିଭିନ୍ନ ସାହି ସେଠାରେ ବାସିନ୍ଦାଙ୍କ ସଂଜ୍ଞା ଅନୁସାରେ କୁହାଯାଉଥାଏ । କାନଗୋଇ ସାହି ରାସ୍ତାର ଦକ୍ଷିଣ ଦିଗରେ । ଅନ୍ୟ ଗୁଡ଼ିକ ଉତ୍ତର ଦିଗରେ ଥାଏ, ମହାନ୍ତି ସାହି ଗୁଡ଼ିଆ ପାଟଣ. ବାତଳ ସାହି, ସ୍ୱାଇଁ ସାହି, ରାଉତ ସାହି, ଗଉଡ ସାହି, ଭଣ୍ଡାରି ସାହି ଏମିତି । କାନଗୋଇ ଘର ଜମିଦାର । ସେମାନେ ଗାଁର ବେଶି ଜମିର ମାଲିକ ଓ ପ୍ରତିପତ୍ତିଶାଳୀ । ଦୁଇ ଅଂଶ ଦଶପଣ ଓ ଛଅପଣ ମଧ୍ୟରେ ବିଶେଷ ସଦଭାବ ନ ଥାଏ । ଦଶପଣ ଜମିଦାରି ହରାଇ ସାରିଲେଣି । ଗାଁର ଇଷ୍ଟଦେବ ମାତ୍ର ଦୁଇ ଅଂଶର ମାରଫତଦାରିରେ ଚଳୁଥାଏ । ଛପଣ ଜମିଦାରଙ୍କ ମଧ୍ୟରେ ବୟୋଜ୍ୟେଷ୍ଠ ଓ ସର୍ବମାନ୍ୟ ଥିଲେ ଦାମୋଦର କାନୁନଗୋ । ଯୌବନରେ ସେ ନାଗା ସଂପ୍ରଦାୟଙ୍କ ସାଙ୍ଗରେ ବହୁତ ଆଡେ ବୁଲିଥିଲେ । ଅଭିଜ୍ଞତା ବହୁତ । ଓଡ଼ିଶାରେ ବୈଦ୍ୟରତ୍ନ ବାଲୁଙ୍କେଶ୍ୱର ଆଚାର୍ଯ୍ୟ (କଟକ) ବଡ଼ କବିରାଜ, ରାଜା ମହାରାଜାମାନେ ତାଙ୍କ ତିଆରି ଔଷଧ ତାଙ୍କ ନିର୍ଦ୍ଦେଶ ଅନୁସାରେ ବ୍ୟବହାର କରି ରୋଗମୁକ୍ତ ହେଉଥିଲେ । ତାଙ୍କର ଛପା ଔଷଧ ତାଲିକାରେ ବିଭିନ୍ନ ରୋଗର ବିକ୍ରିନିମିତ୍ତ ବିଭିନ୍ନ ପ୍ରସ୍ତୁତ ଔଷଧର ନାମ ଥାଏ । ତାହା ଛଡ଼ା ନାନା ଟୁଣୁଟୁଣିକିଆ ଔଷଧ (ମୁଷ୍ଟିଯୋଗ) ବିଭିନ୍ନ ରୋଗ

ପାଇଁ ଏଥିରେ ଥାଏ । ପ୍ରତିବର୍ଷ ଗୋଟିଏ ଛପା ଔଷଧ ତାଲିକା ତାଙ୍କ ପାଖକୁ ଆସେ ଓ ଏହି ଟୁଣ୍ଟୁଣୁକା ତାଙ୍କୁ ଗୃହବୈଦ୍ୟର ସମ୍ମାନ ଆଣିଥାଏ । ବିହାରିଲାଲ ପଣ୍ଡିତ ଗୀତା ଓଡ଼ିଆ ଅନୁବାଦ କରାଇଲେ । ଓଡ଼ିଆ ପଣ୍ଡିତମାନଙ୍କୁ ଦରମାଦେଇ ସେମାନଙ୍କର ସାହାଯ୍ୟରେ ଏହି କାମ କଲେ । ସେ ଦର୍ପଣୀ ଜମିଦାରିର ମାଲିକ । ଗୀତାର ପ୍ରଚାର ନିମିତ୍ତ ଏହି ବିରାଟ ଗୀତା ଅନୁବାଦ ପ୍ରାୟ ଦେଢ଼ ଶହ ପୃଷ୍ଠାର ହେବ ସେ ଲୋକମାନଙ୍କୁ ମାଗଣାରେ ବାଣ୍ଟୁଥିଲେ । ଜମିଦାରଭାବେ ଦାମୋଦର ମଧ ଏହାର ଅଧିକାରୀ ଥିଲେ । ଅନ୍ୟ ଜମିଦାରିର ମାଲିକ ନିଜ ଗାଁ ଦେଇ ଗଲାବେଳେ ତାଙ୍କୁ ସୌଜନ୍ୟମୂଳକ ସାକ୍ଷାତ୍ କରି ଯାଉଥିଲେ । ତେଣୁ ସେ ସର୍ବମାନ୍ୟ ଥିଲେ । ତାଙ୍କ ଜମିଦାର ମାହାଲ ୧୯୩୦ ବେଳକୁ ବହୁ ଭାବରେ ବିଭକ୍ତ । ତା ଭିତରେ କେତେ କୋଡ଼ି ଅଂଶୀଦାର ଜମିଦାର ଥାଆନ୍ତି, ନାମକୁ ମାତ୍ର ଜମିଦାର । ତଥାପି ସେମାନେ ନିଜକୁ ହରିଶପୁର ବା ମରିଚପୁର ଜମିଦାର ଭଳି ପ୍ରତାପୀ ମନେ କରୁଥିଲେ ! ନାନା ପ୍ରକାର ପ୍ରଜାମାନଙ୍କୁ କଷ୍ଟ ଦେଉଥିଲେ । ଗାଁ ମଝିରେ ସଡକ ବିଭାଗ କରିଛି, କରଣମାନଙ୍କୁ ବିଭିନ୍ନ ସାହିରେ । ସେମାନେ ବିଭିନ୍ନ ଗୋତ୍ରୀ ମାତ୍ର ସମଗୋତ୍ରର ଏକାଠି ବସତି । ଉତ୍ତରଭାଗରେ ମହାନ୍ତି ସାହି, ଏଥିରେ ବଡମାନ୍ୟ ଥାଆନ୍ତି ଦୁଇ ଭାଇ ରାମ ମହାନ୍ତି ଓ ହରି ମହାନ୍ତି । ରାମ ମହାନ୍ତିଙ୍କୁ ମୁଁ ଦେଖି ନାହିଁ, ତାଙ୍କ ଘରକୁ ଗୁରୁଘର କହୁଥିଲେ । ବୋଧହୁଏ ସେମାନେ ଗୁରୁମନ୍ତ୍ର ଦେଉଥିଲେ ।

ଆମେ ସବୁ ପାଞ୍ଚ ଛଅ ବରଷର । ତାଙ୍କ ଉଚା ଚଉଡା ଦାଣ୍ଡ ପିଣ୍ଡାରେ ଲୁଚକାଳି ଖେଳୁଥାଉ । ହରି ମହାନ୍ତି କୋଥଳି ସେବା ସାରିଲେ ଖାଆନ୍ତି । ପରମ ବୈଷ୍ଣବ ଥିଲେ, ତାଙ୍କ ନାତି ଦାମ ତାଙ୍କୁ ଯାଇ କହିଲା, ଜେଜେ ବୋଉ କହିଲା, ଠାଆ ଦେଲାଣି (ଖାଇବାକୁ ଦେଲାଣି) । ସେ କହିଲେ ଆରେ ବାପାକୁ କହ କୋକେଇ ବାନ୍ଧୁ । ବାସ୍ ସେତିକି କହି ବୋଧହୁଏ ଟଳି ପଡିଲେ କୋଥଳିଂ ନିର୍ମାଲ୍ୟ ସାରି । ଆମର ଖେଳ ସରିଲା । ଘରକୁ ପଳାଇଲୁ । ତା ପରେ କାନ୍ଦ ବୋବାଳି ପଡିଲା । ତାଙ୍କୁ କୋକେଇରେ ନାମ ସଂକୀର୍ତ୍ତନ ସହିତ ଶ୍ମଶାନକୁ ନେଲେ । ସାତ୍ତ୍ୱିକ ଜୀବନ ଯାପନ କରିଥିଲେ ବୋଧହୁଏ ମୃତ୍ୟୁର ଡାକ ଏମିତି ଆସେ । ରାମ ମହାନ୍ତିଙ୍କ ପୁଅ ମଧୁ ମହାନ୍ତି । ସେ ବଡ଼ ଜମିଦାର କେତେକଙ୍କର ତହସିଲଦାର ଥିଲେ । ତାଙ୍କର

ପୁଅ ନିତ୍ୟାନନ୍ଦ ପରବର୍ତ୍ତୀ କାଳରେ ୧୯୬୦ରେ ବାଲିକୁଦା ପଞ୍ଚାୟତ ସମିତିର ପ୍ରଥମ ଅଧ୍ୟକ୍ଷ ଥାଇ ବିଶେଷ ଲୋକ ପ୍ରିୟତା ହାସଲ କରିଥିଲେ । ତାଙ୍କର ଆଉଜଣେ ଭାଇ ପ୍ରାଣକୃଷ୍ଣ । ପୁଲିଶ ଚାକରି କରି କୋଟ ଇନ୍ସପେକ୍ଟର ଭାବେ ଅବସର ନେଲେ । ତାଙ୍କ ବଡପୁଅ ନରୋତ୍ତମ । ତାଙ୍କ ସାଙ୍ଗର । ବିଦେଶରେ ପଢୁଥାଏ । ଗାଁକୁ ଆସିଲେ ଆମକୁ ଅପୁରୁବ ଲାଗେ । ସେ ଥାଏ ଆମଠାରୁ ବେଶି ଜାଣିବାର । ବଡ ସହର ରେଳ, ମଟର, କଚେରି, ଜେଲ ହାଜତ ସବୁ ଦେଖିଥାଏ । ହରିଙ୍କର ପୁଅ ବାସୁଦେବ । ସେ ବୋଧହୁଏ ଦୋକାନ କରିଥିଲେ ଯୌବନରେ । ତାଙ୍କୁ ତାଙ୍କ ପୁତୁରାମାନେ ଦୋକାନ ଦାଦି ଡାକୁଥିଲେ । ତାଙ୍କ ପୁଅ ଦାମ ଆମ ସାଙ୍ଗର । ଭଲ ଗୀତ ବୋଲେ, ଅଭିନୟକରେ । ଯୁଦ୍ଧରେ ଯୋଗ ଦେଇଥିଲେ, ଫେରି ରେଲୱେରେ ଚାକିରି କରି ଅବସର ନେଲେ । କୁଳମଣି ଓ ଚିନ୍ତାମଣି ରାମଙ୍କର ଆଉ ଦି ପୁଅ । ସେମାନେ ମଧ୍ୟ ରୋଜଗାରିଆ ଥିଲେ । ଯୁଗ୍ମ ପରିବାର । ପରିବାର ଭାଙ୍ଗିଗଲେ ସମସ୍ତେ ଜଣେ ଜଣେ ନାମମାତ୍ର ଚାଷୀ ହେବେ ମାତ୍ର ଏକାଠି ଥାଇ ଖୁବ୍ ମର୍ଯ୍ୟାଦା ଓ ଖାନଦାନି ପାଉଥିଲେ । ମହାନ୍ତି ସାହିରେ ଡାକ୍ତର ଦିଜଣ । ଦୁହେଁ ହୋମିଓପାଥ । କଟକରୁ ପାସ କରିଥାଆନ୍ତି, କଟକରେ ରାଓ ସାହେବ ଡ. ଅଭିନ୍ନ ଚନ୍ଦ୍ର ରାଓ ଓ ନଟବର ମହାନ୍ତି ହୋମିଓପାଥି କଲେଜ ଖୋଲିଥାଆନ୍ତି । ସେଠାରୁ ଉଭୟ ଡିଗ୍ରୀ ହାସଲ କରିଥାନ୍ତି । ବଡ ନଟବର, ବନ୍ଦୋବସ୍ତରେ କାମ କରୁଥିଲେ । ସଂଗୀତ ସାହିତ୍ୟରେ ରୁଚି ଥାଏ, ନାଟକ ଅଭିନୟ ଓ ନିର୍ଦ୍ଦେଶନାରେ ଲୋଡା ପଡନ୍ତି । ଭଲ ଏକତାରା ଜଳତରଙ୍ଗ ବଜାନ୍ତି ହାରମୋନିୟମ ସହିତ । ମାଇନର ସ୍କୁଲରେ ପୁରସ୍କାର ବିତରଣ ଓ ଅନ୍ୟ କୌଣସି ଉତ୍ସବ ହେଲେ ତାଙ୍କୁ ଲୋଡା ପଡେ ସଂଗୀତ ଓ ଆବୃତ୍ତିରେ ନିର୍ଦ୍ଦେଶନା ଦେବାକୁ । ରୋଗୀ ଚିକିତ୍ସାରେ ମଧ୍ୟ ସୁନାମ ଅର୍ଜନ କରିଥିଲେ । ତାଙ୍କ ବାପା ଅନନ୍ତ ଚରଣ ଡେରାବିସ କେନ୍ଦ୍ରାପଡା ମୁସଲମାନ ଜମିଦାରଙ୍କର ତହସିଲଦାର ଥିଲେ । ଖୁବ୍ ଲମ୍ବା ଦାଢ଼ି ରଖିଥାନ୍ତି । ଆମେ ଦେଖିଲା ବେଳକୁ ପୁରା ସଫେଦ । ଗୋଟାଏ ଆରାମ ଚଉକିରେ ଦାଣ୍ଡ ପିଣ୍ଡାରେ ବସନ୍ତି । ଗାଁକୁ ଯେତେବେଳେ ଆସନ୍ତି । ଡେରାବିଶ ଜମିଦାର ପରିବାରର ମହମଦ ଅଲି ଇଉନୁସ ମୋର ଡେପୁଟି କଲେକ୍ଟର ଭାବେ ସହକର୍ମୀ ଥିଲେ । ତାଙ୍କଠାରୁ ଶୁଣିଛି ସେ ବଡ ଆନ୍ତରିକତା ସହିତ

ତାଙ୍କ ମାହାଲ ଚଳାଉଥିଲେ । ସେଥିପାଇଁ ସେ ପରିବାରରେ ତାଙ୍କର ଖୁବ୍ ଖାତିର ଥିଲା । ଆଉ ଜଣେ ଡାକ୍ତର ବିଚିତ୍ରାନନ୍ଦ । ବର୍ତ୍ତମାନ ନବେ ବରଷରେ ସନ୍ନ୍ୟାସ ଗ୍ରହଣ କରି ସ୍ୱାମୀ ନିବୃତ୍ତାନନ୍ଦ ନାମ ନେଇଛନ୍ତି । ଦୁଇ ସଫଳ ପୁତ୍ରଙ୍କର ଜନକ । ଅଧ୍ୟାପକ ମନୋରଂଜନ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଓ ସ୍ୱାମୀ ଶିବଚିଦାନନ୍ଦ (ରଂଜୁ) ଭୁବନେଶ୍ୱର, ଶିବାନନ୍ଦ ଶତବାର୍ଷିକୀ ବିଦ୍ୟାଳୟର ବହୁମାନ୍ୟ କର୍ତ୍ତା । ତାଙ୍କର ହୋମିଓପାଥି ଚିକିତ୍ସା ମଧ୍ୟ ସୁଦୂରପ୍ରସାରୀ ଥିଲା । ଖଣ୍ଡେ ସାଇକେଲ ଧରି ସେ ପ୍ରାୟ ବାଲିକୁଦା ମାଛଗାଁ, ଏରସମା, ତିର୍ତ୍ତୋଲ, ପଞ୍ଚପଲ୍ଲିର ବହୁତ ଗାଁକୁ ଯାଇ ରୋଗୀ ଦେଖୁଥିଲେ ଓ ଖୁବ୍ ଶସ୍ତା ଔଷଧ ଦେଇ ଲୋକପ୍ରିୟତା ଅର୍ଜନ କରିଥିଲେ । ସେଇ ପରିବାରର ବୈକୁଣ୍ଠନାଥ ମଧ୍ୟ ତାଙ୍କ ସହିତ ଅସହଯୋଗ ଆନ୍ଦୋଳନରେ ବାନରସେନାରେ ଯୋଗଦେଇ ବହୁତ ବେତମାଡ ଖାଇଥିଲେ । ଲବଣ ସତ୍ୟାଗ୍ରହ, ବ୍ୟକ୍ତିଗତ ସତ୍ୟାଗ୍ରହ, ଅଗଷ୍ଟ ଆନ୍ଦୋଳନରେ ଭାଗ ନେଇ କାରାବାସ ଭୋଗିଥିଲେ । ସେ ଜଣେ ଅଭିନେତା, ନାଟ୍ୟକାର, ଗୀତିକବିତା ରଚୟିତା ଥାଇ ବ୍ୟଙ୍ଗ ଅଭିନୟରେ ଅଦ୍ୱିତୀୟ ଥିଲେ । ପରେ ସାମ୍ୟବାଦୀ ଦଳ ଟିକଟରେ ବ୍ୟବସ୍ଥାପକ ମଧ୍ୟ ହୋଇଥିଲେ ବାଲିକୁଦାରୁ । ତାଙ୍କ ପରିବାରରେ ବଡ ପରଶୁରାମ । ସେ ଆଳି ରାଜାଙ୍କର ପଞ୍ଚପଲି ପାଖେ ଥିବା ଜମିଦାରର ପରିଚାଳକ ଥିଲେ । ରାଜାଘର ବିଶ୍ୱସ୍ତ ଥିଲେ । ଚଇତ ମାଧରେ କେଉଟମାନେ ଆସି ତାଙ୍କ ଦାଣ୍ଡରେ ଚଇତ ଘୋଡା ନାଚ କରିବା ଆମ ପିଲାମାନଙ୍କର ବଡ ଆକର୍ଷଣ ଥିଲା । ଆଉ ଜଣେ ଭାଇ ବ୍ରଜ କିଶୋର ରଣପୁରରେ ଦରବାର ଅମଳରେ କାମ କରୁଥିଲେ । ଦୁଇ ନାତି ମନୋରଂଜନ ଓ ଚିତ୍ତରଂଜନ ତାଙ୍କରି ପାଖରେ ରହି ଶୃଙ୍ଖଳାର ସହିତ ପାଠ ପଢ଼ି ମଣିଷ ହୋଇଥିଲେ । ଆଉ ଜଣେ ଭାଇ ପୁରୁଷୋତ୍ତମ ମଧ୍ୟ ଜମିଦାରି ଓ ବନ୍ଦୋବସ୍ତରେ କାମ କରୁଥିଲେ । ସେତେବେଳେ ବର୍ଷକୁ ରଜ ନ ହେଲେ ଲେଖନ ବସା (ଦୁର୍ଗାପୂଜା) ବେଳକୁ ବିଦେଶରୁ ଚାକିରିଧାରି ସମସ୍ତେ ପ୍ରାୟ ଆସୁଥିଲେ । ଆମେ ପିଲାମାନେ ସେମାନଙ୍କ ପାଖକୁ ଯାଇ ନିଜ ପରିଚୟ ଓ ବିଦ୍ୟାର ଅଗ୍ରଗତି ଶୁଣାଉଥାଉ । ମହାନ୍ତି ସାହିରେ ବେଶି ଚାକିରିଆ । ବିଦେଶରୁ ତାଙ୍କର ମନି ଅର୍ଡର ବେଶି ଆସେ, ସମସ୍ତେ ଭଲରେ ଚଳନ୍ତି ମାତ୍ର କେହି ସଂଚୟଶୀଳ ନଥିଲେ ଯେ ଏକାବେଳକେ ଶହେ

ଦୁଇଶ ଗଣି ପାରିବେ । ସେ ଯୁଗରେ ଏଇଆ ବୋଧହୁଏ ଚଳଣି ଥାଏ ।

ଗାଁର ପ୍ରଥମ ମାଟ୍ରିକୁଲେଟ ଥିଲେ ବାମନଚରଣ କାନୁନଗୋ । ୧୯୦୨ରେ ପାସ କଲେ । କିଲଟରିରେ ଅମଲା ହେଲେ । ନାଜର ଭାବେ ଅବସର ନେଲେ । ଏହା ଏକ ସମ୍ମାନନୀୟ ପଦବୀ ଥିଲା । ତାଙ୍କ ଘର ବାତଲ ସାହିରେ (ବାରିତଳର ବୋଧହୁଏ ଅପଭ୍ରଂଶ) । ତାଙ୍କ ଅନୁ ଦୁଇ ଭାଇ ପ୍ରାଣକୃଷ୍ଣ ଓ ବାଳକୃଷ୍ଣ । ତାଙ୍କର ପୋଷ୍ୟପୁତ୍ର ବାସୁଦେବ ଅସହଯୋଗ ଆନ୍ଦୋଳନରେ ପଢ଼ା ଛାଡ଼ିଲେ । ପରେ କଲିକତା ବିଶ୍ୱବିଦ୍ୟାଳୟରୁ ମାଟ୍ରିକ୍ ପାସ୍ କଲେ । ଦେଶ ସ୍ୱାଧିନ ହେବା ପରେ ସମବାୟ ବିଭାଗରେ ଚାକିରି କରି ଅବସର ନେଲେ । ଗାଁରେ ତାଙ୍କର ପକ୍କା ଘର ଥାଏ । ତାଙ୍କ ଝିଅ ଦୁନ (ଦୁର୍ଗାବତୀ) ଆମ୍ଭମାନଙ୍କର ସାଙ୍ଗର । କଟକରେ ପଢୁଥାଏ । ଛୁଟିରେ ଆସିଲେ ଆମସାଙ୍ଗେ ଖେଳେ । ଗାଁର ପ୍ରଥମ ଝିଅ ସେ ଇଂରେଜୀ ପାଠ ପଢ଼ିବାରେ । ଷଷ୍ଠ ସପ୍ତମରେ ପଢୁଥିବାବେଳେ ତାର ଅକାଳ ବିୟୋଗ ହେଲା । ଅନନ୍ତ, ଅଚ୍ୟୁତାନନ୍ଦ ତାଙ୍କର ଅନ୍ୟ ଅଂଶର । ଅଚ୍ୟୁତାନନ୍ଦଙ୍କ ଜ୍ୟେଷ୍ଠପୁତ୍ର ନିତ୍ୟାନନ୍ଦ ଗାଁର ପ୍ରଥମ କୃଷିଶିକ୍ଷା ପ୍ରାପ୍ତ । ଜିଲ୍ଲା କୃଷି ଅଧିକାରୀଭାବେ ଅବସର ନେଲେ । ଆଉ ବି ଘର ମାୟାଧର ବିମ୍ବାଧର । ମାୟାଧର ଆଳିରେ ଚାକିରି କରୁଥିଲେ । ପରେ ଜମିଦାର ଉଠିଗଲା । ପୂର୍ବତନ ରାଜା ଓ ଏମ୍.ଏଲ୍.ଏ ଶରତ ଦେଓ ତାଙ୍କ କର୍ମନିଷ୍ଠା ମତେ ଶୁଣାଉଥିଲେ । ଗାଁର ପ୍ରଥମ ମାଇନର ପାସବାଲା ଆନନ୍ଦ ଚନ୍ଦ୍ର ମହାନ୍ତି । ବାଳିକୁଦାରୁ ସେ ବିନା ଇଂରାଜୀରେ ୧୮୯୨ ମସିହାରେ ଭର୍ଣ୍ଣାକୁଲାର ପାସ କରିଥିଲେ । ତାଙ୍କର ଛାତ୍ରରୂପେ ପ୍ରାଣକୃଷ୍ଣ ପରିଜାଙ୍କୁ ପାଇବାର ସୌଭାଗ୍ୟ ସେ ଅର୍ଜନ କରିଥିଲେ । ପରିଜା ସାହେବ ମଧ ତାଙ୍କୁ ମନେ ରଖିଥିଲେ । ସେମାନେ କାଶୀନାଥ ଗୋବିନ୍ଦ ଓ ଆନନ୍ଦ ତିନିଭାଇ ଥିଲେ । ସ୍ୱାଇଁ ସାହିଠାରୁ ପୂର୍ବକୁ ଗାଁର ପୂର୍ବ ଉତ୍ତର କୋଣରେ ସେମିତି ଆଉ କେତେ ଘର ଥିଲେ । ଠାକୁର ଗଦାଧରଙ୍କର ପରିଚାଳନା କଲାବେଳେ ବାଲୁଙ୍କେଶ୍ୱର ମହାନ୍ତି ତାଙ୍କ ଦୂରଦୃଷ୍ଟିର ପ୍ରମାଣ ରଖିଗଲେ । ଜମିବାଡ଼ି ଆୟ ବ୍ୟତୀତ ଠାକୁରଙ୍କର ସେବା ପୂଜା ପାଇଁ ସେ ପ୍ରାୟ ପଚାଶଖଣ୍ଡେ ନଡିଆ ଗଛ ଓ ଅନେକ ଗୁଆ ଗଛ ଲଗାଇଥିଲେ । ସେଥିରୁ ନଗଦ ପଇସା ଆୟ ହେଉଥିଲା । ନିଜର ମଧ

ଅନେକଗୁଡ଼ିଏ ଛାତିଆ ନଡ଼ିଆଗଛ ଲଗାଇଥିଲେ ଅର୍ଥକାରୀ ଫସଲ ଭାବରେ । ତାଙ୍କ ସ୍ତ୍ରୀ କମଳା । କମଳି ଅପା ନାମରେ ସେ କରଣ ସମାଜରେ ଆଖ ପାଖ ଗାଁରେ ଖୁବ୍ ଜଣାଶୁଣା ଥିଲେ । ସେ ଯୁଗରେ ବାହାଘର ଓ ଅନ୍ୟାନ୍ୟ ଶୁଭ ଉତ୍ସବରେ କେବଳ ଘରଣ ଝିଅ ବୋହୁମାନେ ରାନ୍ଧୁଥିଲେ । ବାହାରଲୋକେ ଉଚ୍ଚ ବର୍ଣ୍ଣ ପଛେ ହେଉ ରାନ୍ଧିଲେ ତାହା ଦେଇପିଣ୍ଡି (ବଡବଡୁଆ)ଙ୍କ ସେବା ପାଇଁ ଯୋଗ୍ୟ ହେଉନଥିଲା । କମଳି ଅପା, ଜହ୍ନମାମୁଁ ପରି ସବୁରି ଅପା ଥିଲେ । ଖୁବ୍ ପରିଣତ ବୟସରେ ଦେହତ୍ୟାଗ ପର୍ଯ୍ୟନ୍ତ ସେ ପହଞ୍ଚି କଣ ରନ୍ଧା ଯିବ କିପରି ଏହା ସ୍ୱାଦିଷ୍ଟ ଓ ରୁଚିକର ହେବ ତାହା ନିର୍ଦ୍ଦେଶନା ଦେଇ ରନ୍ଧାବଢ଼ା ତଦବିର କରୁଥିଲେ । ତାଙ୍କର ଏକମାତ୍ର ପୁଅ ଅକାଳରେ ଚାଲିଗଲେ । ବଡ ନାତି ବାଇଧର ମଧ୍ୟ ମାଇନର ପଢୁଥିବା ବେଳେ ଚାଲିଗଲା । ସାନ ନାତି ବଳରାମ ପରବର୍ତ୍ତୀ କାଳରେ ଠିକାଦାରି କରି ଅର୍ଥ ଓ ସୁନାମ ଅର୍ଜନ କଲେ । ବାମନ ବାବୁ ୧୯୦୨ରେ ଅମଲା ହେବାର ଠିକ୍ ଏକଶତ ବର୍ଷ ପରେ ତାଙ୍କ ପୁଅ ପ୍ରମୋଦ ଏମ୍.ଏ. ଡେପୁଟି କଲେକ୍ଟରରୁ ଆଇ.ଏ.ଏସ୍. ଜିଲ୍ଲା ମାଜିଷ୍ଟ୍ରେଟ ପଦବୀରୁ କମିସନର ପଦରେ ଅବସ୍ଥାପିତ ହେଲେ । ମୁଖ୍ୟ ଶାସନ ସଚିବ ଓ ମୁଖ୍ୟମନ୍ତ୍ରୀଙ୍କର ଦପ୍ତରରେ ବହୁ ସ୍ପର୍ଶକାତର ବିଷୟ ସହ ସଂପୃକ୍ତ ଥାଇ ଦୀର୍ଘଦିନ କାର୍ଯ୍ୟକରି, ସମ୍ମାନ ଓ ସୁନାମ ସହିତ୨୦୧୦ ମସିହାରେ ଅବସର ପୂର୍ବକ ସେ ନିଜ ଜନ୍ମମାଟିକୁ ଗୌରବାନ୍ୱିତ କରିଛନ୍ତି । କଣିଆଁର ଶିକ୍ଷା ଓ ନିଯୁକ୍ତି ଅଧ୍ୟାୟରେ ଏହା ଏକ ସ୍ମରଣୀୟ ବର୍ଷ । ତାଙ୍କର ଆଉ ଦୁଇ ଅଂଶ । ଜନାର୍ଦ୍ଦନ ଓ ସନାତନ ଗୋଟିଏ ଅଂଶର । ଯୁଗଳ ଚରଣ ଆଉ ଗୋଟିଏ ଅଂଶର । ଋଷିନାଥ ଜନାର୍ଦ୍ଦନଙ୍କର ଓ ଗୋବିନ୍ଦଚନ୍ଦ୍ର ସନାତନଙ୍କର ପୁତ୍ର ଥିଲେ । ଯୁଗଳ ନିସନ୍ତାନ ଥିବାରୁ ଏହି ଅଂଶରୁ ନିତ୍ୟାନନ୍ଦଙ୍କୁ ପୋଷ୍ୟପୁତ୍ର ଗ୍ରହଣ କରିଥିଲେ । ଏଇ ସବୁ କରଣମାନେ ନିଜ ଗୋତ୍ର ସହିତ ଗୋଟିଏ ଜାଗାରେ ଥିଲେ । ଗାଁର ପୂର୍ବମୁଣ୍ଡରେ ଗୋପାଳ କେତେଘର ଥାଇ ଗୋପାଳନ ଦ୍ୱାରା ଗ୍ରାମର ଦୁଧ ଦହି, ଘିଅ ଚାହିଦା ପୂରଣ କରୁଥିଲେ । ଭାଗିରଥି (ଭାଗ) ଦାସ ନାମରେ ଜଣେ ଅନେକ ବଡ଼ ଜମିଦାରଙ୍କର ଛାଟିଆ ଥିଲେ । ତାଙ୍କ ପୁଅ କ୍ଷେତ୍ରମୋହନ କୃଷି ନିର୍ଦ୍ଦେଶକ କାର୍ଯ୍ୟାଳୟରୁ ଅବସର ନେଲେ ।

**ଭୌଗୋଳିକ ସ୍ଥିତି :**

ଗାଁର ଦକ୍ଷିଣ ଭାଗରେ ଅଳକା ନଦୀ । ଏହାର ପୂର୍ବ ମାଛଗାଁ ରାସ୍ତା ଓ ପଶ୍ଚିମ ମାଛଗାଁ କୋନାଲରେ ଆବଦ୍ଧ । ଏକଦା ଏହା ସୁନାବ୍ୟା ଥିଲା । ବର୍ତ୍ତମାନ ପ୍ରାୟ୍ ଏକ କି ଦେଢ଼ କିଲୋମିଟର । ବରଷା ପାଣି ଜମେ । ନାଳିଓ, ଇଶ୍ୱରପୁର କଣିଆ ଗାଁର ଲୋକଙ୍କର ସ୍ନାନ ଓ ଜଳସେଚନରେ ଏହା ବ୍ୟବହୃତ ହେଉଥିଲା । ଏବକୁ ଏହା ଦଳରେ ଆବଦ୍ଧ । ସ୍ନାନ ବା ଜଳସେଚନ ଅନୁପଯୁକ୍ତ । ଆମ୍ଭ ପିଲାଦିନେ ଏଠାରେ ଖରାଦିନେ ମଧ ପାଞ୍ଚ ଛଅଫୁଟ ପାଣି ରହିଥାଏ । ସମସ୍ତେ ଗାଧୋଇ ନୋଟା, ବା କଳସିରେ ଜଳ ନିଅନ୍ତି ଘରକୁ । ଗାଈ ଗୋରୁ ଗାଧାନ୍ତି ମାତ୍ର ଜଳ ପ୍ରଦୂଷିତ ନ ଥାଏ । ୧୯୨୮ ବେଳକୁ ସବୁ ଜଳାଧାର ଗୁଡ଼ିକରେ ବିଲାତିଦଳ ବଢ଼ିଗଲା । ଶୁଣାଯାଏ ଏହାର ସବୁଜିମା ଓ ପୁଷ୍ପର ଗୋଲାପି ଆଭାରେ ଆକର୍ଷିତ ହୋଇ କେହି ଜଣେ ବଙ୍ଗ ଦେଶରୁ ପାଣି ଲୋଟାରେ ଆଣିଥିଲେ । ଏହା ଖୁବ୍ ଶୀଘ୍ର ବଢ଼ିଚାଲେ । ମେଲେରିଆ ପ୍ରକୋପ ବଢ଼ିବା ସଙ୍ଗେ ଜଣାଗଲା ଯେ ମଶାବଂଶ ବୃଦ୍ଧି ଏହି ଦଳ ପୋଖରୀ ଯୋଗୁ ବିସ୍ତୃତ ହେଉଛି । ସରକାର ଜିଲ୍ଲାବୋର୍ଡ ଆଇନରେ ବ୍ୟବସ୍ଥା ରଖିଲେ । ଯେଉଁ ଜଳାଧାରରେ ଏହି ଦଳ ଦେଖାଯିବ ତାହାର ମାଲିକ ତତ୍‌କାଳିକ ବିଚାରରେ ଦୁଇଶ ଟଙ୍କା ପର୍ଯ୍ୟନ୍ତ ଜୋରିମାନା ଦେବେ । ଏଥିପାଇଁ ଜଣେ ଜଣେ ହାକିମ ସବଡେପୁଟି କଲେକ୍ଟର ମଧ ରହିଲେ । ସେମାନେ ନିର୍ଦ୍ଦେଶ ଦେଲେ ନିର୍ଦ୍ଦିଷ୍ଟ ସମୟ ମଧରେ ଦଳ ସଫା କରିବାକୁ ହୁଏ । ନ ହେଲେ ସେଇ କ୍ଷେତ୍ର ଉପରେ ମାଲିକଙ୍କୁ ଜୋରିମାନା କରାଯାଏ । ଫଳରେ ଜଳାଶୟମାନ ସଫା ରହିଲା । ଅଳକା ନଦୀରେ ଅନେକ ଗୁଡ଼ିଏ ମାଲିକ ମାତ୍ର ଯେଉଁମାନେ ବ୍ୟବହାର କରୁଥାନ୍ତି ଓ ନଦୀ ନିକଟରେ ରହୁଥାନ୍ତି ସେଇମାନେ ଆଇନର ଦଣ୍ଡ ବେଶି ଭୋଗିବାର ଭୟଥିଲା । ଫଳରେ ନଦୀ ସଫା ଥିଲା । ଜାଗା ଜାଗା ପଦ୍ମଫୁଲ ବା କଇଁଫୁଲ ଫୁଟୁଥାଏ । ତାହା ମଧ ଜଳ ବିଶୋଧନ କାମ କରୁଥାଏ । ଟେକା ପାଣି ଗାଧୁଆ ମଫସଲରେ ଆମେ ଜାଣିନଥିଲୁ । ଖରାଦିନେ ସକାଳୁଆ ଇସ୍କୁଲ ସାରି ଘଣ୍ଟେ ଦି ଘଣ୍ଟା ନ ବୁଡ଼ିଲେ ପିଲାଦିନେ ମନ ସନ୍ତୋଷ ହେଉ ନଥିଲା । ନଦୀର ପାଣି କମିଲେ ମାଛ ଧରା ହେଉଥିଲା । ମାତ୍ର ୨/୪ ଦିନ ପରେ ଗୋଳିଆ ପାଣି ପୁଣି ବସି ଯାଉଥିଲା । ନଦୀରୁ

ପାଣି ଟେଣ୍ଡାରେ ଉଠାଇ କୂଳ କଣ୍ଡିଆ ଜମିରେ ପନିପରିବା ତରଭୁଜ, ଫୁଟି, କାକୁଡି, ଖଡ଼ା ଶାଗ, ସାରୁ ଆଦି ଫସଲ ଆମଦାନି ହେଉଥିଲା ।

ଗାଁରେ ବିଭିନ୍ନ ଜାତି ପାଟକର ଲୋକଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ସଦ୍‌ଭାବ ଥିଲା । ଅବଶ୍ୟ କରଣ ଟୋକାଙ୍କ ମଧ୍ୟରେ ଜଣେ ଜଣେ ନିଜକୁ ଖୁବ୍ କ୍ଷମତାଶାଳୀ ଭାବି ଯାହାକୁ ଦୁର୍ବଳ ଦେଖୁଥିଲେ, ଯେ ପ୍ରତିବାଦ କରିବାକୁ ଅକ୍ଷମ ଥିଲା ତାକୁ ମାଡ ମାରିବା ଗାଳିଦେବା ଘଟଣା ଅସାଧାରଣ ନଥିଲା । ମାଡ଼ ଖାଇବା ଲୋକ ଗରିବ । କାହାକୁ କହିବ । ଗାଁର ପଞ୍ଚାୟତ ହୁଏତ ତା କଥା ଶୁଣିବେ ନାହିଁ । ସେ ଖାଲି ସହେ । ନିରବରେ ଜଗଟିଏ ବୋଲି ଧର୍ମଦଣ୍ଡ ଅପେକ୍ଷା କରୁଥିଲା ।

ତୁ ମତେ ମାର ମୁଁ ତତେ ନ ମାରେ
ଦିନେ ମାରୁଥିବ ତତେ ଆନ,
ଦେଖୁଥିବ ମୋର ଦୁଇ ନୟନ
ଆଉ ଶୁଣୁ ଥିବ ମୋର କାନ ।

## ସାମାଜିକ ଉତ୍ସବ :

ଧର୍ମ, ବିଚାର, ଭୟ, ଅବିବେକୀ ବା ଅବୈଧ କାର୍ଯ୍ୟ କରିବାରେ ବିଶେଷ ଅନ୍ତରାୟ ଥିଲା । ଜାତିବର୍ଣ୍ଣ ନିର୍ବିଶେଷରେ ଗାଁରେ ଠାକୁର ଠାକୁରାଣୀଙ୍କ ପାଖରେ ସଂକ୍ରାନ୍ତି, ପୂର୍ଣ୍ଣିମା, ଆମାବାସ୍ୟା ପାଳି ହେଉଥିଲା । ଅତି କମ୍‌ରେ ୧୨ଜଣ ଏକାଠି ହୋଇ ଏହି ଦିନ ରାତିରେ ପ୍ରସାଦ କରି ଠାକୁରଙ୍କୁ ଭୋଗ କରୁଥିଲେ । ଏକାଠି ବସି ପାଉଥିଲେ । ବରଷକେ ଜଣକୁ ଥରେ ପାଳି ଦେବାକୁ ପଡୁଥିଲା । ଏକାଠି ହୋଇ ପ୍ରଥମେ ଭାଗବତ ପାଠ ଓ ଶାସ୍ତ୍ରଚର୍ଚ୍ଚା ହେଉଥିଲା ।

ଭାଗବତରେ ଅଛି-

ଦ୍ୱାଦଶୀ ଏକାଦଶୀ ତିଥି — ଅଷ୍ଟମୀ ପୂର୍ଣ୍ଣିମା ସଂକ୍ରାନ୍ତି
ଅମାବାସ୍ୟା ଚତୁର୍ଦ୍ଦଶୀ ପର୍ବ — ଯେ ପୁଣ୍ୟ ତିଥିମାନ ସର୍ବ
ପଢ଼ି ଶୁଣିଲେ ସର୍ବସିଦ୍ଧି — ପୁଣ୍ୟ ସଂପଦ ଆୟୁ ବୃଦ୍ଧି
ଅନ୍ନ ଭୋଜନ ବିନା ଯେବେ — ପଠନ ଶ୍ରବଣ କରିବେ
ମହାପାପରୁ ମୁକ୍ତି ହୋଇ — ବିଷ୍ଣୁର ଭକତି ଲଭଇ ।

(ଭାଗବତ ୧୨/୧୨ଅ)

ଅନ୍ନ ଭୋଜନ ତେଣୁ ନିଷେଧ ଥିଲା । ସଭ୍ୟ ବାରଜଣ ମାତ୍ର ନିଜର ନିମନ୍ତ୍ରିତମାନଙ୍କର ସଂଖ୍ୟା ନିଜ ଆର୍ଥିକ ସ୍ଥିତି ଉପରେ ନିର୍ଭର କରୁଥିଲା । ପ୍ରାୟ ଗାଁର ସବୁ ବୟସ୍କ (ବୃଦ୍ଧମାନଙ୍କୁ ବାଦ ଦେଇ) ଏଥିରେ ଭାଗ ନେଉଥିଲେ । ଗାଁରେ କରଣମାନଙ୍କର ଇଷ୍ଟଦେବ ଗଦାଧର । ଜଗନ୍ନାଥଙ୍କର ଏକାକୀ ସ୍ୱରୂପ । କାନଗୋଇ ଜମିଦାରବଂଶ ଏହାର ମାରଫତଦାର । ମାତ୍ର ଅନ୍ୟମାନଙ୍କର ସେବା ପୂଜା ଅଧିକାର ଅବାରିତ ଥିଲା । ତଥାପି ବେଳେ ବେଳେ ବ୍ୟକ୍ତିଗତ ଆକ୍ରୋଶ ଫଳରେ ଜଣକୁ ପୂଜାକରିବା ବା ଭୋଗ ଦେବାରେ ପ୍ରତିବନ୍ଧକ ସୃଷ୍ଟି ହେଉଥିଲା । ମହାନ୍ତି ସାହିରେ ପାର୍ବତୀ ଦେବୀ । ଗାଁ ମଝିରେ ବଳଗଣ୍ଡିରେ ରାଧାକୃଷ୍ଣ ଠାକୁରାଣୀ ଓ ଗାଦି ଗୋସେଇଁ ବିଶେଷ ଲୋକପ୍ରିୟ । ଏହା ବାଦେ ଅନ୍ୟ କେତେ ଜାଗାରେ ବଡ ବରଗଛମୂଳେ ମାଟି ଗମ୍ଭିରାରେ ଦେବୀମୂର୍ତ୍ତି କଳ୍ପନା କରାଯାଇ ପୂଜା ହେଉଥାଏ । ଆମ ସାହିରେ ଅମ୍ବିକା ଠାକୁରାଣୀ ଥାଆନ୍ତି । ତାଙ୍କର ମନ୍ଦିର ଥାଏ । କାହାର ଭଲ ମନ୍ଦ କିଛି ହେଲେ ସେ ମାନସିକ କରି ମନକାମନା ପୂର୍ଣ୍ଣ ହେଲେ ଠାକୁରାଣୀଙ୍କୁ ଚୁଆ ହଳଦୀଦେଇ ଗାଧୋଇ ଦେଉଥିଲା ଓ ଉଖୁଡ଼ା ନଡ଼ିଆ ଭୋଗ କରୁଥିଲା । ବୋଧହୁଏ ଏଥିରେ ବିଶ୍ୱାସ ବେଶି କାମ ହେଉଥିଲା । ମୋର କେତେଥର ଜର ହେବାବେଳେ ବୋଉ ମାନସିକ କରେ । ଜର ଛାଡିଯାଏ, ସେ ଠାକୁରାଣି ଗାଧୋଇ ଦିଏ । ଚୁଆ ହଳଦି ଦେଇ ଶକ୍ତି ଅନୁସାରେ ଉଖୁଡ଼ା ନଡ଼ିଆ ଭୋଗ ଦିଏ । ଠାକୁରାଣି ସେବାକୁ କେହି ଜଣେ ବ୍ରାହ୍ମଣଙ୍କୁ ଡାକି କରାଉଥିଲା ।

ଗଦାଧରଙ୍କର ନାନା ଯାନି ଯାତ୍ରା ହୁଏ । ତାଙ୍କର ଜମିବାଡ଼ି ଆୟ ପରିଚାଳନା ନିମିତ୍ତ ଜଣେ ମାରଫତଦାର ଦାୟିତ୍ୱରେ ଥାଆନ୍ତି । ସମସ୍ତଙ୍କର ସମ୍ମତିରେ ସେ ଯାନିଯାତ୍ରା ଚଳାନ୍ତି । ବୈଶାଖରେ ଚନ୍ଦନ । ରାଧାକୃଷ୍ଣ ବିଜେ ପ୍ରତିମା ଚନ୍ଦନ ପୋଖରୀକୁ ଯାଆନ୍ତି । ବିଧି ରକ୍ଷା ପାଇଁ ଗୋଟାଏ ପରାଟ (ବଡ଼ ପିତଳ ଥାଳି)ରେ ତାଙ୍କୁ ବସାଇ ଜଳକେଳି ଦୁଇଚାରିଘଣ୍ଟା କରାଯାଏ । ଦୋଳରେ ସେମିତି ସେଇ ରାଧାକୃଷ୍ଣ ପ୍ରତିମା ବିମାନରେ ବସି ଗାଁରେ ପୂର୍ଣ୍ଣମୀ ପର୍ଯ୍ୟନ୍ତ ମାରଫତଦାରମାନଙ୍କ ଦାଣ୍ଡ ବ୍ୟତୀତ ଅନ୍ୟ ଘରମାନଙ୍କୁ ଯାଇ ଭୋଗ ଖାଆନ୍ତି । ଠାକୁରେ ଦାଣ୍ଡକୁ ଆସିଲେ ଏହା ନିଜ ପାଇଁ ଗୌରବ ଓ ଆନନ୍ଦ ବୋଲି ଗୃହସ୍ଥ ଅନୁଭବ କରୁଥିଲା ଓ ଏଥିପାଇଁ

ମଧ୍ୟ ପ୍ରସ୍ତୁତ ହୋଇ ରହୁଥିଲା । ବିମାନ ବାହକମାନଙ୍କ ମଜୁରି ବାବଦ କିଛି ଦେୟ ଥିଲା । ଗୋଟାଏ ଦିନ ଅନେକ ଗୁଡ଼ିଏ ବିମାନ ଆସି ଜମିଦାରଙ୍କ ଦାଣ୍ଡରେ ଏକାଠି ହୁଅନ୍ତି ଏହାକୁ ମେଲଣ କୁହାଯାଏ । ସେମାନେ ନିଶଂକୁଡି ଭୋଗ ପାଆନ୍ତି । ମର୍ଯ୍ୟାଦା ପାଆନ୍ତି । ସଂନ୍ଧ୍ୟା ପୂର୍ବରୁ ନିଜ ବିଜେ ସ୍ଥଳକୁ ଲେଉଟନ୍ତି । ପୂର୍ଣ୍ଣମୀ ଦିନ ଗଦାଧରଙ୍କ ମଠ ଦୋଳମଣ୍ଡପରେ ଝୁଲଣରେ ରାଧାକୃଷ୍ଣ ବିଜେ ହୁଅନ୍ତି । ଗାଁର ଲୋକେ ସେଠାରେ ତାଙ୍କୁ ଭୋଗ ଦିଅନ୍ତି । ଅବଧାନ୍ନ (ଜ୍ୟୋତିଷ) ନୂଆ ବର୍ଷର ପାଞ୍ଜି ସମସ୍ତଙ୍କୁ ଶୁଣାନ୍ତି । ଆଗାମୀ ବର୍ଷର ଶୁଭ ଅଶୁଭ ଚର୍ଚ୍ଚା କରାଯାଏ । ତାଙ୍କୁ କିଛି ବିଦାକି ମିଳେ । ଦୋଳ ପୂର୍ଣ୍ଣମୀଠାରୁ ଗାଁରେ କୃଷି ସହକାରୀ ନିଯୁକ୍ତି ହୁଏ । ବାର୍ଷିକ ଦରମା ଧାର୍ଯ୍ୟ କରାଯାଏ ଓ ଚାକିରିଆ ସେଇ ନୂଆ ସର୍ତ୍ତରେ ବରଷକ ଯାକ କାମ କରେ । ଦରମା ନଗଦ, ଧାନ ବା ଜାଗିରି ଜମି ଆକାରରେ ହୋଇପାରେ । ପାନଗୁଆ ଖରଚ ବାଦେ ବରଷକୁ ଲୁଗାପଟା ମଧ୍ୟ ପାଇବାରେ ସର୍ତ୍ତ ଥାଏ । ରଜ ପର୍ବରେ ଗାଁ ମାନଙ୍କରେ ବାଗୁଡି ଖେଳ ହୋଇ କୃଷିରୁ ଅବ୍ୟାହତି ନେଇଥିବା ୨/୩ ଦିନ କଟିଯାଏ । ଗାଁ ଗାଁ ମଧ୍ୟରେ ବାଗୁଡ଼ି ପ୍ରତିଯୋଗୀତା ମଧ୍ୟ ହୁଏ । ଲେଖନ ବସା ବା ଦଶହରା ଗାଁରେ ଖୁବ୍ ଜାକଜକମରେ ପାଳିତ ହୁଏ । କରଣମାନଙ୍କ ବ୍ୟତୀତ ମକଦମ ଗଣେଶ୍ୱର ସ୍ୱାଇଁ ତାଙ୍କ ଘରେ ଲେଖନ ବସାଉଥିଲେ । ସପ୍ତମୀ ଦିନ ଲେଖନ ବସାଯାଏ । ଦଶମୀ ଦିନ ଏହା ଉଠାଯାଏ । ତାଳପତ୍ର ମଧ୍ୟ ପୂଜା ସାମଗ୍ରୀରେ ଥାଏ । ଘଟପୂଜା କରାଯାଏ । ଶ୍ରୀଚଣ୍ଡୀ ମଧ୍ୟ ଅଷ୍ଟମୀଦିନ ପଢ଼ାଯାଏ । ଲେଖନ ସହିତ ଖଣ୍ଡା ମଧ୍ୟ ପୂଜାପାଏ । ବୋଧହୁଏ ଅସି କ୍ଷତ୍ରୀୟ ଓ ମସି କ୍ଷତ୍ରୀୟ ଏକ ଏହା ଦର୍ଶାଇବାକୁ । ପାଟଣା ହାଇକୋଟର ଜଷ୍ଟିସ ଜ୍ୱାଲା ପ୍ରସାଦ ୧୯୨୭ ମସିହାରେ ଏକ ପାଣ୍ଡିତ୍ୟପୂର୍ଣ୍ଣ ରାୟରେ (୧୯୨୭ ଏ.ଆଇ.ଆର ୧୪୫) । କରଣମାନଙ୍କ ଉତ୍ପତ୍ତି ବିଭିନ୍ନ ଶାସ୍ତ୍ର ପୁରାଣ ଆଧାର ଉପରେ ଆଲୋଚନା କରିଥିଲେ । ଯମ ସଂହିତାରେ ବର୍ଣ୍ଣନା ଅଛି ଯେ ପ୍ରାଣୀମାନଙ୍କୁ ମରଣ ପରେ ଦଣ୍ଡ ଦେଉଥିବା ଧର୍ମରାଜ, ବ୍ରହ୍ମାଙ୍କୁ ତାଙ୍କ ହିସାବ କିତାବ ଠିକ୍ ରଖିବାରେ ଅସୁବିଧା ଅନୁଭବ କରୁଥିବା ଆପତ୍ତି କଲେ । ସଂସାରର ସବୁ ଲୋକଙ୍କର ପାପ ପୁଣ୍ୟ କର୍ମର ହିସାବ ରଖିବା ସେଇ ଅନୁସାରେ ଦଣ୍ଡ ବା ପୁରସ୍କାର ଦେବା ଜଣେ ଲୋକ ପକ୍ଷରେ ସମ୍ଭବ ନୁହେଁ । ବ୍ରହ୍ମା ଏହା ଶୁଣି କିଛି ସମୟ ଧ୍ୟାନମଗ୍ନ



ହେଲେ । ତାଙ୍କ ଶରୀରରୁ ଜଣେ ଲୋକ ବାହାରିଲା । ସେ ହାତରେ ଦୁଆତ ଓ କଲମ ଧରିଥିଲା । ତାକୁ ଦେଖି ସେ ତାଙ୍କ କାୟା (ଶରୀର)ରେଏ ପର୍ଯ୍ୟନ୍ତ ଥିବା ହେତୁ ତାର ନାମ କାୟସ୍ଥ ଦେଲେ । ପୁଣି ସେ ତାର ଚିତ୍ର (ଶରୀର ରୂପ) ତାଙ୍କ ଶରୀରରେ ଗୁପ୍ତ କରି ରଖିଥିବା ହେତୁ ତାର ନାମ ଚିତ୍ରଗୁପ୍ତ ବୋଲି କହିଲେ । ସେ ହିସାବ କିତାବ ରଖିବାକୁ ନିୟୋଜିତ ହେଲା । ଚିତ୍ରଗୁପ୍ତଙ୍କର ସୁଦକ୍ଷିଣା ଓ ଇରାବତୀ ନାମରେ ଦୁଇ ପତ୍ନୀ ଥିଲେ । ଏମାନଙ୍କର ମୋଟରେ ୧୨ ଜଣ ସନ୍ତାନ ହେଲେ । ଏମାନେ ସମସ୍ତେ ଚିତ୍ରଗୁପ୍ତଙ୍କର ବଂଶଧର ଭାବେ ତାଙ୍କ କାର୍ଯ୍ୟ ସମ୍ପାଦନ କଲେ । ସେମାନଙ୍କ ନାମ ଥିଲା । ମାଥୁର, ଗଉର, ନିଗମ, ଆସ୍ଥାନା, କୁଳକ୍ଷେତ୍ର, ସୂର୍ଯ୍ୟଧ୍ୱଜ, ବଲ୍ଲୀକ, ଭାଟନଗର, ଶ୍ରୀବାସ୍ତବ, ଅମ୍ବସ୍ତି; ଶାକ୍ୟସେନ ଓ କରଣ । ପଦ୍ମପୁରାଣ ଭବିଷ୍ୟ ପର୍ବରେ ମଧ କରଣମାନଙ୍କର ଏହି ଉତ୍ପତ୍ତିର ବିବରଣୀ ଦେଖିବାକୁ ମିଳେ । ମନୁସଂହିତା ଦଶମ ଅଧ୍ୟାୟରେ ଏମାନଙ୍କୁ ବ୍ରାତ୍ୟ କ୍ଷତ୍ରୀୟ ଆଖ୍ୟା ଦିଆଯାଇଛି । ଉତ୍ତର ଭାରତ ଓ ବିହାର ବ୍ୟତୀତ ସମ୍ବଲପୁର ଓ ପଶ୍ଚିମ ଓଡ଼ିଶାର ଅନ୍ୟତ୍ର ଚିତ୍ରଗୁପ୍ତ

ପୂଜା ଉତ୍ସବ ସ୍ଥାନୀୟ କରଣମାନେ ପାଳନ କରିଥାଆନ୍ତି । ଓଡ଼ିଶାରେ ପରବର୍ତ୍ତୀ କାଳରେ ଜୈନ ଧର୍ମ ଓ ପରେ ବୈଷ୍ଣବ ଚେତନାର ପ୍ରଭାବରୁ ଏମାନେ ଉପବୀତ ଧାରଣ କରି ନ ଥାନ୍ତି । ପଶୁବଳି ସେହପରି କୁଷ୍ମାଣ୍ଡ (ପାଣି କଖାରୁ) ବଳିରେ ପରିବର୍ତ୍ତିତ ହୋଇଛି । ଲେଖନ ଉଠାଇବା ଦିନ ପ୍ରତ୍ୟେକ ଗୋଟିଏ ତାଳପତ୍ର ଓ ଲେଖନ ଧରି ନିଜ ଇଷ୍ଟଦେବ ଗଦାଧରଙ୍କ ପାଖକୁ ଯାଆନ୍ତି । ସେଠାରେ ସେମାନେ ଗଜପତି ମହାରାଜାଙ୍କର ନାମ ସାଲ ଓ ଅଙ୍କ ଲେଖି ତାଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରନ୍ତି । ଶେରଶାହଙ୍କ ସମୟରୁ ରାଜସ୍ୱ ଆଦାୟ ନିମିତ୍ତ ଷୋଡ଼ଶ ଶତାବ୍ଦୀରେ ନିଯୁକ୍ତ କର୍ମଚାରୀ କାରକୁନ ପରେ କାନୁନଗୋ ରୂପାନ୍ତରିତ ହୋଇଛି । ସେଇ ଖଜଣା ଆଦାୟ କରିବା, ଜମିଜମାର ସଠିକ ହିସାବ ରଖିବା ଏଇମାନେ ପୁରୁଷାନୁକ୍ରମେ କରି ଆସୁଛନ୍ତି । ମୁସଲମାନ ପରେ ମୋଗଲ ମରହଟ୍ଟା ଫିରିଙ୍ଗି ଏ ଦେଶକୁ ଆସିଲେ । ଶାସନ କଲେ । ରାଜା ପ୍ରଜା ସଂପର୍କ ଜାଣିବାର ଉପାଦାନ ଥିଲା ଜମି ଜମା ସଂକ୍ରାନ୍ତ କାଗଜ ପତ୍ର । ଯେ ରାଜା ହେବ ତାର ଏହି କାଗଜ ଦରକାର ପଡିବ ରାଜ୍ୟ ଶାସନ ପାଇଁ । ଏହି ହିସାବ ରକ୍ଷକମାନଙ୍କର ଆନୁଗତ୍ୟ ସେଇ ରାଜଶକ୍ତି ପ୍ରତି । ଭୂରାଜସ୍ୱ ଅସୁଲ । ଏହା ରାଜା ପ୍ରଜାର ସଂପର୍କର ସଠିକ ବିବରଣୀ । ପ୍ରଜାର ସ୍ୱତ୍ୱାସ୍ୱତ୍ୱ ସଠିକ ନିର୍ଣ୍ଣୟ ଫଳରେ ପ୍ରଜା ରାଜଭାଗ ଦେଇ ଖୁସି । ରାଜା ରାଜସ୍ୱ ଶାସନ ପରିଚାଳନା ବ୍ୟୟକୁ ବୋଝ ମଣିଲେ ନାହିଁ । ନିହାତି ପ୍ରଜାପୀଡକ ରାଜା ନ ହେଲେ ଅନ୍ୟମାନେ ଏ ବ୍ୟବସ୍ଥାରେ ଆନନ୍ଦରେ ଥିଲେ । ପୁରୀ ଗଜପତି ମହାରାଜା ଓଡ଼ିଶା ରାଜଶକ୍ତିର ପ୍ରତୀକ । ତାଙ୍କ ପ୍ରତି ଆନୁଗତ୍ୟ ପ୍ରତିଷ୍ଠିତ ସୁଶାସନ ପ୍ରତି ନିଷ୍ଠା । ତେଣୁ ବରଷକରେ ଥରେ ଏହା ସ୍ମରଣ କରିବାକୁ ଏହି ବ୍ୟବସ୍ଥା । ତାଳପତ୍ରରେ ଲେଖନୀରେ ଏହା ଲେଖି ନିଜ ଘରକୁ ଫେରି ସାମୂହିକ ଭାବେ ପ୍ରସାଦ ସେବନର ବ୍ୟବସ୍ଥା ରହିଛି ।

ଖାଲି କରଣ ଖଣ୍ଡାୟତ ନିଜର ଲେଖନ ପୂଜା କରୁନଥିଲେ । ଅନ୍ୟ ପାଟକର ଲୋକେ ମଧ୍ୟ ନିଜ ସଜ (ନିଜ କୁଳଧର୍ମର ପ୍ରତୀକ) ଏହି ସମୟରେ ପୂଜା କରିଥାଆନ୍ତି । ବ୍ୟବସାୟର ଶ୍ରୀବୃଦ୍ଧି ନିମିତ୍ତ ଦେବୀଙ୍କ ପାଖରେ ପ୍ରାର୍ଥନା କରିଥାଆନ୍ତି । ଗାଁରେ ବିଦେଶରୁ ଚାକିରିଆମାନେ ଏହି ସମୟରେ ପ୍ରାୟ ଆସିଥାନ୍ତି । ବିଦେଶରେ ପରିବାର ସହିତ ରହିବା ପ୍ରଥା ସେ ପର୍ଯ୍ୟନ୍ତ ପ୍ରଚଳିତ ନଥାଏ । ସେମାନେ ମନୋରଂଜନ

ନିମିତ୍ତ ସଂଗୀତ ନୃତ୍ୟ ଚର୍ଚ୍ଚା କରି ଏକ ଜନପ୍ରିୟ ନାଟକ ମଞ୍ଚସ୍ଥ କରିଥାନ୍ତି । ଦର୍ଶକମାନଙ୍କୁ କିଛି ଦେବାକୁ ପଡ଼େ ନାହିଁ । ଗାଁ ଚାନ୍ଦାରୁ ଏହାର ବ୍ୟୟ ନିର୍ବାହ କରାଯାଏ । ମାତ୍ର ଗାଁରେ ସବୁଠାରୁ ବଡ ଉତ୍ସବ ଥାଏ ରଥଯାତ୍ରା । ସ୍ନାନ ପୂର୍ଣ୍ଣମୀ ଦିନ ଗଦାଧରଙ୍କର ବିଜେ ହୁଏ ସ୍ନାନମଣ୍ଡପକୁ । ତାଙ୍କୁ ଫଳମୂଳ ଉଖୁଡ଼ା ମୁଆଁ ଲାଗିହୁଏ । ସନ୍ଧ୍ୟା ପରେ ସେ ଦେଉଳକୁ ଲେଉଟନ୍ତି । ତାଙ୍କ ଆଗରେ କୀର୍ତ୍ତନ ହୁଏ । ଗାଁ ଲୋକମାନଙ୍କୁ ମଠ ତରଫରୁ ପ୍ରସାଦ ଦିଆଯାଏ । ଅଘରଦୁଆରି ସମସ୍ତେ ଏହା ପାଇଥାଆନ୍ତି । ପରଦିନଠାରୁ ଠାକୁରେ ଅଣସରରେ ରହନ୍ତି । ରଥ ଦ୍ୱିତୀୟା ଦିନ ତାଙ୍କର କ୍ଷୁଦ୍ର ଆକାରର ବିଜେ ପ୍ରତିମା ମାଉସୀମା ଘରକୁ ଯାଆନ୍ତି । ଗଦାଧରଙ୍କୁ ସ୍ନାନ ମଣ୍ଡପକୁ ପ୍ରଥମେ କେବଳ ବ୍ରାହ୍ମଣମାନେ ଆଣୁଥିଲେ । ସେମାନଙ୍କର ସଂଖ୍ୟା କମିଗଲା । ଅସହଯୋଗ ଫଳରେ ଅନ୍ୟମାନେ ଭକ୍ତିର ସହିତ ଉପାସ ରହି ତାଙ୍କୁ ବିଜେ ଆସନରୁ ସ୍ନାନ ମଣ୍ଡପକୁ ଆଣନ୍ତି ଓ ପୁଣି ନେଇ ଅଣସରରେ ରଖନ୍ତି । ଶ୍ରୀଗୁଣ୍ଡିଚା ଦିନ ଠାକୁରେ ବଳଗଣ୍ଡିକୁ ଶଗଡ଼ରେ ଯାଆନ୍ତି । ଭକ୍ତମାନେ ଏହାକୁ ଟାଣି ପ୍ରାୟ ଏକ କିଲୋମିଟର ଦୂର ବଳଗଣ୍ଡିରେ ରଖନ୍ତି । ସେଠାରେ ତାଙ୍କର ସେବା ପୂଜା ଦାୟିତ୍ୱ ସେଠାକାର ମାରଫତଦାର ଗାଁର ପଣ୍ଡାବ୍ରାହ୍ମଣଙ୍କର । ଲେଉଟିବା ବେଳେ ଠାକୁରେ ରଥରେ ଆସନ୍ତି । ଶ୍ରୀଗୁଣ୍ଡିଚା ପରେ ଗାଁର ଯୁବକମାନେ ସାଇ ସାଇ ବୁଲି ଉପଯୁକ୍ତ ଗଛ ଦେଖି ହରିବୋଲ ଦେଇ ଗଛମାଲିକଙ୍କ ସମ୍ମତିରେ କାଟନ୍ତି । କାଠ ବାଉଁଶ ମଧ ସଂଗ୍ରହ ହୋଇ ରଥ ନିର୍ମାଣ କରାଯାଏ । ମଜୁରୀ ନେଇ ଗାଁର ମହାରଣା ରଥର ବିଭିନ୍ନ ଅଂଶ ତିଆରି କରନ୍ତି । ଦଧିନଉତି ବାଉଁଶରେ ହୁଏ । ତାହାକୁ ଜଣେ ଜମିଦାର କାହ୍ନୁଚରଣ ପ୍ରାୟ କରିଥାନ୍ତି । ଚକ ଅଲଗା ହୁଏ ନାହିଁ । ରଥରେ ମଗାଯଚା କରି ଆଣି ୪/୬ ଟି ଶଗଡ଼ ଚକ ୫/୭ ଦିନ ପାଇଁ ଲଗାଯାଏ । ଦଶମୀ ପରିବର୍ତ୍ତେ ଏକାଦଶୀ ଦିନ ଠାକୁରେ ଲେଉଟନ୍ତି । ଜମିଦାରଙ୍କ ଦାଣ୍ଡରେ ରଥରେ ରହନ୍ତି । ଭୋଗରାଗ ସେଇଠି ହୁଏ । ଅବଶ୍ୟ ନିଶଙ୍ଖୁଡି ଭୋଗ କେବଳ ଲାଗେ । ରାତିରେ ନାଟ୍ୟଦଳ ଆସନ୍ତି ଯାତ୍ରା ହୁଏ । ବଛା ବଛା ଯାତ୍ରାଦଳ ସେଥିପାଇଁ ଖୋଜାଯାଆନ୍ତି । ଦୁଇଦଳ ମଧ୍ୟରେ ପ୍ରତିଯୋଗୀତା ହୁଏ । ପାଖ ଗାଁରୁ ଭଦ୍ର ଲୋକମାନେ ନିମନ୍ତ୍ରିତ ହୋଇ ଆସନ୍ତି । ଅନ୍ୟମାନେ ଦର୍ଶକ ଭାବରେ ଆସନ୍ତି । ଦୁଇ ରାତି ଯାତ୍ରା ହୁଏ ।

ଶ୍ରେଷ୍ଠ ଦଳକୁ ସମ୍ମାନିତ କରାଯାଏ । ଗାଁରୁ ଏଥିପାଇଁ ସମସ୍ତଙ୍କଠାରୁ ଚାନ୍ଦା ଅସୁଲ ହୋଇଥାଏ । ଶ୍ରେଷ୍ଠ ଦଳକୁ ପୁରସ୍କାରଭାବେ ଅଧିକ କିଛି ପାରିଶ୍ରମିକ ମିଳେ । କେହି ଦର୍ଶକ କେବେକେବେଳେ ଶ୍ରେଷ୍ଠ ଅଭିନେତାଙ୍କୁ ରୂପା ମେଡାଲ ଦିଅନ୍ତି ବା ଦେବାର ପ୍ରତିଶ୍ରୁତି ଶୁଣାନ୍ତି । ଘରର ଝିଅବୋହୂମାନେ ପରଦା ନଥାଇ ଜମିଦାରଙ୍କର ବଡ଼ ଲମ୍ବା ପିଣ୍ଡାରେ ବସି ଏହି ଯାତ୍ରାର ଆନନ୍ଦ ଉଠାନ୍ତି । ପ୍ରାୟ ରାତିରେ ଯାତ୍ରା ହୁଏ । ସେମାନେ ତତ୍‌କାଳୀନ ବିଖ୍ୟାତ ଯାତ୍ରା ଅଭିନୟ ଲେଖକ ବୈଷ୍ଣବ ପାଣି ଓ ବାଳକୃଷ୍ଣ ମହାନ୍ତିଙ୍କର ପୌରାଣିକ ନାଟକମାନ ଅଭିନୟ କରନ୍ତି । ବାଳକୃଷ୍ଣ ତାଙ୍କର ସାମାଜିକ ଗୀତାଭିନୟ ସୁଶୀଳ ମାଳତୀ ପ୍ରଥମେ ଦେଖାଇଲେ । ତା ପରେ ଗଣକବି ବୈଷ୍ଣବ ପାଣି ଅନେକ ସାମାଜିକ ନାଟକ ମଧ୍ୟ ଲେଖିଲେ । ହାସ୍ୟ ଅଭିନୟ (ଫାର୍ଶ) ବିଶେଷ ଲୋକପ୍ରିୟ ଓ ଆନନ୍ଦ ଦାୟକ ହେଉଥାଏ । ବାଳକୃଷ୍ଣ, ପାଣିଙ୍କର ରକ୍ଷିତା କୌଣସି ଧୋବଣିକୁ ଲକ୍ଷ୍ୟରଖି ପାଣିଧୋବଣି ଫାର୍ଶ କଲାରୁ ବୈଷ୍ଣବ ନାଟୁଆ ମହାନ୍ତି ଫାର୍ଶ ଲେଖିଲେ । ଉଭୟର ଅଭିନୟ ଖୁବ୍ ଲୋକପ୍ରିୟ ଥିଲା । ପ୍ରତିବର୍ଷ ଅଲଗା ଅଲଗା ଗୀତାଭିନୟ ହେଉଥିଲା । ବହୁତ ଦୋକାନ ବଜାର ଦୁଇଦିନ ବସୁଥିଲା ।

ଜମିଦାରି ୧୯୫୨ରେ ଉଚ୍ଛେଦ ହେବା ପର୍ଯ୍ୟନ୍ତ ଏହି ରଥଯାତ୍ରା ଓ ଦୋଳମେଳଣ ନିମିତ୍ତ ବିସ୍ତୃତ ଅନାବାଦୀ ପଡ଼ିଆ ଥିଲା । ରଥଯାତ୍ରାରେ ପାଞ୍ଚଶହରୁ ସାତଶହ ପର୍ଯ୍ୟନ୍ତ ଲୋକ ଏକତ୍ରିତ ହେଉଥିଲେ । ପେଟ୍ରୋମାକ୍ସ ନ ହେଲେ କାରବାଇଡ ଗ୍ୟାସ ଆଲୋକରେ ଯାତ୍ରା ହେଉଥିଲା । ଅଭିନେତାମାନଙ୍କର ଝାଲର ଅଭ୍ରଲଗା ପୋଷାକ ଆଲୁଅରେ ଚକମକ କରେ । ଅଭିନେତାଙ୍କର ଉଚ୍ଚସ୍ୱରକୁ ବହୁଗୁଣିତ କରିବାରକୌଣସି ବ୍ୟବସ୍ଥା ନଥାଏ ତଥାପି ଦର୍ଶକମାନେ ଶୁଣି ପାରୁଥିଲେ ଓ ଆନନ୍ଦ ଉପଭୋଗ କରୁଥିଲେ । ମଝିରେ ବିରାଟ ଶହେବର୍ଷରୁ ବେଶି ବୟସର ଗୋଟିଏ ବରଗଛ ଥାଏ । ତା ଉପରେ ଚଢ଼ି ଡାଳରେ ବସି ମଧ୍ୟ ଦର୍ଶକମାନେ ଏହା ଉପଭୋଗ କରୁଥିଲେ । ଖାଲି ଆମେ ପିଲାମାନେ ନୁହଁ ଗାଁର ଅଧିକାଂଶ ପୁରୁଷ ସ୍ତ୍ରୀ ଏହି ଯାତ୍ରା ବରଷକେ ଥରେ ଦେଖିବାକୁ ଉତ୍‌କଣ୍ଠାର ସହ ଅପେକ୍ଷା କରିଥାନ୍ତି । ସାହିତ୍ୟ ପ୍ରତି ଆଗ୍ରହ ସୃଷ୍ଟି ସହିତ ଏହା ଦର୍ଶକକୁ ପୁରାଣର ବିଭିନ୍ନ ଉପାଖ୍ୟାନ ସହିତ ପରିଚୟ କରାଏ । ବାଣାପରାଜୟ, କଂସ ବଧ, କର୍ଣ୍ଣବଧ, ବେଣୀ ସଂହାର, ପରଶୁରାମ,

ଦାନୀ ହରିଶ୍ଚନ୍ଦ୍ର, ବଳି ପାତାଳ ଗମନ ଆଦି ଅଭିନୟ ଦେଖି ମୋର ଅନ୍ୟମାନଙ୍କ ପରି ପୁରାଣ ପଢ଼ିବାରେ ଆଗ୍ରହ ସୃଷ୍ଟି ହେଉଥିଲା । ଏବେ ସେ ରଥଯାତ୍ରା ନାହିଁ, ଅବଶ୍ୟ ଗୀତାଭିନୟର ଶୈଳୀ ଓ କଳା ବଦଳି ଯାଇଛି । ଜମିଦାରି ଉଠିଗଲା ବେଳେ ଏକପଦିଆ ଦାଖଲ ସମୟରେ ଜମିଦାରମାନେ ଅନାବାଦିକୁ ରଥଦାଣ୍ଡ ବା ମେଳଣପଡିଆ ଭାବେ ନ ରଖି ନିଜ ନିଜ ମଧ୍ୟରେ ବାଣ୍ଟିନେଲେ । କେହି ବିଶେଷ ଲାଭବାନ ହେଲେ ନାହିଁ । ମାତ୍ର ଦୂରଦୃଷ୍ଟି ଅଭାବରୁ ଏହା ଯେ ଜମିଦାରଘର ରଥଦାଣ୍ଡ ବା ସେମାନଙ୍କର ମେଳଣ ପଡିଆ ଥିଲା ଏହି ଐତିହାସିକ ତଥ୍ୟ ଭବିଷ୍ୟତ ଦାୟାଦମାନଙ୍କ ପାଇଁ ଅଜ୍ଞାତ ରହିଗଲା ।

ଯାତ୍ରା ଅଭିନୟ ବ୍ୟତୀତ ଅବସର ବିନୋଦନ ନିମିତ୍ତ ପାଲା ଥାଏ । ଦକ୍ଷିଣ ଓଡ଼ିଶାର ଦାସକାଠିଆ ସଂପୂର୍ଣ୍ଣ ଅପରିଚିତ ଥିଲା । ସତ୍ୟ ନାରାୟଣ ପୂଜାରୁ ପାଲାର ଉଦଭବ । ଏହା ହିନ୍ଦୁ ମୁସଲମାନ ଉଭୟ ସଂସ୍କୃତିକୁ ସମ୍ମାନ ଦେଇ ଲେଖାଯାଇଥାଏ । ବେଳେ ବେଳେ ଘରେ ସତ୍ୟନାରାୟଣ ପୂଜା ହୁଏ । ପାଚିଲା କଦଳି ନଡିଆ, ଗୁଡ଼, ବା କନ୍ଦ ଚାଉଳଚୂନା ମିଶାଇ କର୍ପୂର ଦେଇ ଶିରିଣି ଭୋଗ ଲଗାଯାଏ । ସତ୍ୟନାରାୟଣ ପାଲା ପୁରାଣ ପଢ଼ାଯାଏ । ଏଥିରେ ଷୋହଳ ଅଧ୍ୟାୟ ଥାଏ । ସାଧାରଣ ୧ମ ଜନ୍ମ ଦିବସରେ ଏହା ଆରମ୍ଭ ହୋଇ ପିଲାର ଷୋଳବରଷରେ ଶେଷ ହୁଏ । ଏଥିପାଇଁ ବାପା ମାଆ ମାନସିକ କରିଥାଆନ୍ତି । ମାତ୍ର ଗାଆଣ ବାଆଣ (ଗାୟକ ଓ ବାଦ୍ୟକାର) ଚାରିଜଣ ପାଳିଆଙ୍କୁ ଧରି ଯେଉଁ ପାଲା ହୁଏ ତାକୁ ଠିଆ ପାଲା (ସେମାନେ ଠିଆ ହୋଇ ଗାନ କରିବା ହେତୁ) କୁହାଯାଏ । ସତ୍ୟ ନାରାୟଣଙ୍କର ସ୍ତୁତି ବ୍ୟତୀତ ସେମାନେ ଓଡ଼ିଆ ପଦ୍ୟ ଛାନ୍ଦ ଚଉତିଶା, ବୈଦେହୀଶ ବିଳାସ, ବିଦଗ୍ଧ ଚିନ୍ତାମଣି, ରସକଲ୍ଲୋଳ, ମଥୁରା ମଙ୍ଗଳ, ଲାବଣ୍ୟବତୀ, ବିଚିତ୍ର ରାମାୟଣ ଆଦି କାବ୍ୟମାନଙ୍କରୁ ଉଦ୍ଧାରକରି ତାର ଅର୍ଥ ବୁଝାଇ ଦର୍ଶକମାନଙ୍କୁ ଆମୋଦିତ କରନ୍ତି । ବେଳେ ବେଳେ ଦୁଇ ଦଳ ମଧ୍ୟରେ ପ୍ରତିଯୋଗୀତା ହୁଏ । ନିଜର ପାଣ୍ଡିତ୍ୟ ବା ଶାସ୍ତ୍ରରେ ଗଭୀରତା ଦେଖାଇବାକୁ ଜଣେ ଗାୟକ ପ୍ରତିପକ୍ଷ ଗାୟକଙ୍କୁ କୌଣସି ଗୋଟିଏ କଠିନ ପଦ ବୋଲି ତାର ବିଭିନ୍ନ ଅର୍ଥ ବୁଝାଇବାକୁ ଆହ୍ୱାନ ଦିଅନ୍ତି ବା କୌଣସି ପୌରାଣିକ ଆଖ୍ୟାନ, କହି ତାହାର ଛାନ୍ଦ ଚଉତିଶା, ଚଉପଦୀ ଥିଲେ ବୋଲିବାକୁ କହନ୍ତି । କହି

ନପାରିଲେ ପ୍ରତିପକ୍ଷ ହାରିଯାଇ ତାଙ୍କର ଶ୍ରେଷତ୍ୱ ସ୍ୱୀକାର କରେ । ଦର୍ଶକମାନଙ୍କ ମଧ୍ୟରୁ ଅନେକ ରସାଗ୍ରହୀ ଆମୋଦିତ ହୋଇ ବିଭିନ୍ନ ବର୍ଣ୍ଣନାର ମୂଳ କହି ତାର ସଂପୂର୍ଣ୍ଣ ବର୍ଣ୍ଣନା ଶୁଣାଇବାକୁ ନିର୍ଦ୍ଦେଶ ଦିଅନ୍ତି । ଉଦାହରଣ ସ୍ୱରୂପ ବୈଦେହୀଶ ବିଳାସର ପ୍ରଥମ ପର୍ବ । 'ବନ୍ଦଇ ଦିନବାନ୍ଧବ ହରି' ଯାର ଅର୍ଥ କିଏ କେତେ ପ୍ରକାର କହି ପାରିବ ତାହା ଉତ୍କର୍ଷତାର ପ୍ରମାଣ କୁହାଯାଏ । ଦର୍ଶକ ଜଣେ ବୋଲିଦେଲେ 'ଶିଶୁଂପା ବୃକ୍ଷର ଡାଳେ' ବା 'କରାଇଲା ନୃତ୍ୟ ପଥିକ ପାଦକୁ ସଂଗ୍ରାମ ଭୂମି ଅଶ୍ୱବତ' । କେବଳ ସେତିକି ସୂଚାଇ ସେ ନିରବ ହୁଅନ୍ତି । ସେ ଆହ୍ୱାନ କଲେ ଏହାର ପରବର୍ତ୍ତୀ ପଦ ଓ ସଂପୂର୍ଣ୍ଣ ଛନ୍ଦର ଅର୍ଥ ଶୁଣାଇବାକୁ । ସେମାନେ ବିଶେଷ ଶିକ୍ଷାଲାଭ କରି ନଥିଲେ ମଧ୍ୟ ଉଭୟ ଶ୍ରୋତା ଓ ବକ୍ତା ଓଡ଼ିଆ ସାହିତ୍ୟ ଗଭୀର ଭାବରେ ଅଧ୍ୟୟନ କରିଥିଲେ । ଓଡ଼ିଆ ସାହିତ୍ୟରେ ଛାନ୍ଦ ଚମ୍ପୂ ଚଉତିଶା ଆଦିକୁ ବଞ୍ଚାଇ ରଖିବାରେ ଓ ବିବିଧ ବାଧା ପ୍ରତିବନ୍ଧକ ମଧ୍ୟରେ ଲୋକମାନଙ୍କ ମଧ୍ୟରେ ସାହିତ୍ୟ ପ୍ରତି ଆଗ୍ରହ ଅବ୍ୟାହତ ରଖିବାରେ ଏହି ପାଲାବାଲାଙ୍କର ଅବଦାନ ଅବିସ୍ମରଣୀୟ । କାଳକ୍ରମେ ପୁରାତନ ଓଡ଼ିଆ ସାହିତ୍ୟ ଆଉ ଏମାନଙ୍କର ପ୍ରଧାନ ଉପଜୀବ୍ୟ ହୋଇନାହିଁ । ବୋରିକିନାରେ ବରଷକେ ଥରେ ପାଲା ପ୍ରତିଯୋଗୀତା ହୁଏ, ତାକୁ ପୂଜା କହୁଥାନ୍ତି । ସେଇଥିପାଇଁ ସେଠାରେ ଦୋକାନ ବଜାର ୨/୪ ଦିନ ପାଇଁ ବସେ । ପାଲାର ମଜା ନ ବୁଝିଲେ ମଧ୍ୟ ଆମେ ପିଲାମାନେ ଏଥିପାଇଁ ସେଠାକୁ ଯାଉ । ବୋରିକିନା ଲାହା ଜମିଦାର ପରିବାରର ଅନୁକୂଲ୍ୟରେଏହା ହେଉଥିବାରୁ ଏଥିରେ ଓଡ଼ିଶାର ଲବ୍ଧ ପ୍ରତିଷ୍ଠ ପାଲା ଗାୟକମାନେ ଆସି ଭାଗ ନେଉଥିଲେ, ନିଜ ପାଣ୍ଡିତ୍ୟ ପ୍ରଦର୍ଶନ କରୁଥିଲେ ଓ ସସମ୍ମାନେ ବିଦାୟ ନେଉଥିଲେ ।

ପାଲା ବାଦ୍ ଆଉ ଗୋଟିଏ ମନୋରଂଜନ ବ୍ୟବସ୍ଥା ଥାଏ । ଗୋଟିପୁଅ । ଗୋଟିଏ ପୁଅ ଝିଅପରି ବେଶ ହୋଇ ବେଣୀ ପକାଇ ଅଷ୍ଟ ଅଳଙ୍କାର ଓ ଶାଢ଼ି ପିନ୍ଧି ଓଡ଼ିଶୀ ଗୀତ ଗାଏ ଓ ନାଚେ । ତାର ଗୁରୁ ଓସ୍ତାଦ ବେହେଲା ଧରି ତାକୁ ତାଳମାନ ବୋଲି ସାହାଯ୍ୟ କରନ୍ତି । ତା ସ୍ୱରରେ ସ୍ୱର ମିଶାଇ ଜୋରରେ ପାଟି କରନ୍ତି । ନାନା ପ୍ରକାର ଭଙ୍ଗୀ କରି ସେ ଅଭିନୟରେ ପ୍ରକାଶ କରେ । ଏବେ ଓଡ଼ିଶୀ ନୃତ୍ୟ ଓ ସଂଗୀତ ଦେଶ ବିଦେଶରେ ଆଦର ପାଉଛି । ଯେଉଁ କେତେଜଣ ବିଶିଷ୍ଟ ବୟସ୍କ

କଳାକାର ଏପରି ସମ୍ମାନିତ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହି ଗୁରୁମାନଙ୍କ ପାଖରେ ଗୋଟିପୁଅ ତାଲିମ ପାଇ ଦର୍ଶକମାନଙ୍କର ମନୋରଂଜନ କରୁଥିଲେ । ସମ୍ମାନ ଅର୍ଜନ କରୁଥିଲେ ମଧ୍ୟ କଳା ପ୍ରତି ନିଜର ଏପରି ନିଷ୍ଠା ଓ ଆନୁଗତ୍ୟ ଥାଏ ଯେ ସେଇ ଗୁରୁମାନେ ଅନ୍ୟ କିଛି ବ୍ୟବସାୟକୁ ଯିବାକୁ ଚାହୁଁ ନଥିଲେ । ବଡ଼ ଜମିଦାରମାନଙ୍କ ବିଭାଘରରେ ବର ସାଙ୍ଗରେ ଏହି ଗୋଟିପୁଅ ନାଚ ଯାଉଥିଲା । ଦଶରା, ରାସ ପୂର୍ଣ୍ଣମୀ, ଝୁଲଣ ବେଳେ ଏହି ଗୋଟିପୁଅମାନେ ନିଜ କୁଶାଗ୍ର ମନ୍ଦିର, ମଠବାଡିରେ ଦେଖାଇ କିଛି ଅର୍ଜନ କରୁଥିଲେ । ଗୁରୁ ଅବଧାନେ ନିଜର ଆଦରର ବେହେଲା ବେଶ ଭୂଷାର ସାମଗ୍ରୀ ଗୋଟିଏ ବେତ ପେଡିରେ ଭରି ଏକ ଭାରୁଆ ସାହାଯ୍ୟରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଥିଲେ ।

ଆଉ ଗୋଟିଏ ମନୋରଂଜକ ଜିନିଷ ଥିଲା କଳ ଗାଉଣା । କଳରୁ ଗୀତ ବାହାରେ । ଗୋଟିଏ ଛବିରେ କୁକୁରଟିଏ ବସିଥାଏ ତା ମାଲିକର ସ୍ୱର ମନ ଦେଇ ଶୁଣୁଥାଏ । ଏହା ଏଚ୍.ଏମ୍.ଭି କମ୍ପାନୀର ଚିହ୍ନ ଥିଲା । ଖୁବ୍ ବଡଲୋକ ଜମିଦାର ବା କେଂପ ପକାଇ ରହୁଥିବା ସରକାରୀ ଅଧିକାରୀମାନଙ୍କ ପାଖରେ ଏହା ଦେଖିବାକୁ ମିଳୁଥିଲା । ବାହା ବ୍ରତରେ ଏ ଗୀତ ଶୁଣାଇ ଲୋକଙ୍କୁ ଆମୋଦିତ କରାଯାଏ । ସ୍ୱର କୁଆଡୁ ଆସୁଛି ଶୁଣି ଲୋକେ ଚକିତ ହୁଅନ୍ତି । ଗଣେଶ, ସରସ୍ୱତୀ ପୂଜାରେ ମାଇନର ସ୍କୁଲରେ ଆମକୁ ବାବୁଘରୁ ମଗାଯାଇ ଏହା ଶୁଣାଯାଏ । ଗୀତଗୁଡିକ ଶୁଣିବାକୁ ମଜାଲାଗେ । ଶୁଣାଶୁଣିରେ ଅନେକ ଗୀତ ଲୋକମାନଙ୍କର ମନେ ରହିଯାଏ । ବରଷକୁ କେତେଖଣ୍ଡ ନୂଆ ରେକର୍ଡ ବାହାରେ । ପଛକୁ ଗୋଟିଏ ଚଟି ବହି ରେକର୍ଡ ଗୀତ ମଧ୍ୟ କିଣିବାକୁ ମିଳିଲା । ସେତେବେଳେର ମଜାଳିଆ ତିନିଗୋଟି ଗୀତର ଉଦାହରଣ ଦେଉଛି । ଏ ଗୀତମାନ ଲୋକମାନଙ୍କୁ ସାମାଜିକ ଓ ରାଜନୈତିକ ଚେତନା ଦେଉଥିଲା । ଜନପ୍ରିୟ ତିନୋଟି ଗୀତ ଲେଖୁଛି -

ଏ ଗୀତ ଓଡ଼ିଶା ପ୍ରଦେଶ ଗଠନ ଉଦ୍ୟମବେଳର ଓଡ଼ିଆଙ୍କ ଦୁଃଖ ।

ଉତ୍କଳ ଜନନୀ ହୋଇ ହିନିମାନି
ପଡି କାନ୍ଦେ ଦୁଃଖ ସାଗରେ ।

କୋଟି କୋଟି ସୁତ ଥାଇ କି ହେବ ତ
ଦୟା ନାହିଁ ଯାର ଚିତ୍ତରେ ।
ଚଉଦିଗ ଘୋର ଅନ୍ଧକାର ଗ୍ରାସି,
ମାଡି ଆସୁଅଛି ଦୁଃଖ ରାଶିରାଶି,
ଉଇଁବକି ସତେ ସୁଖ ପୂର୍ଣ୍ଣଶଶୀ
ଅଭାଗିନୀ ରଖ ଅମରେ ॥୧॥
ଦେଖି ହତଭାଗା ପୁତ୍ରଙ୍କ ବିକଳ
ଜନନୀଙ୍କ ପ୍ରାଣ ନୋହେ କି ଆକୁଳ
ଅନୁକ୍ଷଣେ ଦେହ ହେଲାଣି ଦୁର୍ବଳ
ଝୁରି ଝୁରି ଆତ୍ମ ଚିନ୍ତାରେ ॥୨॥

ଗାନ୍ଧି ଗୋଲଟେବୁଲ୍ ବୈଠକରୁ ଫେରିବା ବେଳେ-
ଆଛା, ଗୋଲଟେବୁଲ ପାଲା ଲାଗିଲାରେ
ବାବା ସତ୍ୟପୀର ପୂଜା ଲାଗିଲାରେ
ପାରଲାମେଣ୍ଟ ସତ୍ୟପୀର,
ମାକଡୋନାଲ୍ଡ ଗାଉଣୀ ଶିର,
ହ୍ୱାଇଟହଲରେ ପୀର ଆସ୍ଥାନ
ସାଜସଜା ଭାରି ଆନ
କେତେ ରଙ୍ଗେ ପୂଜା ବାଜା ବାଜିଲାରେ ॥୧॥

ଗାଉଁଣି ବାଉଣୀ ପାଳିଆ,
ମିଳିଗଲେ ଯେତେ କଳିହିଆ
ଶିଖ ହିନ୍ଦୁ ମୁସଲମାନ
ଜୈନ ବୌଦ୍ଧ ଖ୍ରୀଷ୍ଟିଆନ
ପିଟାପିଟି ତାଳ ଖୋଳ ଭାଙ୍ଗିଲାରେ ॥୨॥

ମଡରେଟ ସାପ୍ରୁ ଜୟକାର,
ନିଜାମ ଆଲୱାର ଗାଇକବାଡ,
ମହମଦ ସାଫି ଆଗା ଖାଁ
ସର୍ବେ ହେଲେ ଭାଁ ଭାଁ
କାନ୍ଦି କାନ୍ଦି ଗାନ୍ଧି ବୁଢ଼ା ଫେରିଲାରେ ॥୩॥
ପାଲା ହୋଇଲା ଶେଷ
ଓଡ଼ିଶା ସିନ୍ଧୁ ପ୍ରଦେଶ
ଶିରିଣି ବାଣ୍ଟିଲେ ବସି
ଆମେ ଓଡ଼ିଆ ହେଲୁ ଖୁସି
ସୁନାଫଳିବ ଭାଗ୍ୟେ ପାଲା ଫଳିଲାରେ ॥୪॥

ଓଡ଼ିଶାର ସବୁ ଅଞ୍ଚଳର ସୁଆଦିଆ ଖାଦ୍ୟର ତାଲିକା ଏଇ ଗୀତରେ-

ଆସ କିଏ ସେ ଯିବରେ
ଆଜି ରଜା ଘର ଖାନା
ଖଣ୍ଡ ଖଣ୍ଡ ବସା ଦହି ମୁଣ୍ଡା ମୁଣ୍ଡା ଛେନା
ଯୋଡା ଯୋଡା ଆରିଷା ପିଠା, ବଡ ମିହିଦାନା
ଭଦ୍ରଖର ପାଲୁଅ ଲଡୁ, ବାଲେଶ୍ୱରୀ ଗଜା,
କେନ୍ଦ୍ରାପଡା ରସାବଳୀ ରସ ଭାରି ମଜା
ଭୁବନେଶ୍ୱର ରସକୋରା, ଦୋ ପାଗି ଉଖୁଡା
ବାରିପଦାର ଗରମ ମୁଢ଼ି, ଧାମନଗର ଚୂଡ଼ା
ପୁରୀ ବେଢ଼ା ମଗଜ ଲଡୁ ଅମାଲୁ ସରପୁରି
ବିରଜା ବେଢ଼ା ମୋତିଚୁର କନ୍ଦଦିଆ ଭାରି
ସାକ୍ଷୀଗୋପାଳ ଗୁଡପାଟିଆ ଗହମ ଅଟା ଗଜା
ଟାକୁ ପାକୁଆ ପାଟିରେ ରଗଡିଦେଲେ ଡାକ ମାରିବ ମଜା ।

ସମ୍ବଲପୁର ଛେନାଦିଆ ଜଟଣି ଲେଡିକିନ
ଯାଜପୁରର ମୁଟମୁଟିଆ ସାତପତ୍ରିଆ ଫେଣି
ଆମ୍ବକଷିଆ ଅଦାଦିଆ ଆଳୁବଖରା ଚଟଣୀ
ପାଟିରେ ଦେଲେ ପେଟ ଭିତରେ ଲାଗିବ ଟଣାଟଣି ।

ମନୋରଞ୍ଜନ ପାଇଁ ନାନା କିସମର ଲୋକ ଥିଲେ । କାର୍ତ୍ତିକ ଅମାବାସ୍ୟାରେ ବଡବଡୁଆଙ୍କୁ କାଉଁରିଆ କାଠି ଜାଳି ଡାକି ସେମାନଙ୍କ ଉଦ୍ଦେଶ୍ୟରେ ପିଣ୍ଡ ବାଢ଼ିବା ସହିତ କାଳୀକା ନାଚ, କାଳୀପୂଜା ଦେବୀ ମନ୍ଦିରରେ ହୁଏ । ମାତ୍ର ଗାଁରେ ଜଣେ ଭକ୍ତ କାଳୀମୁଖା ଲଗାଇ ଗୋଡରେ ଘୁଂଗୁର ବାନ୍ଧି ଘଣ୍ଟ, ଢ଼ୋଲ ପେଁକାଳି ତାଳରେ ନାଚେ । ମୁଖାରେ କାଳୀକାଙ୍କ ପରି ଜିଭ ବାହାରିଥାଏ । ତାକୁ ଧୂପ, ଧୂଆଁ ଦିଆଯାଏ । ସେ ନାନା ଭଙ୍ଗିରେ ଚାମର ଧରି ନାଚେ । ବେଳେ ବେଳେ ସେ ଭାବାବେଗରେ ଅଚେତ ହୋଇଯାଏ । ଲୋକଙ୍କ ଆଗ୍ରହରେ ୧୦/୧୨ ଦିନ ସନ୍ଧ୍ୟାରେ ପ୍ରତିଦିନ ଏହା ୨/୩ ଘଣ୍ଟା ଚାଲେ । ସେମିତି ଚୈତ୍ର ମାସରେ ପାଟୁଆ ଯାତ୍ରା । ପାଟୁଆମାନେ ଠାକୁରାଣୀଙ୍କ ନାଁରେ ଉପବାସ କରନ୍ତି । ଘର ଘର ଲୋକଗୀତ ଗାଇ ବୁଲନ୍ତି । କେହି ପ୍ରତିଷ୍ଠିତ ଦେବୀ ପୀଠକୁ ଯାଇ ସେଠାରେ ନିଆଁରେ ପଣା ସଂକ୍ରାନ୍ତିରେ ଚାଲନ୍ତି । ଦେବୀ ପୀଠରୁ ବୈଶାଖ ମାସରେ ଠାକୁରାଣୀଙ୍କ ଘଣ୍ଟ ଗାଁ ଗାଁ ବୁଲେ । ଜଣେ ସେବକ ଭକ୍ତ ଏହାକୁ ମୁଣ୍ଡାଇ ଗାଁରେ ନାଚିଥାଏ । ରଣପାରେ ମଧ୍ୟ ଚାଲେ ମୁଣ୍ଡାଇକରି । ଏଥିରେ ଠାକୁରାଣୀଙ୍କର ସିନ୍ଦୁର ଓ ପୂଜା ଫୁଲ ବେଲପତ୍ର ସଜାଯାଇ ତାଙ୍କ ବିଗ୍ରହର ଭ୍ରମ କରୁଥାଏ । ଲୋକମାନେ ସେମାନଙ୍କୁ ଯତ୍‌ସାମାନ୍ୟ ଅର୍ଥ ଦେଇ ବିଦା କରନ୍ତି । ଝଙ୍କଡର ସାରଳା ଓ କାକଟପୁରର ମଙ୍ଗଳାଙ୍କ ଘଣ୍ଟ ବିଶେଷ ଲୋକପ୍ରିୟ ଥାଏ । ସେମିତି ଧର୍ମମାସ ବୈଶାଖ ଓ କାର୍ତ୍ତିକ । ସେଥିରେ ଚକୁଳିଆ ପଣ୍ଡାମାନେ ଗାଁକୁ ଗାଁ ବୁଲନ୍ତି । ସେମାନଙ୍କର ଏକ ଧରାବନ୍ଧା ବେଶ ଥାଏ । ତାଳପତ୍ର ଛତା ଧରି ଥାଆନ୍ତି । କେହି ଶ୍ରଦ୍ଧାରେ କଣ ଦେଲେ ତାକୁ ସେମାନେ ଗ୍ରହଣ କରନ୍ତି । ମାତ୍ର କିଛି ଭିକ୍ଷା ମାଗି ନଥାନ୍ତି । କାର୍ତ୍ତିକ ବା ବୈଶାଖ ମାସରେ ମାହାତ୍ମ୍ୟ ଶୁଣାଇ ଧର୍ମ କରିବାକୁ ସାଧାରଣ ଲୋକଙ୍କୁ ଆହ୍ୱାନ ଦିଅନ୍ତି ।

ଘରଦ୍ୱାର ନ ଥାଇ ଦଣ୍ଡାରେ ଅସ୍ଥାୟୀ କୁଡ଼ିଆ କରି ରହିଥାଆନ୍ତି କେଳାମାନେ । ସବାଖିଆ କେଳା । ସେମାନେ ଜନ୍ତୁ ଶିକାର କରି ଖାଆନ୍ତି । ଚେହେରା ହିଂସ୍ରପରି ଦିଶେ । ସବୁ ଖାଇ ପାରୁଥିବାରୁ ନାଁ ସବାଖିଆ । ସେମାନେ ଚୋର ଡକାୟତ ତାଲିକାରେ ଥାଆନ୍ତି । ଦେଶ ସ୍ୱାଧୀନ ହେବା ପରେ ସେମାନେ ଆଦିଆନ୍ତୁ (ତପସିଲଭୁକ୍ତ ଉପଜାତି)ର ମର୍ଯ୍ୟାଦା ପାଉଛନ୍ତି । ମାତ୍ର ଆଉ ଏକ ପ୍ରକାର କେଳା –ନଳୁଆ କେଳା । ସେମାନେ ଅପେକ୍ଷାକୃତ ଉନ୍ନତ । ପୁରୁଷମାନେ ନଳ ଯୋଖି ପକ୍ଷୀ ଶିକାର କରନ୍ତି ମାଂସ ପାଇଁ । ନ ହେଲେ ଅଠା କାଠିରେ ଧରି ଚଢ଼େଇ ପୋଷିବାକୁ ବିକିଦିଅନ୍ତି । ସେମାନେ ଗାଁରେ ଏକ ମୁଣ୍ଡରେ ଅପେକ୍ଷାକୃତ ସ୍ଥାୟୀ ଘରେ ରହନ୍ତି । ପୁରୁଷମାନେ କୁହୁକ ଦେଖାନ୍ତି । ଶୂନ୍ୟରୁ ଟଙ୍କା ପଇସା ଛୁଆ ଚଢ଼େଇ, ଅଣ୍ଡା, ଓଇଲେଇ ରଖାଯାଇଥିବା ଗୋଟିକେଇ ତକୁ ଆମଗଛ ଦେଖାନ୍ତି । ଖଣ୍ଡେ କାଇଁରିହାତ ତାଙ୍କ କୁହୁକ ଦେଖାଇବାର ଏକମାତ୍ର ସାଧନ ଯନ୍ତ୍ର ଥାଏ। ସ୍ତ୍ରୀଲୋକମାନେ ଦେହରେ ଚିତା କୁଟାନ୍ତି । ନାନା ପ୍ରକାର ଡିଜାଇନ ଆଙ୍କନ୍ତି । ଦେବଦେବୀ ବିଭିନ୍ନ ଫୁଲ, ଫଳ ସେଥିରେ ଥାଏ । ଲେଖିଦେଲେ ସେଇ ଅନୁସାରେ ଚିତା କୁଟା ହୋଇଯାଏ । ସେମାନେ ମଧ୍ୟ ସିନ୍ଦୁର ଗୋରଚନା କାଚମାଳ କାଠ ପାନିଆଁ ଆଦି ଧରି ଗାଁର ପରଦାସୀନ ଝିଅ ବୋହୂମାନଙ୍କୁ ବିକନ୍ତି । କେହି କେହି ଚେରମୂଳ ଜନ୍ତୁନିୟନ୍ତ୍ରଣ ବାଜିକରଣ ବଶୀକରଣ ପାଇଁ ଦେଉଥାଆନ୍ତି । କେବେ କେବେ ସେମାନେ ଦଳଗଡ଼ି କେଳା କେଳୁଣି ନାଚ, ସ୍ୱର ଓ ବାଦ୍ୟଯନ୍ତ୍ର ସାହାଯ୍ୟରେ ଦେଖାଇ ମନୋରଂଜନ କରନ୍ତି । ଖରାଦିନେ ଆସନ୍ତି ବାଉଁଶରାଣୀ । ସେମାନେ ଖୋର୍ଦ୍ଧାଅଡ଼ୁ ଯାଇଥାଆନ୍ତି । ଦୁଇଟି ବାଉଁଶ ପୋତି ତା ମଧ୍ୟରେ ଦଉଡି ଛନ୍ଦାଯାଏ ଅତିକମ୍‌ରେ କୋଡ଼ିଏ ପଚିଶ ହାତ । ଅଳ୍ପ ବୟସର ଝିଅଟିଏ ତା ଉପରେ ନିଜ ଶରୀରର ଭାର ସମତୁଲ କରି ଚାଲେ । ତଳେ ବାଜା ବାଜୁଥାଏ । ସେଇ ଅନୁସାରେ ସେ ଦଉଡି ଉପରେ ଚାଲୁଥାଏ । ଶେଷରେ ତାର ଅଣ୍ଟାରେ ଗୋଟିଏ ପଟି ଲାଗିଥାଏ । ସେଥିରେ ଗୋଟିଏ ଖୋପକୁ ବାଉଁଶ ମୁଣ୍ଡରେ ଥିବା ଖିଲକୁ ଲଗାଇ ସେ ଘିରିଘିରି ହୋଇ କିଛି ବେଳ ଘୁରେ । ଦର୍ଶକମାନେ ଆମୋଦିତ ହୋଇ ଅର୍ଥ ପ୍ରଦାନ କରନ୍ତି । ବିବାହିତ ମହିଳା ମଧ୍ୟ ବେଳେବେଳେ ଏଥିରେ ଭାଗ ନେଉଥାଆନ୍ତି ।

ଏମିତି ବୁଲା ଦଳ ଗାଁରେ ଆସି ମନୋରଂଜନ କରିଥାନ୍ତି ।

ନାଥ ଯୋଗୀ ସଂପ୍ରଦାୟର ଗୁଡ଼ିଏ ଲୋକ ଥାଆନ୍ତି । ସେମାନେ ଅବ୍ରାହ୍ମଣ ମାତ୍ର ଶୁଦ୍ଧକ୍ରିୟା ବ୍ରାହ୍ମଣଭୋଜନ ବେଳେ ସେମାନେ ଖାଆନ୍ତି । ଅଲଗା ବସନ୍ତି । ବର୍ତ୍ତମାନ ସେମାନେ ନାଥ ଶର୍ମା ଭାବରେ ପରିଚିତ । ସେମାନେ କେନ୍ଦରା ଧରି ଗାଁକୁ ଗାଁ ବୁଲି ଗୀତ ଶୁଣାନ୍ତି ବିଶେଷକରି ଘରର ଅପାଠୋଇ ସ୍ତ୍ରୀଲୋକମାନଙ୍କୁ । ସେମାନଙ୍କ ସଂଖ୍ୟା ଅଳ୍ପ ମାତ୍ର ସେମାନେ ପ୍ରାୟ ଗୋଟିଏ ଜାଗାରେ ରହୁଥାନ୍ତି । ବେକରେ ସେମାନେ ରୁଦ୍ରାକ୍ଷ କାଠ, ତୁଳସୀମାଳ ପିନ୍ଧିଥାନ୍ତି । କେନ୍ଦରାରେ ସୁସ୍ୱରରେ ମନବୋଧ ଚଉତିଶା, ଟୀକା ଗୋବିନ୍ଦଚନ୍ଦ୍ର, ଅଖଇ ନାନି ସହିତ ପୁରାଣର କୌଣସି ଆଖ୍ୟାନ ଶୁଣାନ୍ତି । ଲୋକ ସଂସ୍କୃତି ପ୍ରସାରରେ ଏମାନଙ୍କ ଭୂମିକା ପ୍ରଶଂସନୀୟ ଥିଲା । ସାମାନ୍ୟ ପଇସା ବା ଚାଉଳ ନେଇ ସେମାନେ ଦୀର୍ଘ ସମୟ ଗୀତ-ଶୁଣାଉଥାଆନ୍ତି । ଖରାଦିନେ ସ୍ଥାନେ ସ୍ଥାନେ ରାମଲୀଳା ହୁଏ । ମୁଖା ପିନ୍ଧି ରାବଣ ହନୁମାନ ସୂର୍ପଣଖା ଆଦି ଚରିତ୍ର ଅଭିନୟ କରି ଲୋକମାନଙ୍କୁ ଆମୋଦିତ କରନ୍ତି । ଜଗତସିଂହପୁର ସ୍କୁଲରେ ଏହା ଖୁବ ଲୋକପ୍ରିୟ ଥିଲା । ଦଶମୁଖ ରାବଣ ମଞ୍ଚରେ ବସୁଥିଲା, ଅଶୋକ ବନରେ ନାନା ପ୍ରକାର ଫୁଲ ଫଳ ସହିତ ମିଷାନ୍ନ ଝୁଲା ଯାଉଥିଲା ।

ଧାନକୁଟା ଢ଼ିଙ୍କିରେ ହେଉଥିଲା । ହଲର ଓ ଚାଉଳକଳ ଆସିଲାରୁ ଏହା ଉଭେଇ ଗଲାଣି । ଭୋଦୁଅ ଖୁଦକୁଣି ଓଷା ଢ଼ିଙ୍କିଶାଳରେ ହେଉଥିଲା । ଖୁଦୁକୁଣି ମୂର୍ତ୍ତି ନ ହୋଇ ସାରୁ ପତରରେ ବନ୍ଧା, ଫୁଲରେ ସଜା ଏକ ବିଗ୍ରହର ପ୍ରତୀକ୍ ଏଠାରେ ରଖି ଝିଅମାନେ ପୂଜା କରୁଥିଲେ ଓ ସେଠାରେ ଉପଯୋଗ, ମାଳଶ୍ରୀ ଗୀତ ପଢ଼ୁଥିଲେ । ମାସକ ୪/୫ ରବିବାର ଚୂଡ଼ା ମୁଢ଼ି ହୁଡୁମ ଚାଉଳଭଜା ଆଦି ଅଲଗା ଭୋଗ ହେଉଥିଲା । ବିଭିନ୍ନ ଜାତି ପାଦେ ଥିଲେ ଯାହାର ନାମ ମାଡକ୍ସ ସାହେବ୍ ୧୯୦୦ ମସିହା ରିପୋର୍ଟରେ ଲେଖିଛନ୍ତି । ମାତ୍ର ବର୍ତ୍ତମାନ ତାଙ୍କ ଭିତରୁ ଅନେକ ଅଶୁଣା । କେଜାଣି ୨୦୧୦ ଜନଗଣନାରେ ଜାତିଭିତ୍ତିକ ତଥ୍ୟ ମିଳାଗଲେ ଏ ଇତିହାସ ଜଣାଯିବ । ମାଡକ୍ସ ସାହେବ ଜାଗିରିଖାଇ ବା ପାରିଶ୍ରମିକ ନେଇ ଯେଉଁ ବିଭିନ୍ନ ଜାତିର ଗ୍ରାମ ସେବା କାରୀଙ୍କ ନାମ ଲେଖିଛନ୍ତି ସେମାନେ ହେଲେ ଭଣ୍ଡାରି (ନାପିତ), ଧୋବା, ବଢ଼େଇ, କମାର, କୁମ୍ଭାର, ନାୟକ (ଜ୍ୟୋତିଷ) ଅବଧାନ

(ପାଠପଢ଼ା ଓ ନାହାକ), ଘାଟମାଝି (ନାଉରି), ହାଡ଼ି (ମେହେନ୍ତର) ପୁରୋହିତ (କୁଳ ପୁରୋହିତ ଓ ଜମିଦାର ନିଯୁକ୍ତ ଦେଶ ପୁରୋହିତ), ମଢ଼ିଆ ବ୍ରାହ୍ମଣ, ବେଠିଆ ବାଉରି, ଭାଟ, ନାଗରଦା, ବାଜାଦାର, ମହୁରିଆ, ସରାଟି, ଦୁରିଆ, ଭରରଙ୍ଗିଆ, ଗଉଡ (ଗାଁ ଗୋଠିଆ), ବୈଷ୍ଣବ, ଅଧିକାରୀ, ମାଳି ଇତ୍ୟାଦି । ଗ୍ରାମ ସେବାକାରୀଭାବେ ଚଉକିଦାର ପ୍ରତି ପରିବାରରୁ ଦି ଗଉଣି ଧାନ ନ ହେଲେ ସାତଟା କଟରା (ଧାନ କଳେଇ), ଧୋବା ଦୁଇ ଚାରି ଗଉଣି ଧାନ ଦୁଇ କି ଚାରିଅଣା ପରିବାରର ପ୍ରତି ବିବାହିତ ପୁରୁଷଙ୍କ ପାଇଁ ଓ ବାହାଘରରେ ଅଧିକା ପ୍ରାପ୍ୟ, କମାର ଓ ବଢ଼େଇ ହଳପିଛା ୨/୪ ଗଉଣି ଧାନ କୁମ୍ଭାର ପ୍ରତି ପାଞ୍ଚୋଟି ହାଣ୍ଡି ମାଠିଆ (ଏକ ପାଗ) ପାଇଁ ଗଉଣିଏ ଧାନ ଅବଧାନ ଜ୍ୟୋତିଷ ଶିକ୍ଷକ ଓ ଅନ୍ୟମାନେ ଗ୍ରାମବାସୀର ଅବସ୍ଥା ଅନୁସାରେ ପାଉଣା ପାଉଥିଲେ । ସେବାକାରୀମାନେ ଗାଁରେ ରହୁଥିବାରୁ ସେମାନଙ୍କର ସେବା ସବୁ ସମୟରେ ମିଳିଯାଉଥିଲା । ଝିଅଟିଏ ବୟଃପ୍ରାପ୍ତ ହେଲେ ଗାଁରେ ସେଥିପାଇଁ ଜାତିଲୋକଙ୍କୁ ଖାଇବାକୁ ଦିଆଯାଉଥିଲା । ବୋଧହୁଏ ଏହା ବିବାହ ଯୋଗ୍ୟ କନ୍ୟା ଖୋଜିବା ସହଜ କରିବାକୁ ହେଉଥିଲା । ଗୋଟିଏ ଶ୍ରେଣୀର ଲୋକଥିଲେ ତାଙ୍କୁ କହନ୍ତି ଭଲଲୋକ । ସେମାନେ ବର କନ୍ୟାପକ୍ଷ ମଧ୍ୟରେ ଯୋଗାଯୋଗ କରି ଜାତି, ଗୋତ୍ର, କୁଳୀନତା ପାତ୍ରୀର ଯୋଗ୍ୟତା ଶରୀର ରଙ୍ଗ ଆଦି ଅତିରଂଜନ କରି ଶୁଣାଉଥିଲେ । ଆମର ବିବାହ ବେଳେ ମିଥ୍ୟା କହିବା ସମାଜରେ ଚଳନୀୟ ଥିଲା । ଏମାନେ ମଧ୍ୟବିତ୍ତ ଶ୍ରେଣୀରେ ଯୌତୁକର ପରିମାଣ ଓ ଆକାର ଠିକ୍ କରୁଥିଲେ । କନ୍ୟାଦାନ ସହିତ ଗୋଦାନ, ସ୍ୱର୍ଣ୍ଣଦାନ ବସ୍ତ୍ରଦାନ, କାଂସ୍ୟ ଓ ରଜତ ଦାନ ଭୂମିଦାନ ଦକ୍ଷିଣା ସ୍ୱରୂପ ଯାଉଥିଲା । ଏହି ବିବାହପୂର୍ବ କଥାବାର୍ତ୍ତାକୁ ମୌଖିକ ଚୁକ୍ତିବଦ୍ଧ କରିବାକୁ ଏକ ଦେବସ୍ଥାନରେ ନିର୍ବନ୍ଧ ହେଉଥିଲା । ଜାତିଭାଇ କୁଳଶ୍ରେଷ୍ଠମାନେ ଏହା ଅବଗତ ହେଉଥିଲେ । ବାହାଘର ଶୋଭାଯାତ୍ରା ବଡଲୋକ ଘର ହୋଇଥିଲେ ପାଲିଙ୍କି ସବାରି ଘୋଡାହାତୀ ଶଗଡ ଆଦି ସହିତ ବାଜା ବାଣ ଗୋଟିପୁଅ, ଷଣ୍ଢନାଚ ଦ୍ୱାରା ଲୋକ ଦୃଷ୍ଟି ଆକର୍ଷଣ କରୁଥିଲା । ବାହାଘରେ ମହାପ୍ରସାଦ ସେବା ଠାଆପିଢ଼ା ଭୋଜନ ପରେ କନ୍ୟା ବିଦାୟ ପୂର୍ବରୁ କନ୍ୟା ପକ୍ଷର ବାରିକ ବରପିତାଙ୍କୁ ଦିଆଯାଉଥିବା ଯୌତୁକର ଏକ ତାଲିକା ଧରାଇ ଆବଶ୍ୟକ ସ୍ଥଳେ ମାଲ ଚିହ୍ନୋଟ ଓ ହସ୍ତାନ୍ତର କରି

ନିଜ ପାରିଶ୍ରମିକ ପାଉଥିଲେ । ଝିଅର ବାହାଘର ଠିକ୍ ହେଲେ ସେମାନେ କାନ୍ଦଣା ଗୀତ ଶିଖୁଥିଲେ । ବଜାରରେ କାନ୍ଦଣା ବହି ମଧ୍ୟ ମିଳୁଥିଲା । ଏହାକୁ ସୁସ୍ୱର ଓ କରୁଣ କରିବାକୁ ଶିଖାଳି ମଧ୍ୟ ଥିଲେ । ବିଦାୟବେଳା ଏହି ଗୀତବୋଲା ଫଳରେ ଅତି କରୁଣ ହେଉଥିଲା । ଏହାର ମଧ୍ୟ କାରଣ ଥିଲା । ଝିଅ ବାପଘରକୁ ଏହା ପରେ ପୁଅାଣି ହୋଇ କେବଳ ଆସିବାର କଥା । ତାହା ମଧ୍ୟ ଏକ ପ୍ରକାର ବ୍ୟୟବହୁଳ ଉତ୍ସବ । ତେଣୁ ଅଧିକାଂଶ କନ୍ୟାପିତା ଝିଅକୁ ଆଉ ତାଙ୍କ ପରିବାରରେ ଦେଖିବାର ସୁଯୋଗ ପାଇବେ ନାହିଁ ଏହା ଅବଗତ ଥାଇ ଦୁଃଖରେ ଭାଙ୍ଗି ପଡୁଥିଲେ । ଶଶୁରଘରେ ନୂଆ ବୋହୂ ଦେବ ଦର୍ଶନ କରି ପରିବାରର ସାନବଡ ସମସ୍ତଙ୍କୁ ଗୁଡ଼ (ମିଠା) ବାଣ୍ଟୁଥିଲା । ତାର ଆଚରଣ ସମସ୍ତଙ୍କ ପାଇଁ ମଧୁମୟ ହେଉ ଏହା ଜଣାଇ ଦେଉଥିଲା ।

ନାରୀ ସ୍ୱାଧୀନତା ଯୁଗରେ ସେ ସମୟର ସମାଜରେ ସ୍ତ୍ରୀଲୋକମାନଙ୍କ ଅବସ୍ଥା କିପରି ଥିଲା ତାହା ଭଞ୍ଜପ୍ରଦୀପ ଆଶ୍ୱିନ ୧୩୫୦ ସାଲ (୧୯୪୩ ମସିହା)ରେ ପ୍ରକାଶିତ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଏକ ପ୍ରବନ୍ଧରୁ ଜଣାପଡ଼ିବ "ଶତାବ୍ଦୀ କଥା ଦୂରେ ଥାଉ, ୬୦ ବର୍ଷ ତଳେ ଆମ ଭଳି ମଧ୍ୟବିତ୍ତଙ୍କ ପାରିବାରିକ ଆବହାୱା ଯାହା ଥିଲା, ଆଜି ତାହା ନାହିଁ । ସେ ସମୟରେ ଶାଶୁଙ୍କଠାରୁ ବୋହୂଙ୍କର ମାଡ଼ଖାଇବା କଥା ନିତ୍ୟ ଘଟଣା ଥିଲା । ବିଶେଷତଃ ବ୍ରାହ୍ମଣ ଓ କରଣ ପରିବାରର ବଧୂମାନଙ୍କ ଦୁର୍ଦ୍ଦଶା କହିଲେ ସରିବ ନାହିଁ । ଲେଖକ ସ୍ୱୟଂ ୬୦ ବର୍ଷ ତଳେ ଏକାଧିକ ପରିବାରରେ ବୋହୂମାନଙ୍କ ହୀନ ଅବସ୍ଥା ଦେଖିଛି । ବୋହୂ ବେଚାରୀ ଶାଶୁ ଘରେ ପାଦ ଦେବା ମାନେ ଶାଶୂ, ନଣନ୍ଦ, ସାଇମାଇପେ, ସାଇ ପିଲାଏ ସମସ୍ତେ ତା ଉପରେ ଅତ୍ୟାଚାର କରୁଥିଲେ । ରାତି ନ ପାହୁଣୁ ଉଠି ଘରର 'ବାସି ଆଡତି' (ଘରଦ୍ୱାର ଅଗଣା ଓଳାଇବା, ଲିପାପୋଛା କରିବା, ବାସନ ଧୋଇବା ଆଦି) ସାରି ଗ୍ରାମ ପୋଖରୀରେ ଗାଧୋଇ ଘରେ ଆସି ପହଞ୍ଚିବା ବେଳକୁ କୁଆ ବୋବାଇ ନଥିବ । ତାପରେ ଘରକୁ ଆସି ପାଗହାଣ୍ଡି ଧୂଆଧୋଇ କରି, ଚୁଲି ଲିପାପୋଛା କରି, ଚୁଲିରେ କୁହୁଳା ପକାଇ ଶାଶୁଙ୍କ ପ୍ରାତଃଭୋଜନ (ପଖାଳ ଭୋଜନ) ପାଇଁ ଶାଗ ଖରଡ଼ା, ସନ୍ତୁଳା, ବଡ଼ି ଫୁଲା ଆଦି କରିବାକୁ ହେବ । ଶାଶୂଙ୍କ ପାଇଁ ଦାନ୍ତକାଠି ପାଣି ସଜାଇ କରି ରଖିବାକୁ ହେବ । ତା ପରେ ପରିବାରୀୟ ବ୍ୟକ୍ତିମାନଙ୍କର ପୂର୍ବାହ୍ନ ଭୋଜନାର୍ଥେ ରନ୍ଧନ କର୍ମ

କରିବାକୁ ହେବ । ଇତି ମଧ୍ୟରେ ଶଶୁରଙ୍କର ଗାଧୋଇ ଆସିବା ବେଳକୁ ଠାକୁର ଘରର ବାସନକୁସନ ମାଜି, ଠାକୁରଘର ଲିପାପୋଛା କରି ଶଶୁରଙ୍କର ପୂଜାଆହ୍ନିକ ପାଇଁ ଚନ୍ଦନାଦି ଘୋରି ରଖିବାକୁ ହେବ, ଶଶୁରଙ୍କର ମଠାକୁ କୁଞ୍ଚ କରି ସଜାଡ଼ି ରଖିବାକୁ ହେବ । ଶଶୁରଙ୍କ ଭୋଜନ ପାଇଁ 'ଠାଆ' କରିବାକୁ ହେବ, ଶଶୁରଙ୍କ ଆଞ୍ଚୋଇବା ପାଇଁ ଢ଼ାଳ, ଗାମୁଛା, ଦାନ୍ତଖୁଣ୍ଟା ଓ ପାନଖିଲ ସଜାଡ଼ି କରି ଯଥାସ୍ଥାନରେ ରଖିବାକୁ ହେବ ଓ ପୂର୍ବାହ୍ନରେ ପରିବାରର ଅନ୍ୟ ସମସ୍ତ ବ୍ୟକ୍ତିଙ୍କ ଭୋଜନାନ୍ତେ ଯାହା ଖାଦ୍ୟ ବଳିଥିବ, ସେଥିରେ ଉଦର ତୁଷ୍ଟି କରିବାକୁ ହେବ । ଉପର ଓଳି ଶାଶୂଙ୍କର ଓ ନିଜ ଗୃହକୁ ସମାଗତା ସାଇର ମାନ୍ୟା ସ୍ତ୍ରୀଲୋକମାନଙ୍କର ଗୋଡ଼ ଘଷିବାକୁ ହେବ । ପୁଣି ଅପରାହ୍ନରେ ପରିବାରର ରାତ୍ରିଭୋଜନ ପାଇଁ ରନ୍ଧନ କରିବାକୁ ହେବ ଓ ସମସ୍ତେ ଭୋଜନ କରିସାରିଲେ ଯାହା ଖାଦ୍ୟ ବଳିଥିବ ସେଥିରେ ଉଦର ପୂର୍ତ୍ତି କରି ଶାଶୂଙ୍କ ପାଦ ସେବା କରିବାକୁ ହେବ ଓ ଶାଶୂଙ୍କଠାରୁ ଆଦେଶ ନ ମିଳିବା ପର୍ଯ୍ୟନ୍ତ ପାଦମର୍ଦ୍ଦନରୁ ଅବ୍ୟାହତି ପାଇଁ ନିର୍ଜନ ରାତି (ଅନ୍ତତଃ ରାତି ୧୨ଟା ପରେ) ପରିବାରର ଅନ୍ୟ କେହି ଯେଉଁପରି ଏଥିରେ ସୁରାକ୍ ନ ପାଆନ୍ତି, ସେହିପରି ଲୁଚିଛପି ସ୍ୱାମୀଙ୍କ ଶୟନାଗାରକୁ ଯାଇ ଦାମ୍ପତ୍ୟ କର୍ତ୍ତବ୍ୟ ସମାହିତ କରିବାକୁ ହେବ । ବୋହୂ ସିଧା ହୋଇ ଠିଆ ହେବ ନାହିଁ, ମୁହଁରୁ ଓଢ଼ଣା କାଢ଼ିବ ନାହିଁ, ପାଟିକରି କଥା କହିବ ନାହିଁ । 'ଚୁଁ' କରି ବା 'ଠାର' ଦ୍ୱାରା ପରିବାରର ଅନ୍ୟ ବ୍ୟକ୍ତିମାନଙ୍କଠାରେ ମନୋଭାବ ପ୍ରକାଶ କରିବ, ପୁରୁଷ ପୁଅକୁ 'ମାଇନ' କରିବ । ଦିନବେଳେ ଲଘୁଶଙ୍କା ଓ ଗୁରୁଶଙ୍କା ହେଲେ ମଳମୂତ୍ର ବେଗକୁ ରାତି ଅନ୍ଧାର ପର୍ଯ୍ୟନ୍ତ ଅଟକାଇ ରଖିବାକୁ ହେବ । ଏସବୁ ଘର ଭିତରର ଅତ୍ୟାଚାର ଉପରେ ସାଇପଡ଼ିଶା ସ୍ତ୍ରୀଲୋକମାନଙ୍କର ଓ ଅଧିକାଂଶ ସ୍ଥଳରେ ଶାଶୂଙ୍କର କଠୋର ସମାଲୋଚନା ଓ ବାଗ୍‌ବାଣ ସହିବାକୁ ହେବ ଓ କେତେ ଭାଗ୍ୟବତୀ ବୋହୂଙ୍କ ଭାଗ୍ୟରେ ଶାଶୂଙ୍କଠାରୁ ଦିହରେ ମୁଣ୍ଡରେ ମଧ୍ୟ କିଛି ମିଳୁ ଥିଲା । ସସ୍ତ୍ରୀକ ବିଦେଶବାସ ସେହି ସମୟରେ ସମାଜରେ ନିଷିଦ୍ଧ ଥିବାରୁ ସ୍ୱାମୀମାନେ ଅର୍ଜନ କରିବାକୁ ଅଧିକାଂଶ ସମୟ ବିଦେଶରେ ରହୁଥିଲେ, କେବେ କେବେ ଘରକୁ ଆସିଲେ ତାଙ୍କ କାନରେ ସବୁ ଅତ୍ୟାଚାର ପକାଇବାକୁ ବୋହୂମାନେ ସାହସ କରୁନଥିଲେ, କାନରେ ପକାଇଲେ ମଧ୍ୟ ସ୍ୱାମୀମାନେ ତହିଁର

ପ୍ରତିକାର କରୁ ନଥିଲେ ବା କରିବାକୁ ଅସମର୍ଥ ଥିଲେ । ସ୍ୱାମୀଙ୍କ ଆଗେ ଫେରାଦ ହେବା କଥା ଯେବେ ଶାଶୂ ଘୁଣାକ୍ଷରରେ ଜାଣିପାରୁଥିଲେ, ତେବେ ପୁଅମାନେ ବିଦେଶକୁ ଯିବାପରେ ବୋହୂଙ୍କ ଉପରେ କଠୋର ଦଣ୍ଡଭୋଗ ବିଧାନ ହେଉଥିଲା । ବାପଘରୁ ଆସିଥିବା ଭାର ବୋଝରେ କିଛି ତ୍ରୁଟି ଲକ୍ଷିତ ହେଲେ ସେ ତ୍ରୁଟି ପାଇଁ କୋଡ଼ମାଡ଼ ବୋହୂ ଉପରେ ପଡୁଥିଲା । ସେ କାଳର ସମାଜରେ ଶାଶୂମାନଙ୍କର 'ବୋହୂଡୋହୀ' ପଣ ଥିଲା ବିଧି ଓ 'ବୋହୂ ସୁହାଗୀ' ପଣ ଥିଲା ନିପାତନ ।"

ଶଶୁର ବା ଦେଢ଼ଶୁର ସ୍ନାନ ପରେ ତୁଳସୀ ଚଉରାରେ ପାଣିଦେଇ କୋଥଳି ପୂଜା କରୁଥିଲେ । କୋଥଳିରେ କିଛି ନିର୍ମାଲ୍ୟ, ଛୋଟ କାଠ ପାନିଆ ଓ ଦର୍ପଣ, ଟୀକା ଭାଗବତ ବା ସେମିତି କିଛି ସଂକ୍ଷିପ୍ତ ନାମାବଳୀ ଥାଏ । କନ୍ୟାର ଯୌତୁକରେ ମଧ୍ୟ ଏହା ଏକ ଉପକରଣ ଥିଲା । ଶଶୁରଙ୍କ ପୂଜା କୋଥଳି ସଜାଡିବା, ଆସନ ମୁରୁଜ ପକାଇ ଥାପିବା ଓ ଧୋତି କୁଞ୍ଚକରି ଆଣି ରଖିଥିବା ଏକ କର୍ତ୍ତବ୍ୟ ଧରା ଯାଉଥିଲା । ବୋହୁ ବାପଘରୁ ଗୋଟିଏ ଚିତ୍ରିତ କାଠପେଡି ଆଣେ । ତାକୁ ଜଗତ ପେଡି କୁହାଯାଏ । ବୋହୁ କାହାକୁ ଶାଶୁ ଘରେ କଥା କହୁ ନଥିବ । ତାର ଯାହା ଦରକାର ରନ୍ଧାବଢ଼ା ସଜାସଜି ପାଇଁ ତାହା ଏହା ମଧ୍ୟରୁ ମିଳିଥାଏ । କିଛି ଖୁଚୁରା ପଇସା ମଧ୍ୟ ଏଥିରେ ଥାଏ । ଜଣେ ବୟସ୍କା ଧାଈମା ବାପଘରୁ ଆସି କିଛିଦିନ ବା ସପ୍ତାହ ଝିଅ ସହିତ ରହି ତାକୁ ନୂତନ ପରିବାର ଓ ପରିସ୍ଥିତିରେ ଖାପ ଖୁଆଇ ଚଳେଇବା ଶିକ୍ଷାଦେଇ ସମ୍ମାନର ସହିତ ବିଦା ହୋଇ ଯାଆନ୍ତି । ବ୍ୟୟପ୍ରାପ୍ତ ଝିଅମାନେ ଆଶ୍ୱିନ ମାସରେ ପନ୍ଦରଦିନ ପୁଂଚି ଖେଳୁଥିଲେ । ଏହା ସେମାନଙ୍କର ତଳିପେଟ ମାଂସ ଓ ଜରାୟୁ ସୁଦୃଢ଼ କରିବାରେ ସହାୟକ ଥିଲା । ଦଳ ଦଳ ହୋଇ ସେମାନେ ଗୀତ ବୋଲୁଥିଲେ । ଏକ ଦଳ ଅନ୍ୟ ଦଳକୁ ପଦ୍ୟବୋଲି ମୁକାବିଲା କରୁଥିଲେ । ଏହା ସେମାନଙ୍କର ରଚନା କୌଶଳ ଦେଖାଉଥିଲା । ଯଥାର୍ଥରେ ଶରତ ଋତୁରେ -

ରଜନୀରେ କୁମାରୀଏ ମହା ଆନନ୍ଦରେ
ମଣ୍ଡିତ ସୁନୀଳ କେଶ ଶୁଭ୍ର କୁସୁମରେ
ତାରା ବିମଣ୍ଡିତ ନୀଳ ଗଗନକୁ ଚାହିଁ
ହରନ୍ତି ମାନସ ନାନାରଙ୍ଗେ ଗୀତ ଗାଇ ।

ଗାଁରେ ସେତେବେଳେ ଅଧିକାଂଶ ଘର ମାଟିକାନ୍ଥର । କେଉଁଠି କଞ୍ଚା ଇଟା । ସ୍ୱଚ୍ଛଳତାର ପ୍ରତୀକ । ତା ଉପରେ ହୁଏତ ଚୂନ ଲିପା ଯାଇଥାଏ । ଦୋଳ, ରଜ ଦଶରା, ମାଣବସା, ଗୁରୁବାରରେ ସାଦା ମାଟିକାନ୍ଥ ଉପରେ ଗେରୁ ଓ ପିଠୋଉ ଲିପାଯାଇ ତା ଉପରେ ଲକ୍ଷ୍ମୀଙ୍କ ପ୍ରତୀକ ଧାନ ମେଣ୍ଟା, ରାଧାକୃଷ୍ଣ, ଶିବ ପାର୍ବତୀ, ନବକୁଞ୍ଜର ବା ସେମିତି ଚିତ୍ରମାନ କଳାକାରର ରୁଚି ସୂଚାଇ ଦିଏ । ଲୋକକଳା ବଞ୍ଚିରହେ । ଦୋଳ ପୂର୍ଣ୍ଣମୀ ପୂର୍ବର କେତେ ଦିନ ଗୋପାଳ (ଯାଦବ) ମାନଙ୍କର ଉତ୍ସବର ଦିନ ଥାଏ । ସେମାନେ ସିଙ୍ଘାଂ ବଜାଇ ଏହା ଜଣାଇ ଦିଅନ୍ତି । ଲଉଡି କରି ବାଉଁଶ ବାଡିରେ ନିଜ ଖେଳ ଚାତୁରି ଦେଖାନ୍ତି । ଗାଁରେ ବୁଲନ୍ତି । ପୂର୍ଣ୍ଣମୀ ଦିନ ସବୁ ଗୋରୁଗାଈ ଗୋଟିଏ ବଡ ପଡିଆରେ ଏକାଠି ହୁଅନ୍ତି । ଯାହାକୁ ଗୋଠ କୁହାଯାଏ । ଜଣେ ମୁଖ୍ୟ ଗୋପାଳ ଜାଡୁଆ ହୁଏ ସେ ନିର୍ଦ୍ଦେଶ ଦେବା ଅନୁସାରେ ଔଷଧିଯୁକ୍ତ ଜଳ ପ୍ରସ୍ତୁତ କରାଯାଇ ଜନ୍ତୁମାନଙ୍କ ଉପରେ ରୋଗ ପ୍ରତିଷେଧକ ଭାବେ ଛିଞ୍ଚାଯାଇଥାଏ ।

ଗାଁରେ ସାଧାରଣ ସ୍ୱାସ୍ଥ୍ୟ ବ୍ୟବସ୍ଥା ଅସ୍ୱାସ୍ଥ୍ୟକର ଓ ବର୍ତ୍ତମାନ ରୁଚି ଉପଯୋଗୀ ନଥିଲା । ପ୍ରାୟ ସମସ୍ତେ ପାନୀୟ ଜଳ ପୋଖରୀରୁ ଆଣୁଥିଲେ ମଧ୍ୟ ସେଥିରେ ପଶୁମାନେ ସ୍ନାନ କରୁଥିଲେ ଓ ପୋଖରୀ ହୁଡାରେ ମଳତ୍ୟାଗ କରି ସେଠାରେ ଶୌଚ ହେଉଥିଲେ । ଏଥିରେ କୌଣସି ଦୋଷ କେହି ଦେଖୁ ନଥିଲେ । ଶିଶୁ ମୃତ୍ୟୁହାର ଖୁବ୍ ବେଶି ଥିଲା । ବୟସ୍କା ଆତ୍ମୀୟ ପରିବାରର ଧାତ୍ରୀ କାର୍ଯ୍ୟ କରୁଥିଲେ । କ୍ୱଚିତ ଅଭିଜ୍ଞ କେହି ପ୍ରସୂତିଧାତ୍ରୀ ମିଳି ଯାଉଥିଲେ । ପ୍ରସୂତିର ପୁଷ୍ଟିକର ଖାଦ୍ୟ ପ୍ରତି ଧ୍ୟାନ ଦିଆଯାଇ ପାରୁନଥିଲା ଓ କାରଣ ବିଶେଷକରି ଅର୍ଥନୈତିକ ଥିଲା । ଶୀତଦିନେ ଅଲଗା ଶୀତ ଲୁଗା ଅଳ୍ପ ଲୋକଙ୍କର ଥିଲା । ଖୁବ୍ ବେଶୀ ଶୀତ ହେଲେ ପାରି ଶୋଉଥିବା ହେଁସକୁ ଘୋଡି ହେଉଥିଲେ ଯାହାକୁ ଭଦ୍ର ଭାଷାରେ 'ବିଲ କମ୍ବଳ' କୁହାଯାଉଥିଲା । ମାଆମାନେ ଗୋଟିଏ ଗାମୁଛା ବା ଛୋଟଲୁଗା ବେକ ଉପରକୁ ଗଣ୍ଠି ପକାଇ ବାନ୍ଧି ଦେଲେ ତାହା ଶୀତରୁ ରକ୍ଷା କରୁଥିଲା । ଶୀତଦିନେ କାଛୁକୁଣ୍ଡିଆ ଆଦି ଚର୍ମରୋଗ ବେଶି ହେଉଥିଲା । ବରଷାଦିନେ ମେଲେରିଆ ନିମୋନିଆଁ, ଟାଇଫଏଡ ଆଦି ରୋଗ ପ୍ରାଦୁର୍ଭାବ ସହିବାକୁ ହେଉଥିଲା । ନିରାଶ୍ରୟ ମାଂ ଜଗଦୀଶ ରକ୍ଷଃ ଏହା ସ୍ମରଣ କରି ଟୁଣୁଟୁଣୁକିଆ ଔଷଧ କେବେ କେବେ କାମ କରୁଥିଲା । ଦୀର୍ଘଦିନ କାଶ ହୋଇ ରକ୍ତ ପଡିଲେ ରାଜକାଶ

(ଯକ୍ଷ୍ମା) ଧରାଯାଉଥିଲା । ଆୟୁର୍ବେଦିକ ଚିକିତ୍ସା ଫଳପ୍ରଦ ଥିଲେ ମଧ୍ୟ ଏହାର ବ୍ୟୟଭାର ବହନ ସାଧାରଣ ଗୃହସ୍ଥର ଦୁର୍ବହ ଥିଲା । କୁଷ୍ଠ ଥିଲା ବଡରୋଗ । ପୂର୍ବଜନ୍ମ ପାପର, ଗୋଦେବଦ୍ୱିଜ ଅବମାନନାର ଫଳ । ସେମାନଙ୍କୁ ପରିବାରରେ ଜଣ ଗାଁ ବସ୍ତି ମଧ୍ୟରେ ରଖିବା ନିଷିଦ୍ଧ ଥିଲା । ସ୍ୱଚ୍ଛଳ ଗୃହସ୍ଥ ଗାଁ ବାହାରେ ଅଲଗା ଘର କରି ରଖୁଥିଲେ । ନ ହେଲେ ଶ୍ରୀକ୍ଷେତ୍ର ପୁରୁଷୋତ୍ତମର ବଡ ଦାଣ୍ଡ ଆସରା । ଶ୍ରୀ ଲୋକନାଥଙ୍କ ପାଖରେ ବଡ କୃଷ୍ଠାଶ୍ରମ ଥାଏ । ମହାମାରି ଭାବରେ ହଇଜା ଦେଖାଦେଲେ ସ୍ୱାସ୍ଥ୍ୟରକ୍ଷା ନିୟମ ନ ମାନିବାରୁ ଶୀଘ୍ର ମାଡିଯାଏ । ବାଡି ଠାକୁରାଣୀଙ୍କ ପ୍ରକୋପରୁ ରକ୍ଷା ପାଇବାକୁ ତାଙ୍କୁ ଛେନା, ଦୁଧ, କଦଳି ନବାତ ଆଦି ପଣାକରି ଗାଁ ତ୍ରିଛକ ମୁଣ୍ଡରେ ଦିଆଯାଇ ସନ୍ତୁଷ୍ଟ କରାଯାଏ । ବଲୁଆ କୁକୁର ବା ଅମାନିଆଁ କିଶୋର ଏହାର ସଦବ୍ୟବହାର କରନ୍ତି । ଐଶ୍ୱରୀୟ କୃପା ନିମିତ୍ତ ଭାଗବତ ପାଠ କରାଯାଇ ମନର ଦୃଢ଼ତା ସୃଷ୍ଟି ହୁଏ ।

ନଡ଼ିଆ ଏକ ଅର୍ଥକାରୀ ଫସଲ ଥିଲା । ମାତ୍ର ବ୍ରାହ୍ମଣମାନେ ଏହି ଅର୍ଥକାରୀ ଫସଲକୁ ଗୁଆ ଅଦାପରି ସେମାନଙ୍କର ଏକଚାଟିଆ କରି ରଖିଥାଆନ୍ତି । ସମାଜପତିମାନେ ଏ ପରମ୍ପରା ଅମାନ୍ୟ କଲେ କୁଳକ୍ଷୟ ହେବା ଭୟ ଦେଖାନ୍ତି । ତଥାପି କିଛି ଅମାନିଆଁ ଅବ୍ରାହ୍ମଣ ଏହାକୁ ଆଦରି ନେଇ ଥାଆନ୍ତି । ନଡ଼ିଆର ମୂଲ୍ୟ ୧୯୩୦ ମସିହା ବେଳକୁ ଅନ୍ୟ ଜିନିଷ ଦର ପରି ଖୁବ୍ କମ ଥାଏ । ଅଧଲା, ପାହୁଲାରେ ଗୋଟିଏ ନଡିଆ ମିଳୁଥିଲା । ଯେଉଁ କ୍ରିୟାକର୍ମାଣରେ ବେଶି ନଡିଆର ଆବଶ୍ୟକ ଥିଲା ସେଠାରେ ଏହା ବିଶେଷ ଲୋଡା ପଡୁଥିଲା । ତେଣୁ ନଡିଆ ନ ବିକି ତାକୁ ପାତି କରି ଶୁଖାଇ ନଡିଆ ତେଲ ବାହାର କରିବା ଜଣେ ଗୃହସ୍ଥ ପକ୍ଷରେ ଲାଭଜନକ ଥିଲା । ଖୁବ୍ ବଡ ଚାଷୀମାନେ ତେଲି ଘଣାରେ ତେଲ ବାହାର କରୁଥିଲେ । ମରା ନଡିଆ ତେଲ ଚର୍ମରୋଗରେ ଉପକାରୀ ଥିଲା । ନଡିଆ ପାତି ଶୁଖିଲେ ଆମେ ପିଲାଏ ମାଙ୍କଡପରି ସେଥିରୁ ଲୁଚିଛପି ପାତି ନେଇ ଚୋବାଉ । ତେଲ ମରାଦିନ ଘରୁ ଗୋଟିଏ ପାଚିଆରେ ମୁଢ଼ି କି ହୁଡୁମ ଧରି କୋରୁଅ ମିଶାଇ ଖାଇବାକୁ ଛକି ବସିଥାଉ । କାହାଘରେ କୋରୁଅ ମିଳିବ ସାଙ୍ଗମାନେ ଇସ୍କୁଲରେ ଜଣାଇ ଥାଆନ୍ତି । ସେମିତି ପଢ଼ା ସାଙ୍ଗମାନଙ୍କ ଜରିଆରେ ପ୍ରଚାରିତ ହୁଏ 'ଦୁବସା' । ଦିବସ (ସ୍ମରଣ

ଦିବସ)ର ଅପଭ୍ରଂଶ ଶ୍ରାଦ୍ଧ ଦିନ । ପ୍ରତିବର୍ଷ ପିତାମାତାଙ୍କର ବର୍ଷକରେ ଥରେ ଶ୍ରାଦ୍ଧ ପାଳନ କରାଯାଇ ସେମାନଙ୍କୁ ସ୍ମରଣ କରାଯାଉଥିଲା । ବାଳଲୀଳା ସେଥିରେ ଅଂଶ । ତେଣୁ ଆମେ ଖାଇବାର ଆଶା ଧରିଥାଉ । ବର୍ତ୍ତମାନ ଏ ସ୍ମରଣ ଦିବସ ଗୟାଶ୍ରାଦ୍ଧ କରାଯାଇଛି ବାହାନା କରି ବିଦାୟ ଦିଆଯାଇଛି । 'ଶ୍ରଦ୍ଧାୟାଂ ଦୀୟତେ ଇତି ଶ୍ରାଦ୍ଧ' ତେଣୁ ଗୟାଶ୍ରାଦ୍ଧ ପରେ ସ୍ମରଣରେ କୌଣସି ଅନ୍ତରାୟ ନାହିଁ ।

ଗାଁରୁ ବିଦେଶରେ କେହି ରୋଜଗାରିଆ ଥିଲେ ମନିଅର୍ଡର ପଠାନ୍ତି । ସପ୍ତାହକେ ଥରେ ଦୁଆତ କଲମ ସହିତ ପୋଷ୍ଟମ୍ୟାନ ତାଙ୍କର ଝୁଲାବ୍ୟାଗ ଧରି ଆସନ୍ତି । ସେ ମଧ୍ୟ ପୋଷ୍ଟକାର୍ଡ ଲଫାପା ବିକ୍ରି ପାଇ ଆଣିଥାଆନ୍ତି । ଉପଯୁକ୍ତ ଚିହ୍ନୋଟ ପରେ ମନିଅର୍ଡର ଦିଆଯାଏ । ପୋଷ୍ଟମ୍ୟାନ କିଛି ବକ୍‌ସିସ ପାଇବେ ଏହା ସମସ୍ତେ ଜାଣିଥାନ୍ତି । ବେଳେ ବେଳେ ଦେଶ ବିଦେଶଯାଇ କିଛି ଦିନ ଟଙ୍କା ବା ଚିଠିପତ୍ର ପଠାଇ ପରେ ନିରବ ହୋଇ ଯାଆନ୍ତି । ଏ ପରିସ୍ଥିତିରେ ତାଙ୍କର ଠିକଣା ଜଣାଥିବାରୁ ତାଙ୍କ ପାଖକୁ ଗାଁର କେହି ଚାଲାଖ ଲୋକଙ୍କର ପରାମର୍ଶରେ ଲଫାପା ଭିତରେ ଚିଠି ଭରତି କରି ଟିକେଟ ନ ଲଗାଇ ପଠାଇ ଦିଆଯାଏ । ଏହାକୁ ବେରିଂ ପୋଷ୍ଟ କୁହାଯାଏ । ରେଜିଷ୍ଟ୍ରି ଚିଠି ଏମିତି ଅବସ୍ଥାରେ ପଠାଯାଇ ପାରନ୍ତା । ମାତ୍ର ତାହା ବ୍ୟୟବହୁଳ । ଡାକବାଲା, ନିର୍ଦ୍ଦିଷ୍ଟ ଠିକଣାରେ ଲୋକଙ୍କୁ ଖୋଜି ବାହାର କରି ଚିଠି ଦେଇ ଦେୟ ଡାକ ଟିକେଟ ମୂଲ୍ୟର ଦୁଇଗୁଣା ଅସୁଲ କରିଥାନ୍ତି ଓ ସେ ମଧ୍ୟ ଘର ଖବର ଜାଣେ ।

ମାଲି ମକଦ୍ଦମା ଗାଁରେ ଜମିବାଡି ସଂକ୍ରାନ୍ତ ରାଜସ୍ୱ ମକଦ୍ଦମା ବେଶିଥିଲା । ବେଳେବେଳେ ଏହି ଜମିବିବାଦରୁ ଫୌଜଦାରି ମକଦ୍ଦମା ଆରମ୍ଭ ହୋଇ ଦୀର୍ଘଦିନ ଚାଲି ଉଭୟ ପକ୍ଷକୁ ଧ୍ୱଂସ କରୁଥିଲା । ଓକିଲ ମୁକ୍ତ୍ୟାର ଅଳ୍ପ ଥିଲେ ମାତ୍ର ଗାଁରେ ତାଙ୍କର ମୋହରିର ଥିଲେ । ସେମାନେ ସାଧାରଣ ଲୋକଙ୍କୁ ଆଇନ ପରାମର୍ଶ ଦେଉଥିଲେ । ଏହାଛଡ଼ା ଗୋଟିଏ ଗୋଷ୍ଠିଥିଲେ ଯେଉଁମାନେ ଗାଁରୁ ମକଦ୍ଦମା ନେଇ ଓକିଲମାନଙ୍କୁ ଦେଇ ସେମାନଙ୍କଠାରୁ କମିସନ ଆଦାୟ କରୁଥିଲେ । ଲିଗାଲ ପ୍ରାକଟିସନର ଆକ୍ଟ (ଆଇନ ବ୍ୟବସାୟୀ ଆଇନ) ଅନୁସାରେ ଏମାନଙ୍କର ଆଚରଣ ଜନସ୍ୱାର୍ଥ ବିରୋଧୀ ଅନୁଭବ କଲେ ଜିଲ୍ଲା ମାଜିଷ୍ଟ୍ରେଟ ସେମାନଙ୍କୁ ଟାଉଟ ଘୋଷଣା କରି କୋର୍ଟ କଚେରୀରେ ସେମାନଙ୍କ ପ୍ରବେଶ ନିଷେଧ କରୁଥିଲେ । ମୋର

ପିଲାଦିନେ ଆମ ଗାଁରେ ଫୌଜଦାରି ମାମଲା ପ୍ରାୟ ନଥିଲା । ୧୯୩୩/୩୪ ମସିହାରେ ବାଲିସାହି ଗଉଡମାନେ ବାରମ୍ବାର ନାଳିଓ ଗହିରରେ ଆମ ଗାଁ ଲୋକଙ୍କର ଜମିରେ ସେମାନଙ୍କର ଗାଈ ଗୋଠ ଚରାଇ କ୍ଷତି କରାଉଥିବାରୁ ଗ୍ରାମବାସୀମାନେ ସମୂହଭାବରେ ଗୋରୁ ଧରି ସେମାନଙ୍କୁ କାଞ୍ଜିଆ ଗଦାକୁ ନେବା ବେଳ ସେମାନେ ସଶସ୍ତ୍ର ଆକ୍ରମଣ କରି ମାରଧର କରି ଗୋରୁ ଛଡ଼ାଇ ନେଲେ । କାଞ୍ଜିଆ ଗଦା ଆଇନ cattle trestass act ଅନୁସାରେ ଏହା ଏକ ଧର୍ତ୍ତବ୍ୟ ଅପରାଧ ଥିଲା । ବିଶେଷ କ୍ଷତିଗ୍ରସ୍ତ ହୋଇଥିଲେ ମଧ୍ୟ ଗାଁରେ ସମସ୍ତେ ବସି ଆଲୋଚନା କରି କୋଟ କଚେରି ନ ଯାଇ ଶାନ୍ତି କଥାବାର୍ତ୍ତା ଦ୍ୱାରା ସମାଧାନ ଆଣିଥିଲେ । ସେଥିରୁ ତତ୍‌କାଳୀନ ଆଇନ ପ୍ରତି ମର୍ଯ୍ୟାଦା ଓ ଶୃଙ୍ଖଳିତ ଆଚରଣ ପ୍ରମାଣିତ ହୁଏ ।

କାର୍ତ୍ତିକ ମାସରେ ଗାଁରେ ପଞ୍ଚକ ପାଞ୍ଚଦିନ ଶାରଦରାସ, ଗଦାଧରଙ୍କ ପୀଠରେ ପାଳିତ ହେଉଥିଲା । ରାଧାକୃଷ୍ଣଙ୍କୁ ଝୁଲଣରେ ବସାଇ ନାନା ପ୍ରକାର ଶୋଲ ତିଆରି ଫୁଲରେ ସଜାଇ ଶ୍ରୀମଦ ଭାଗବତର ଦଶମସ୍କନ୍ଧ ରାସ ପଞ୍ଚାଧ୍ୟାୟୀ ପଢ଼ା ଯାଉଥିଲା । କେହି ଜଣେ ଏହାର ଅର୍ଥ କରୁଥିଲା ବା ତାତ୍ତ୍ୱିକ ଭାବାର୍ଥ ବୁଝାଉଥିଲା । ଅଧିକାଂଶ ବୁଢ଼ାବୁଢ଼ୀ ଏଥିରେ ଭାଗ ନେଉଥିଲେ । ସ୍କୁଲରେ ପଢୁଥାଉ ଚତୁର୍ଥ ଶ୍ରେଣୀରେ -

ପବିତ୍ର ପ୍ରଭାତ ସମୟେ ନରେ ଭକତିଭରେ
ସ୍ନାନସାରି ମତ୍ତ ପ୍ରଭୁଙ୍କ ନାମ ସଂକୀର୍ତ୍ତନରେ ।

କାର୍ତ୍ତିକ ମାସ ତମାମ ଧର୍ମମାସ ବୋଲି ହରି ସଂକୀର୍ତ୍ତନ କରାଯାଏ । ମାତ୍ର ପଞ୍ଚକ ପାଞ୍ଚଦିନ ଏହା ବଡ ସମାଗମ ହୁଏ । ସେଇ ପଞ୍ଚକରେ ପଡେ ବଡଓଷା, ଆଠଗଡ ମହାଦେବ ପ୍ରଭୁ ଧବଳେଶ୍ୱରଙ୍କର ଓଷା । ଓଷା ଶେଷରେ ଛେନା, ନବାତ, ନଡିଆ, କଦଳି, ଗୋଲମରିଚ, କର୍ପୂର ମିଶାଇ ପଣା କରାଯାଇ ଭୋଗ କରାଯାଏ । ପିଲାମାନଙ୍କୁ ଡାକି ଖାଇବାକୁ ଦିଆଯାଏ ।

ଗଦାଧରଙ୍କ ପାଖରେ ପ୍ରାୟ ଦୈନିକ ଭାଗବତ ପାଠ୍ ହେଉଥାଏ । କେତେ ଲୋକଙ୍କର ଘରେ ମଧ୍ୟ ଭାଗବତ ଗାଦିରେ ରଖାଯାଇ ଦୈନିକ ପୂଜା ସହିତ ପାଠ କରାଯାଉଥାଏ । କରଣ ଖଣ୍ଡାୟତ ସବୁରି ଘରେ ପ୍ରାୟ ଭାଗବତ ଥାଏ । ଅବସ୍ଥା ଭେଦରେ ସଂପୂର୍ଣ୍ଣ ବାରସ୍କନ୍ଧ ନ ଥାଇ କେବଳ ଏକାଦଶ ସ୍କନ୍ଦ ଥାଏ । ଗାଁରେ

ମହାମାରି ମଡକ ପରି ସମୂହ ବିପତ୍ତି ପଡିଲେ ଭାଗବତ ସପ୍ତା କରାଯାଏ । ଏକ ସପ୍ତାହ ବ୍ୟାପୀ ସମଗ୍ର ଭାଗବତ ପାରାୟଣ କରାଯାଏ । ଅଖଣ୍ଡ ପାଠ । କେତେଜଣ ଏଥିପାଇଁ କେବଳ ହବିଷ୍ୟାନ୍ନ ଖାଇ ଶ୍ରୋତା ହୁଅନ୍ତି ଓ ଜଣେ ବ୍ରାହ୍ମଣ ବା ପଣ୍ଡିତ ସାପ୍ତାହିକ ପାଠ ନିମିତ୍ତ ନିଯୁକ୍ତ ହୁଏ । ବିଶ୍ୱାସ ଥାଏ ଏହାଦ୍ୱାରା ଆଧିଭୌତିକ, ଆଧି ଦୈବିକ ବିପତ୍ତି ଦୂର ହୋଇଯାଏ । ନିଷ୍ଠାର ସହିତ ଗ୍ରାମବାସୀ ଏହା ଶୁଣିଥାନ୍ତି ଓ ଏଥିରେ ଭାଗ ନେଇଥାଆନ୍ତି ।

ଗାଁରେ ବରଷକରେ ଥରେ ପାର୍ବତୀଙ୍କ ପାଖରେ ଅଷ୍ଟପ୍ରହରୀ ନାମଯଜ୍ଞ ହୁଏ । ଦିନକ ଆଗରୁ ଅଧିବାସ । ପାହାନ୍ତାରୁ ନାମଯଜ୍ଞ ଆରମ୍ଭ ହୁଏ । ଅଖଣ୍ଡ ନାମ କୀର୍ତ୍ତନ ସେଇ ଦିନ ଓ ରାତି ହୋଇ ଶେଷରେ ପରଦିନ ସକାଳେ ସରେ । ତା ପରେ ସଂକୀର୍ତ୍ତନ ଦଳ ଗାଁର ସାହି ସାହି ବୁଲନ୍ତି । ଦଳ ଦଳ ହୋଇ ୨୪ ଘଣ୍ଟା କୀର୍ତ୍ତନ କରନ୍ତି । ସମୟ ସମୟରେ ଅନ୍ୟ ଗାଁରୁ ନିମନ୍ତ୍ରୀତ ସଂକୀର୍ତ୍ତନ ଦଳ ଆସି ଯୋଗ ଦିଅନ୍ତି । ମାତ୍ର କାହାକୁ କୌଣସି ପାରିଶ୍ରମିକ ଦିଆଯାଏ ନାହିଁ । ନାମ ସଂକୀର୍ତ୍ତନ ସମୟରେ ମଧ୍ୟାହ୍ନ ଓ ସନ୍ଧ୍ୟାରେ ଅନ୍ନ ପ୍ରସାଦ ବିତରଣ ହୁଏ । ମାତ୍ର ମହୋତ୍ସବ ନାମଯଜ୍ଞ ଶେଷକୁ ଥାଏ ଅରୁଆ ଭାତ ଡାଲି ଖଟା । (ଓଉ ବା କରମଙ୍ଗା) ଶାଗ ଓ ଛିରୀ ପ୍ରସାଦରେ ମୁଖ୍ୟ । ଆୟ ଅନୁସାରେ ଏଥିରେ ଅନ୍ୟ କିଛି ଯୋଗ ବିଯୋଗ କରାଯାଏ । ଗାଁର ସବୁ ଲୋକେ ନିଜ ଶକ୍ତି ଅନୁସାରେ ଏଥିପାଇଁ ନଗଦ ବା ଶସ୍ୟ ଆକାରରେ ଚାନ୍ଦା ଦେଇଥାନ୍ତି । ନଡ଼ିଆ ଫସଲ ଅର୍ଥକାରୀ ଥାଏ । ନଡ଼ିଆ ରାଇ ନିଃଶଙ୍ଖୁଡି ପ୍ରସାଦରେ ମୁଖ୍ୟ ଉପକରଣ ଥାଏ । ତାହା ମଧ୍ୟ ଦାନ ସୂତ୍ରେ ଆସିଥାଏ । ନଡ଼ିଆ ବାହୁଙ୍ଗା ଗଛରୁ କଟାଯାଇ ଅସ୍ଥାୟୀ ରନ୍ଧାଘର ମାଳସରବରାହ ଘର ତିଆରି ହୋଇଥାଏ । ଏଥିରେ ଜାତି ବିଚାର ନଥାଏ । ତେବେ ଅନ୍ତ୍ୟଜମାନେ ଅଲଗା ବସନ୍ତି । ନିଜର ପାତ୍ର ବା ପତର ନିଜେ ସଫା କରନ୍ତି ।

## ସାମାଜିକ ବ୍ୟବସ୍ଥା

ଗାଁରେ ସାମାଜିକ ସଂପର୍କ ଏପରି ନିଗୂଢ଼ ଥାଏ ଯେ କେହି ଅଭାବୀ ଥିଲେ ସେ ସୁବିଧା ଅସୁବିଧାରେ ପଡିଶା ଘର ଉପରେ ନିର୍ଭର କରି ଚଳିଯାଏ । ଘରେ ଚାଉଳ ନଥିଲେ ପଡିଶା ଘରୁ ଚାଉଳ ଉଧାର କରି ଆଣି କାମ ଚଳେଇନେଇ ହୁଏ । ଧାନ

ମଧ୍ୟ । ଅନ୍ତ୍ୟଜ ଜାତିରୁ କେହି ଉପାସରେ ରହିଯାଏ ଯଦି ତାକୁ ମୁଲ ନ ମିଳେ । ସେତେବେଳେ ସେ ସବର୍ଣ୍ଣଙ୍କ ଠାରୁ ପଖାଳ ଶାଗ ନେଇ ଚଳେଇ ନିଏ । ଆମ ନିଜ କଥା କହୁଛି । ଆମର ସହଜେ ଅଭାବୀ ଘର । ଜଣେ କୁଣିଆ ହଠାତ୍ ପହଞ୍ଚିଗଲେ । ବାପା ନ ଥାନ୍ତି । ଜେଜେ ମଧ୍ୟ । ମୋ ବୋଉ ଜାଣୁଥାଏ ତାଙ୍କର ଚର୍ଚ୍ଚା ଲୋଡା । ଘରେ ଚୂଡା କେଇ ମୁଠା ଥାଏ । ସେ ତାକୁ ପାଣିରେ ବତୁରାଇ ପଡିଶା ଘରୁ ଗୁଡ ଟିକେ ପାଇଁ ଗଲା । ସେଇଠୁ ନଡିଆ ଫାଳେ ତା ସହିତ ଆଣିଲା । ଆଉ ଜଣେ ପଡୋଶି ଖବର ପାଇ ତାଙ୍କ ଘରେ ଥିବା ବସା ଦହି କିଛି ଆଣି ଦେଲେ । ବୋଉ ତାଳ ପତର ଛାପା ଗୋଟାଏ ପାରି ଦେଲା । ଗୋଟିଏ ଥାଳିରେ ଚୂଡା ଗୁଡ ନଡିଆ କୋରା, ବସା ଦହି, ଲୁଣ ଲଙ୍କା ସଜାଇ ରଖି ମତେ ତାଙ୍କୁ ଡାକିବାକୁ କହିଲା । ମୁଁ ଡାକି ଦେଲି । ସେ ବସିଲେ ଛାପାରେ । ଆନନ୍ଦରେ ଜଳଖିଆ କରି ଆଉ ଦିନେ ଆସିବାକୁ କହି ଗଲେ । ମୁଁତ ଖୁବ୍ ସାନ ଥାଏ । ମୋର ଏ ପର୍ଯ୍ୟନ୍ତ ଏହା ସ୍ମୃତି ପଟରେ ଚାପି ରହିଛି । ସଦଭାବର ମୂଳ ଥିଲା ସମସ୍ତେ ନିଜର ଅଭାବର ସଚେତନ ଥାଇ ଅନ୍ୟର ଅସୁବିଧା ପ୍ରତି ମଧ୍ୟ ଦୃଷ୍ଟି ରଖିଥାଆନ୍ତି । ଗାଁରେ କାହାର ବାହାଘର ହେବ, ଗାଁ ଯାକର ଲୋକେ ସେଥିରେ ସହଯୋଗ କରିବେ । ମଙ୍ଗନ ଦିନ ବାରିକାଣି ତେଲହଳଦି ଆରିଷା ପିଠା ଧରି ଘର ଘର ବୁଲି ଏହି ଶୁଭ ସମ୍ବାଦ ପରିବେଷଣ କରୁଥିଲା। ଥିଲାବାଲା ଘର ହୋଇଥିଲେ ଗାଁର ଅଘରଦୁଆରି ସମସ୍ତଙ୍କୁ ତେଲହଳଦି ପିଠା ଦେଉଥିଲା । ନ ହେଲେ ଅନ୍ତତଃ ନିଜ ସାହିର ସମସ୍ତଙ୍କୁ ଲୋଡୁଥିଲା । ପରଦିନ ସେମାନେ ପହଞ୍ଚି ସମସ୍ତେ ଏକାଠି ବସି ବ୍ୟବସ୍ଥା କରୁଥିଲେ । ବରଯାତ୍ରୀ ଯିବାର ଥିଲେ ସେମାନେ ଅନ୍ୟତ୍ର ଜଣେ ମୁରବିଙ୍କ ନିର୍ଦ୍ଦେଶ ମାନି ବ୍ୟବହାର କରୁଥିଲେ । ଗାଁରେ ଦୁଇପ୍ରକାର ବାହାଘର ଚଳୁଥାଏ । ତୋଳା କନିଆଁ । ପାଲିଙ୍କି ଚଢ଼ା । ତୋଳା କନିଆଁରେ କନ୍ୟା ବାପଘରୁ ଆସି ଶଶୁର ଘରେ ପୁରୋହିତ ଦ୍ୱାରା ବିବାହିତ ହୋଇ ସେଇ ଘରେ ବୋହୁ ହୋଇ ରହେ । ସାଧାରଣତଃ ଏହା ସ୍ୱଚ୍ଛ ଆୟ ବିଶିଷ୍ଟ ପରିବାରରେ ଚଳୁଥାଏ ମାତ୍ର କରଣ ଖଣ୍ଡାୟତ ପରିବାରରେ ପାଲିଙ୍କି ଚଢ଼ା ବାହାଘର ଅବଶ୍ୟ କର୍ତ୍ତବ୍ୟ ଥାଏ । ଗାଁର ବରଯାତ୍ରୀଙ୍କ ସଂଖ୍ୟା ଦୁଇ ପକ୍ଷର ଆର୍ଥିକ ସ୍ୱଚ୍ଛଳତା ଅନୁସାରେ ନିର୍ଣ୍ଣୟ ହୁଏ । ସେମାନ ନିଜ ମୁରବିଙ୍କ ନିର୍ଦ୍ଦେଶ ଅନୁସାରେ ଅନ୍ୟ ଗ୍ରାମରେ ବ୍ୟବହାର

କରନ୍ତି । ବର ପାଲିଙ୍କି ଚଢ଼ି ଯାଏ । ଅନ୍ୟମାନେ ଶଗଡ଼ଗାଡ଼ିରେ ନ ହେଲେ ଚାଲି କରି ଯାଆନ୍ତି । ଫେରିବା ବେଳକୁ ବୋହୂ ବାପଘରୁ ସବାରୀରେ ଆସେ । ପାଲିଙ୍କି ସବାରି ଏଥିପାଇଁ ଭଡାରେ ମିଳୁଥାଏ । ସ୍ୱଛଳ ପରିବାରରେ ଝିଅ ସହିତ ସବାରି ମଧ ଯୌତୁକ ସ୍ୱରୂପ ଆସିଥାଏ । ବରଯାତ୍ରୀମାନଙ୍କ ଚରଚା କନ୍ୟା ପକ୍ଷର ମର୍ଯ୍ୟାଦା କ୍ଷୟବୃଦ୍ଧିରେ ସାହାଯ୍ୟ କରେ । ରାତିରେ ଯାଇ ପରଦିନ ରହି ପ୍ରଥମେ ନିଃଶଙ୍କୁଡି ମହାପ୍ରସାଦ ସେବା ମଧାହ୍ନରେ ଓ ରାତ୍ରିରେ ଠାଆ ପିଢ଼ାରେ। ପିଢ଼ାରେ ବସି ଠାଆ କଲାରୁ ଏମିତି ନାମକରଣ ହୁଏ। ବାହାଘର ସରି ନଥିବାରୁ ଅନ୍ନଭୋଜନ ନିଷେଧ ଥାଏ । ତେଣୁ ନାନା ପ୍ରକାରର ପିଠା ପଣା ଖିରି ତରକାରି ମଧାହ୍ନରେ ପରଶା ଯାଏ । ରାତ୍ରି ଭୋଜନରେ ନିରାମିଷ ଓ ଆମିଷ ଉଭୟର ବ୍ୟବସ୍ଥା ଥାଏ । ମାଂସ ପରଶାଯାଏ ନାହିଁ । ବରଯାତ୍ରୀ ଅସନ୍ତୁଷ୍ଟ ହେଲେ ବ୍ୟକ୍ତିଗତ ଭାବରେ କେହି ରଷ ବା ଅଭଦ୍ରୋଚିତ ଆଚରଣ ଦେଖାଇ ନଥାନ୍ତି । ନିଜର ମୁରବୀ ଏହାର ପ୍ରତିକାର କରନ୍ତି । ଶୃଙ୍ଖଳା ରକ୍ଷା ସହିତ ଏହା ନିନ୍ଦିତ ଆଚରଣର ପ୍ରତିରୋଧକ ଥାଏ । ନିମିତ୍ତଗ୍ରାହୀ ସବୁ ବ୍ୟକ୍ତିଙ୍କର ରନ୍ଧନପାତ୍ର ସତରଞ୍ଜି, ତାରପୁଲିନ ଆସବାବ ପତ୍ର ଆଦି ନଥାଏ । ଯାହା ଘରେ ଥାଏ ସେ ଆନନ୍ଦରେ ଏହା ବ୍ୟବହାର ପାଇଁ ଦେଇଥାଏ । ଯୌତୁକ ଇଚ୍ଛାଧିନ ଥିଲା । କନ୍ୟାପିତା ଆର୍ଥିକ ଅବସ୍ଥା ଦୃଷ୍ଟେ ନାନା ଉପହାର ପ୍ରଦାନ କରି କନ୍ୟା ସହିତ ପଠାଉଥିଲେ ।

ଅଶୌଚ କାମରେ ସେମିତି । ମୃତ୍ୟୁ ସମ୍ବାଦ ପ୍ରଚାରିତ ହେଲେ ଗାଁର ପ୍ରାୟ ସବୁ ବୟସ୍କ ପ୍ରତିଘରୁ ଆସି ସମବେଦନା ଜଣାନ୍ତି । ଶବର ଅନ୍ତ୍ୟେଷ୍ଟିକ୍ରିୟା କରାନ୍ତି । ଶୁଦ୍ଧି ଆଦିର ବ୍ୟବସ୍ଥା ଗୃହକର୍ତ୍ତାର ଆର୍ଥିକ ଅବସ୍ଥା ଅନୁସାରେ କରିଥାଆନ୍ତି । ଏଥିରେ ସମସ୍ତଙ୍କର ସହଯୋଗ ଥାଏ । ପ୍ରାୟ ବୟସ୍କମାନଙ୍କ ପାଇଁ ଅଶୌଚ ବାର ଦିନ ଓ ଅନ୍ୟମାନଙ୍କ ପାଇଁ କୁଳାଚାର ଅନୁସାରେ ପାଳନ କରାଯାଏ । ଗାଁର ବିଭିନ୍ନ ବର୍ଗର ଲୋକଙ୍କ ପାଇଁ ଗାଁର ଦୁଇ ମୁଣ୍ଡରେ ଦୁଇଟି ଶ୍ମଶାନ ଥାଏ । ବୟସ୍କ ଶବ ପୋଡି ଦିଆଯାଏ । ଅନ୍ୟ ଶବ ପୋତି ଦିଆଯାଏ । ଜାଳେଣି କାଠ ପାଇଁ ସଦ୍ୟ ଗଛ କଟାଯାଏ । ଚାକୁଣ୍ଡା ପ୍ରଭୃତି କେତେ ଜାତିର ଗଛର କାଠ ଶୀଘ୍ର ଜଳିବାରେ ସାହାଯ୍ୟ କରେ । ପ୍ରଥମେ କିଛି ଶୁଖିଲା କାଠ ସଂଗ୍ରହ କରି ମୁଖାଗ୍ନି ଦେଲା ପରେ ସେଥିରେ

ଅଗ୍ନି ସଂଯୋଗ କରାଯାଇଥାଏ । ଶୁଦ୍ଧି ଦିନ ପୁଅ ନାତିମାନେ ମୁଣ୍ଡ ନଣ୍ଡା କରନ୍ତି । ଜ୍ଞାତିମାନଙ୍କୁ ଭୋଜନ ଦିଆଯାଏ । ସ୍ମୃତିଗ୍ରନ୍ଥ ଗଦାଧର ପଦ୍ଧତି ବିଧାନ ଅନୁସାରେ ଏ ସବୁ ପାଳିତ ହୁଏ ଓ ବ୍ରାହ୍ମଣ ବ୍ୟତୀତ ଅନ୍ୟମାନଙ୍କୁ ଖୁଆଇବା ନିଜର ଆର୍ଥିକ ସ୍ଥିତି ଉପରେ ନିର୍ଭର କରେ । ପୁରୋହିତମାନେ ଅଶୌଚରେ ଦଶଠାରୁ ବାରଦିନ ପର୍ଯ୍ୟନ୍ତ କର୍ମ କରି ଯଜମାନଠାରୁ ଦକ୍ଷିଣା ନିଅନ୍ତି । ଅର୍ଥ, ଅନ୍ନଦାନ, ବସ୍ତ୍ରଦାନ, ଗୋଦାନ, ଭୂମିଦାନ, ସ୍ୱର୍ଣ୍ଣ ଦାନ, ଶଯ୍ୟାଦାନ ଆଦି ବିଭିନ୍ନ ଆକାରରେ ପାଆନ୍ତି । ମାତ୍ର ସମାଜର ଯେଉଁସବୁ ଆଚାର ବ୍ୟବହାର କର୍ମକର୍ମାଣି ବର୍ଣ୍ଣନା କଲି ପ୍ରତ୍ୟେକରେ ସାମାଜିକ ଶୃଙ୍ଖଳା ଓ ସମବେଦନା ସହିତ ସହଯୋଗ ପାଇ ସଂପୃକ୍ତ ବ୍ୟକ୍ତିବିଶେଷ ନିଜକୁ ନିରାଶ୍ରୟ ମନେ କରୁନଥିଲା । ସେ ଜଣେ ସମାଜର ଜୀବ ଓ ସମାଜ ତାହା ପଛରେ ଅଛି ଏହା ସେ ଏହିସବୁ ଶୁଭ ଅଶୁଭ ଅବସରରେ ଅନୁଭବ କରୁଥିଲା ଯେତେବେଳ ସମୂହ ଭାବରେ ଜାତିଭାଇ ଓ ଅନ୍ୟଗ୍ରାମବାସୀ ତାକୁ ଦମ୍ଭ ଦେଉଥିଲେ ।

ଆମେ ଚତୁର୍ଥ ଶ୍ରେଣୀରେ ଋତୁ ବର୍ଣ୍ଣନା ପଢୁଥିଲୁ, ଆମକୁ ଲାଗୁଥିଲା ଯେପରି କବି ଆମ ଗାଁକୁ ଆସି ଏ ସବୁ ଦେଖିଛନ୍ତି ।

ବର୍ଷାଦିନରେ -

ମୂଷଳଧାରେ ମେଘ ବରଷେ ନୀର<br>
ତେଣୁ ଶୀତଳ ଧରା ତପ୍ତ ଶରୀର ।<br>
ଜଳେ ପୁରାଇ ନଦୀ ବିଲ ପୋଖରୀ<br>
ଶୁଭଇ କୃଷକର ଗୀତ ଲହରୀ ।<br>
ଶ୍ୟାମଳ ଦୂର୍ବାଦଳେ ଶୋଭିତ ମହୀ<br>
ସାଧବ ବୋହୂ ତଥିପରେ ଶୋଭଇ ।<br>
କଦମ୍ବ ନୀଳୋତ୍ପଳ ଚମ୍ପା ମାଳତୀ<br>
ଯୁଇ ଯାଇ ପୁନ୍ନାଗ ପ୍ରଫୁଲ୍ଲଅତି ।

ମୋର ନାତି ନାତୁଣିମାନେ ସାଧବବୋହୂ ଦେଖି ନାହାନ୍ତି । ବୋଧହୁଏ ଗତ ଆଠଦଶ ବର୍ଷ ଧରି ମୁଁ ସେମାନଙ୍କୁ ଦେଖାଇବାକୁ ଆଶା ଦେଇ ନିରାଶ ହୋଇଛି । ଗାଁରେ ମଧ୍ୟ ଆଉ ନୀଳୋତ୍ପଳ ଦେଖା ଯାଉନାହିଁ ।

ସେମିତି ଶରତରେ :
କାଶତଣ୍ଡୀ ଫୁଲେ ମହୀ ଦିଶଇ ଧବଳ
ସରୋବରେ ଫୁଟିଛନ୍ତି କୁମୁଦ କମଳ ।
ସୁନ୍ଦର ମାଳତୀ ଗଙ୍ଗଶିଉଳି ଟଗରେ·
ଧବଳିତ ଉପବନ ଜନମନହରେ ।
ଧାନ୍ୟକ୍ଷେତ୍ରେ ପକ୍ୱଶାଳୀ ଦିଶଇ ସୁନ୍ଦର
ଦରଶନେ ଆନନ୍ଦିତ ମନ କୃଷକର ।
ସୁନୀଳ ଅପରାଜିତା ଫୁଟିଅଛି ବନେ
ବଧୂଲି କୁସୁମ ରଙ୍ଗ ତୋଷଇ ଲୋଚନେ ।

ସେମିତି ହେମନ୍ତରେ -
ପ୍ରଦୋଷେ ଫୁଟଇ ଜହ୍ନିଫୁଲ ଘରେ ଘରେ
ବାଳକେ ତୋଳନ୍ତି ତାହା ମହାଆନନ୍ଦରେ
ଫୁଟିଅଛି ନୀଳ କୁମୁଦ ନୀଳ ନିର୍ମଳ ଜଳେ
ସରୋବର ଦିଶେ ଶୋଭନ ଶୋଭା ବଚନ ବଳେ ।
ପକ୍ୱଶାଳିପୂର୍ଣ୍ଣ କେଦାର ଦେଖି କୃଷକ ଗଣେ
ଗୀତ ଗାଇ ଶସ୍ୟ କାଟନ୍ତି ଅତି ପ୍ରଫୁଲ୍ଲ ମନେ
ଖଳା କରି ଗ୍ରାମବାସୀଏ ଧାନ ଅମଳ କରି
ଗୃହକୁ ନିଅନ୍ତି ଆନନ୍ଦେ ବିଭୁଦୟା ସୁମରି ।

ଖରାଦିନେ ଗାଁ ଭିତର ଦେଇ ଯାଇଥିବା କନ୍ଦରପୁର ମାଛଗାଁ ରାସ୍ତାରେ ପଥିକମାନଙ୍କ ପାଇଁ କାନଗୋଇ ଜମିଦାର ଘର ପଥଶ୍ରମ ଓ ତୃଷ୍ଣା ହରଣ ନିମିତ୍ତ ଅଭଡା ପାଣିର ବ୍ୟବସ୍ଥା କରିଥାନ୍ତି । ପଣାସଂକ୍ରାନ୍ତିରୁ ରଜ ସଂକ୍ରାନ୍ତୀ ଯାଏ ଗୋଟାଏ ବଡ ମାଟିକୁଣ୍ଡରେପାଣି, ଦହି, ଲୁଣ, ଲେମ୍ବୁ, ଟଭା ବା ଟଭା ପତର ବାସ ପାଇଁ ପକାଯାଏ । ତା ମଧ୍ୟରେ ନିର୍ମାଲ୍ୟ ମହାପ୍ରସାଦ ପଡେ ଯେପରି ଜାତିଭେଦ ରହିବ ନାହିଁ ଓ ଏହି ଅଭଡା ପାଣି ପ୍ରତ୍ୟେକ ଲୋକ ନିଃଶଂକୋଚରେ ଗ୍ରହଣ କରିପାରିବ ।

ବାଟୋଇମାନେ ବିଶ୍ରାମ ନେବାକୁ ଜାଗାକୁ ଜାଗା ବଡ ବର ଓସ୍ତ ଗଛମାନ ଥାଏ । ଛାଇରେ ବିଶ୍ରାମ ନେଇ ପୁଣି ସେମାନେ ଚାଲନ୍ତି । ପଦଯାତ୍ରା, ସମସ୍ତଙ୍କର । ଅନ୍ତତଃ ଜଗତସିଂହପୁରରୁ ସବୁଦିନିଆ ମଟରଯାତ୍ରା ସଂଭବ । ସେ ପର୍ଯ୍ୟନ୍ତ ଅନ୍ୟ ଯାନ ପଥିକର ନାହିଁ ।

## ପରିବେଶ :

ଅଳକା ନଦୀ କୂଳ କଣ୍ଡିଆରେ ଖରାଦିନେ ନାନା ଫସଲ ହୋଇ ଏହା ଚିର ସବୁଜ ଥାଏ । ପାଣିବୁହାଯାଏ ନିଜେ ଶ୍ରମ କରି ଟେଣ୍ଡା ଦ୍ୱାରା । ପରିଣତ ବୟସରେ କୂଚିତ ଗାଁକୁ ଗଲେ ମୋର ଅଶି ବରଷ ତଳର ସେଇ ସ୍ମୃତି କେବଳ ସାର ହୁଏ । ଫୁଲଫଳ ହଜିଗଲାଣି । ଜେଉଟ ମନ୍ଦିରରେ ବା ଘରେ ନିମିତ୍ୟ ପର୍ବରେ ଖଟାପାଇଁ ଲୋଡା ପଡୁଥିଲା । ଏହା ମଧ ସ୍ୱାଦିଷ୍ଟ ଓ ରୁଚିକର ଥିଲା । ଏ ଫଳର ନାମ ଏବେ ପିଲାଏ ଗାଁରେ ମଧ ଶୁଣି ନାହାନ୍ତି । ସେମିତି ଜୀବଜନ୍ତୁ କଥା - ପୋଖରୀରେ ମାଛ ଖାଇବାକୁ ଓଧ ଆସୁଥିଲା । ଶାଳିଆପତନି ବେଳେ ବେଳେ ଘରେ ପଶିଲେ ତାର ସୁବାସ ଆମକୁ ଆମୋଦିତ କରୁଥିଲା । ବଜ୍ରକାପ୍ତା ଆମେ ଗାଁରେ ଦେଖିଥିଲୁ । ବିଲୁଆମାନେ ପ୍ରତି ପ୍ରହର ରାତିରେ ବୋବାଇ ଗାଁ ବାଲାଙ୍କୁ ରାତି ସମୟ ଜଣାଇ ଦେଉଥିଲେ । ଗାଁର ପୂର୍ବ ମୁଣ୍ଡରେ କୁଳିଆ ଗାଁକୁ ଲାଗି ବରେହି ଥିଲା । ଏଥିରେ ବୁଦିବୁଦିଆ ଜଙ୍ଗଲ ଥାଏ ବେତକୋଳି କଣ୍ଟେଇ କୋଳି ସେଠାରୁ ମିଳୁଥିଲା । ସେ ବଣରେ ପୁଣି ହେଟା ରହେ ଓ ମଶାଣିରୂପେ ବ୍ୟବହାର ହୁଏ । ଶବ ପୋଡି ବା ନ ପୋତି ପକାଇ ଦେଇ ଆସିଲେ ଏହି ହେଟା ବିଲୁଆ ଓ ଶାଗୁଣାମାନେ ଏହାକୁ ସଫା କରି ଦେଉଥିଲେ । କୁହାଯାଉଛି ୧୯୯୯ ମହାବାତ୍ୟାପରେ ଶାଗୁଣାମାନେ ଦେଖାଯାଉ ନାହାନ୍ତି । ତା ଆଗରୁ ଫୁଲ ଶାଗୁଣା, ମଧ ଦେଖିବାକୁ ମିଳୁ ନଥିଲା । ଶୀତଦିନେ ଆମର ନୂଆ ଶ୍ରେଣୀକୁ ପ୍ରମୋସନ ପରେ ବଡ ଦିନ ଛୁଟି ହୁଏ । ସନ୍ଧ୍ୟାବେଳେ ନାନା ପ୍ରକାରର ଗେଣ୍ଡାଳିଆ ହଂସ ଓ କୁଞ୍ଜପକ୍ଷୀମାନେ ଦେଖୁ । ବନ୍ଧୁକରେ ଶିକାର କରି ବା ଫାଶ ପକାଇ ଧରି ଏହି ପକ୍ଷୀମାନଙ୍କୁ ମାଂସ ପାଇଁ ବିକ୍ରି କରାଯାଏ । ବୋରିକିନା ପୂର୍ବକୁ ଗୋଡା ସରବନ୍ତର ହେନ୍ତାଳ ବଣରେ ବୋଧହୁଏ ସେମାନେ ଯାଇ ବିଶ୍ରାମ ନେଉଥିଲେ । ତାଙ୍କୁ ଗେଣ୍ଡା ପୋକଜୋକ ଆଦି ଖାଦ୍ୟ ପ୍ରଚୁର ମିଳୁଥିଲା । ଗାଁରେ

ବଡ ବଡ ପୋଖରୀ ଥାଏ । ବରେଇି ପାଖରେ ଘାଇ ପୋଖରୀ । ବୋଧହୁଏ ଅଳକା ନଦୀ ସେଠାରେ ଏକଦା ଘାଇ ବସିବା ଫଳରେ ଧାନ ଜମିରେ ଏ ପୋଖରୀ ସୃଷ୍ଟି ହୋଇଥିଲା । କଣିଆଁର ଜଣେ କରଣ କୁଜଙ୍ଗ ରାଜା (ଉପାଧି ଷେଣ୍ଡ)ଙ୍କର ତହସିଲଦାର ଥିଲେ । ତାଙ୍କର ଜମିବାଡିର ବହୁତ କ୍ଷତି ହେଲା । ରାଜା ତାଙ୍କୁ ସାହାଯ୍ୟ କରିବାକୁ ଓ ବନ୍ଧ ବନ୍ଧେଇବାକୁ ଲୋକ ପଠାଇଲେ । ସେମାନେ ଏତେ ସଂଖ୍ୟାରେ ଥିଲେ ଯେ କେଇଟା ଦିନରେ ପୁରାବନ୍ଧ ବାନ୍ଧିଲେ । ତାଙ୍କର ଟୋକେଇ ମାନ ଗୋଟାଏ ଜାଗାରେ ଝାଡ଼ି ଦେଲେ । କିଛି କିଛି ମାଟି ଝଡ଼ି ପଡିଲା । ଗୋଟିଏ କୁଦ ହେଲା । ତାକୁ ଷଣ୍ଢକୁଦ କୁହାଯାଉଥିଲା । ଷଣ୍ଢ ରାଜା କେତେ ଘର କରଣ ଯେଉଁମାନେ ତାଙ୍କ ଅନୁଗତ ଓ କର୍ମଚାରୀ ସେମାନଙ୍କୁ ଏଇଠି ରଖେଇଲେ । କ୍ଷତି ଭରଣା ପାଇଁ ଘର ତୋଳି ଦେଲେ । ଏ ସାହି ନାଁ ସେଇଦିନୁ ଷଣ୍ଢପୁର ହୋଇ ଆସିଛି । ଆମ ପିଲାଦିନେ ଏଇ ଘାଇ ପୋଖରୀର ଆୟତନ ଦଶ ଏକରରୁ ଅଧିକା ଥିଲା । ଏଥିରେ କୁଜିହଂସ ପାତିହଂସ ହଂସରାଳି ଆଦି ଚଢ଼େଇ ଶୀତ ଦିନରେ ପହଁଚୁଥିଲେ । ସେମାନେ ବଣୁଆ ଦଳ ଦେଖି ଅଣ୍ଡା ଦେଉଥିଲେ । ତାକୁ ଆଣି ଲୋକେ ଲୁଚାଇ ଛପାଇ ଖାଉଥିଲେ । ଅଣ୍ଡାର ସେତେବେଳେ ଉଚ୍ଚବର୍ଣ୍ଣ ହିନ୍ଦୁଘରେ ପ୍ରବେଶ ନିଷେଧ ଥିଲା । ପୋଖରୀରେ ନାନା ପ୍ରକାରର ମାଛ ରହୁଥିଲେ । କେହି ସେଠାରେ ଯାଆଁଳ ଛାଡୁ ନଥିଲେ । ବେଳେ ବେଳେ ଥଣ୍ଡିଆ କୁମ୍ଭୀର ମାଛ ଖାଇବାକୁ ଏହି ପୋଖରୀରେ ପଶୁଥିଲେ । ପାଣି କମିଲେ ସେମାନେ ପୁଣି ନଈକୁ ଚାଲି ଯାଉଥିଲେ । ମାଛ ବ୍ୟତୀତ ଗେଣ୍ଡା କୋଚିଆ, ଶାଳମାଛ ମଧ ତାଙ୍କର ଖାଦ୍ୟରେ ବ୍ୟବହାର ହେଉଥିଲା । ଘର ପାଖେ ପୋଖରୀରେ ମଧ ଏହି ଥଣ୍ଡିଆ କୁମ୍ଭୀରମାନେ ଆସି ରହୁଥିଲେ । ଶୀତଦିନେ ସେମାନେ ପୋଖରୀ ହୁଡାରେ ଖରା ପୁଆଇଲେ ଆମେ ପିଲାଏ ତାଙ୍କୁ ଦେଖି ତାଙ୍କ ଉପରକୁ ଟେକା ପକାଇଲେ ସେମାନେ ପାଣିକୁ ପଳାଇ ଯାଉଥିଲେ । ଅଳକା ନଦୀରେ ଅପେକ୍ଷାକୃତ ବଡ କୁମ୍ଭୀର ଥିଲେ । ଜଙ୍ଗଲରେ ବାଘ ନରଖାଦକ ହେବା ପରି ବେଳେ ବେଳେ ଏହି ଦେବୀ ନଦୀର ବଡ କୁମ୍ଭୀରମାନେ ଲୋକଙ୍କୁ ଆକ୍ରମଣ କରୁଥିଲେ । ସ୍ତ୍ରୀ ଲୋକମାନେ ତାଙ୍କ ଲାଞ୍ଜ ଆଘାତରେ ପଡିଗଲେ ସେମାନଙ୍କୁ ଖଣ୍ଡିଆକରି ମଗର ଖାଉଥିଲେ । ସେମାନଙ୍କୁ ଶିକାର କଲେ ସେମାନଙ୍କର ପେଟ

ଭିତରୁ ନାନା ପ୍ରକାର କଂସା ଓ ରୂପାର ଅଳଙ୍କାର ବାହାରେ । ସେମାନେ ଯେ ହିଂସ୍ର ଓ ନରଖାଦକ ଏହା ଦ୍ୱାରା ପ୍ରମାଣିତ ହୁଏ । ଆମ ଗାଁ ଅଳକା ନଦୀରେ ଗୋଟିଏ କୁମ୍ଭୀର ଶିକାର କରିବାକୁ କେହି ଜଣେ ହାକିମ ଆସିଥିବା ମୋର ମନେ ଅଛି । ଏହା ୧୯୩୦ ପୂର୍ବର ଘଟଣା । ସେ ନଦୀକୂଳେ ତାକୁ ଲକ୍ଷ୍ୟ ରଖି ଚାଲିଲେ । ଲୋକେ ଏ ଶିକାର ଦେଖିବାକୁ ବହୁ ସଂଖ୍ୟାରେ ନଦୀର ଦୁଇ କୂଳରେ ଜମା ହୋଇଥାନ୍ତି । ଶେଷରେ ସେ ଗୁଳି କରିବା ଆମେ ଶୁଣିଲୁ ମାତ୍ର କୁମ୍ଭୀର ବୋଧହୁଏ ମଲା ନାହିଁ । ଲୋକ ଗହଳି ଭାଙ୍ଗିଗଲା ।

ଯୁଦ୍ଧୋତ୍ତର କାଳରେ ରାସାୟନିକ ସାରର ପ୍ରୟୋଗ ପୂର୍ବରୁ ଗାଁ ବିଲରେ ବର୍ଷାଦିନେ ନାନା ପ୍ରକାରର ମାଛ ଥିଲେ । ସେମାନେ ମଧ ଜଳ ସ୍ରୋତରେ ପୋଖରୀକୁ ଯାଉଥିଲେ । ଆଶ୍ୱିନ କାର୍ତ୍ତିକ ବେଳକୁ ଜମିରୁ ପାଣି ନିଗିଡି ଯାଏ । ଅନ୍ଧୁଲି, ଖଇଁଚି ଦ୍ୱାରାପାଣି ସ୍ରୋତର ବିପରୀତରେ ଏହି ମାଛ ଚିଙ୍ଗୁଡ଼ି, ଦଣ୍ଡଖିରି, କେରାଣ୍ଡି, ମହୁରାଳି ଆଦି ଧରାଯାନ୍ତି । ଶେଉଳ ମାନ୍ତୁର ମଧ ଧରା ଯାଆନ୍ତି । କଉ ମାଛ ମାଗୁର ମାଛ ଆୟୁର୍ବେଦ କବିରାଜମାନେ ପରାମର୍ଶ ଦେଲେ ରୋଗର ପଥ୍ୟରେ ବ୍ୟବହାର କରାଯାଉଥିଲା । କଉମାଛ ଶୁଖିଲା ଭୂମିରେ ଘୁଷୁରି ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇ ପାରୁଥିଲା । କୁହାଯାଏ ତାଳଗଛକୁ ଏହି କଉମାଛ ଚଢ଼ିଯାଏ । ସେଇ ତାଳଗଛରେ ଚଢ଼େଇ ବସା କରିଥାଏ । ନଡିଆ ଗଛରେ ଗୁଣ୍ଡୁଚିମୂଷା ବସା ବାନ୍ଧେ । ଅନ୍ୟ ଚଢ଼େଇ ମାନେ ମଧ ଅଣ୍ଡା ଦିଅନ୍ତି । ତାଳଗଛରେ ବାୟାଚଢ଼େଇ ବସା ବାନ୍ଧୁଥିଲା । ପବନରେ ତାହା ଦୋହଲୁଥାଏ । ଆମେ ଗୀତ ବୋଲୁ -

ବାୟାର କି ଯାଏ
ବାଆ କଲେ ବସା ଦୋହଲୁଥାଏ ।

ଏବେ ବାୟା ଚଢ଼େଇ ଉଭେଇ ଗଲେଣି, ତାଙ୍କ ବସା ବିଦେଶୀମାନେ ନେଇ ତାଙ୍କ ବୈଠକଖାନା ସଜଉଛନ୍ତି । ଦଶରାବେଳକୁ ପଦ୍ମ ନୀଳକଇଁ, ନାଲିକଇଁ, ଧଳା କଇଁ ଖାଲ ଅଗଭୀର ନାଲାଏକ ପଡିଆ ମାନଙ୍କରେ ଫୁଟିବା ଦେଖାଯାଏ । ଶେଉଳ ମାଛ ତାର ଯାଆଁଳମାନଙ୍କୁ ଏହି ସଫା ପାଣିରେ ଖେଳାଇବା ଆମ୍ଭମାନଙ୍କୁ ଆମୋଦିତ କରେ । ମାଛ ଖାଇବାକୁ ଧଣ୍ଡ ସାପ ଧାନ କିଆରିରେ ରହନ୍ତି । ବେଳେବେଳେ

ସେମାନେ ଖଇଁଚି ବା ଅନ୍ଧୁଲିରେ ଧରାଗଲେ ତାଙ୍କୁ ନ ମାରି ଛାଡି ଦିଆଯାଏ । ବିଷଧର ସର୍ପ ନାଗ ତମ୍ପ ଆଦି ବଣୁଆ ଜାଗାରେ ହୁଙ୍କାମାନଙ୍କରେ ଥାଆନ୍ତି । ସେମାନେ ସାଧାରଣତଃ କାହାର କ୍ଷତି କରନ୍ତି ନାହିଁ । ତଥାପି ସର୍ପାଘାତରେ ମୃତ୍ୟୁକୁ ପ୍ରାୟ ସବୁରି ଡର ଥିଲା । ଚାଳଘରେ ମୂଷା ଖାଇବାକୁ ଢ଼ମଣା ସାପ ବୁଲି ମୂଷାମାନଙ୍କୁ ମାରି ଗୃହସ୍ଥର ଉପକାର କରେ । ପରିବେଶ ସମତୁଲ ରଖେ । ବେଳେବେଳେ ଅତି ଭୋଜନ ହେତୁ ସେ ଭାରସାମ୍ୟ ହରାଇ ଚାଳରୁ ତଳେ ଖସିପଡେ । ରାତି ହୋଇଥିଲେ ହୁଏତ କେହି ଶୋଇବା ଲୋକ ଉପରେ ପଡେ । ମାତ୍ର ସେ ଆରାମରେ ଖସିଯାଏ । ଢ଼ମଣା ବୋଲି ଚିହ୍ନି କେହି ସେମାନଙ୍କୁ ମାରଧର କରନ୍ତି ନାହିଁ । ବିଷର ଚିକିତ୍ସା ପାଇଁ ଔଷଧର ବ୍ୟବହାର ପ୍ରାୟ ନଥାଏ । ସାଧାରଣ ଗୁଣୀ ଗାରେଡି ବା ମହାଦେବଙ୍କ ପାଖରେ ସମର୍ପଣ ପୂର୍ବକ ପାଣି ଢ଼ାଳିବା ଚିକିତ୍ସାର ମୁଖ୍ୟ ଅଙ୍ଗ ଥିଲା । ସେମିତି ପାଗଳା କୁକୁର ବା ବିଲୁଆ କାମୁଡିଲେ ଚିକିତ୍ସା ପାଇଁ ଗୁଣି ଗାରେଡି ଆଶ୍ରୟ ନେବାକୁ ପଡୁଥିଲା । ବାଲିକୁଦା ଜିଲ୍ଲାବୋର୍ଡ ଡାକ୍ତରଖାନାରେ ମଧ (ଆଣ୍ଟିରାବିଟ ଇଞ୍ଜେକସନ୍) ସର୍ପାଘାତ ଔଷଧ ମହଜୁଦ ନଥାଏ । କେବଳ ସହରରେ ଏ ସବୁିଧା ଉପଲବ୍ଧ ଥିଲା । ଫଳରେ ନିଃସହାୟ ମନୁଷ୍ୟ ବୈଦ୍ୟ ଚିକିତ୍ସକ ଅପେକ୍ଷା ଦୈବୀକୃପା ଉପରେ ବେଶି ନିର୍ଭରଶୀଳ ଥିଲା ।

କାର୍ତ୍ତିକ ମାସରେ ବେଶି ଲୋକ ନିରାମିଷ ରହୁଥିଲେ । ମାତ୍ର ବିଲରୁ ନିଗଡା ପାଣିରେ ମାଛ ବେଶି ଧରା ହେଉଥିଲେ । ତାକୁ ଖରାରେ ଶୁଖାଇ ଶୁଖୁଆ କରି ରଖାଯାଉଥିଲା । ସବୁରି ଘରେ ଏହା ପ୍ରାୟ ରଖାଯାଉଥିଲା । ମାଗୁର, ଶେଉଳ, କଉ ଆଦି ଧରି ମାଟି ହାଣ୍ଡି ବା କୁଣ୍ଡରେ ରଖାଯାଉଥିଲା । ଆବଶ୍ୟକ ହେଲେ ବ୍ୟବହାର ପାଇଁ । ସପ୍ତାହରୁ ପନ୍ଦରଦିନ ଯାଏ ଏମିତି ରଖାଯାଉଥିଲା । ରୋହି ଭାକୁର ମାଛ, ସେମିତି ଧରାହେଲେ ତାକୁ ଗାଲିରେ କଣ୍ଟା ଲଗାଇ ପାଣିରେ ବନ୍ଧଣିରୁ ଛାଡି ଦିଆଯାଉଥିଲା । ୨/୪ ଦିନ ଯାଏ ସେ ଏପରି ବ୍ୟବହାର ପାଇଁ ରଖାଯାଉଥିଲା । ଏପରି କରିବାର କାରଣ ଆବଶ୍ୟକ ସମୟରେ ମାଛର କୌଣସି ହାଟ ନଥିଲା । ତେଣୁ ଅତିଥି ଚର୍ଚ୍ଚାରେ ଏହା ସହାୟକ ହେଉଥିଲା । ଗାଁର କିଆବଣରେ କୋକିଶିଆଳି ବିଲୁଆ ଆଦି ରହୁଥିଲେ । କିଆଫୁଲ ଦେବପୂଜାରେ କେତକି ଫୁଲ ଖଇର ବାସ

କରିବାରେ ବ୍ୟବହାର ହେଉଥିଲା । ସୀମା ସରହଦ ଚିହ୍ନଟ ପାଇଁ ଏହି କିଆର ବାଡ ଲମ୍ବ ଓ ପ୍ରଶସ୍ତ ଥାଇ ଜନ୍ତୁମାନଙ୍କୁ ଅଭୟ ଆଶ୍ରୟ ଦେଉଥିଲା । ନେଉଳମାନେ ବସା କରି ରହନ୍ତି । ତାଙ୍କୁ ଛୁଆକୁ ଫାଶ ପକାଇ ଧରିଲେ ଆମେ ଛୁଆମାନେ ଆଣି ପୋଷୁଥିଲୁ । ସେମାନେ ଖାଇବାକୁ ପାଇଲେ ରହିଯାଆନ୍ତି । କେତେ ଲୋକ ସେମାନଙ୍କୁ ଅଫିମ ଟିକେ ଦେଇଦେଲେ ସେମାନେ ଅଭ୍ୟସ୍ତ ହୋଇ ଘର ଛାଡ଼ନ୍ତି ନାହିଁ । ଏହି କିଆବଣରେ ଡାହୁକ, କୁମ୍ଭାଟୁଆ, ନାନା ପ୍ରକାର ବଣଜାତୀୟ ପକ୍ଷୀ ବସା କରି ରହନ୍ତି । ପ୍ରତି ଘରର ଗୋଟିଏ ଛୋଟ ପୋଖରୀ ଗଡ଼ିଆ ଥାଏ । ସ୍ରୋତରେ ମାଛ ଆସି ଏହି ପୋଖରୀରେ ପଶିଯାନ୍ତି । ବଡମାଛ ବ୍ୟତୀତ କେରାଣ୍ଡି ସିଙ୍ଗି ପୋହଳା ଆଦି ମାଛ ଥାଆନ୍ତି । ଆମେ ଇସ୍କୁଲରୁ ଫେରିଲେ ସନ୍ଧ୍ୟାବେଳେ ବନସି ପକାଇ ଧରୁ । ଏହା ଆମୋଦ ଦାୟକ ଥାଏ । ବନଶି କଣ୍ଟାରେ ଜିଆ ବା ବିଗୁଡି ପୋକ ଲଗାଇ ପାଣିରେ ହଲାଇଲେ ମାଛ ଆକୃଷ୍ଟ ହୋଇ ଥୋପ ଢ଼ୋକେ ଓ ଧରାଯାଏ । ପରବର୍ତ୍ତୀ କାଳରେ ବଡ ବଡ ହାକିମ ହୁକୁମାଙ୍କର ଜମିଦାରୀମାନଙ୍କ ପୋଖରୀରେ ବନଶି ପକା ଦେଖି ଆମେ ଜାଣିଲୁ ଏହା ବଡମାନଙ୍କୁ ମଧ ଆନନ୍ଦ ଓ ଖାଦ୍ୟ ଯୋଗାଇଥାଏ । ଏବେ ଏ ସବୁ ଗାଁରେ ସପନ ହେଲାଣି । ପରିବେଶ ବଦଳି ଯାଇଛି ଆମରି ଦୋଷରୁ । ନାନା ପ୍ରକାରର ଗଛ ଲଟା ଫଳ ଆଜିକାଲି ସଂପୂର୍ଣ୍ଣ ଲୋପ ପାଇଗଲାଣି । ପ୍ରକୃତିର ଭାରସାମ୍ୟ ହଜିଯାଇଛି, ତାର ଫଳ ଆମକୁ ଭୋଗିବାକୁ ପଡ଼ିବ ।

ଅଶି ବରଷ ତଳର କଣିଆଁ ଗାଁ ମୁଁ ବର୍ଣ୍ଣନା କଲି । ମୋର ନାତି କି ଅଣନାତୁଣି ଏହାକୁ ଦେଖିବାକୁ ଚାହିଁଲେ ଏହା ଯେ ଏକ ସ୍ମୃତି ମାତ୍ର ଏହା କହି ସେମାନଙ୍କୁ ନିବୃତ୍ତ କରାଉଛି । ଜର ହେଲେ ଡାକ୍ତରି ଔଷଧ ନ ଥାଏ । କବିରାଜ ନ ହେଲେ ଗାଁର କେହି ମୁରବି ପାଚନ (ଆମେ କହୁ ପାଞ୍ଚଣ)ର ବ୍ୟବସ୍ଥା କରୁଥିଲେ । ଆୟୁର୍ବେଦ ଅନୁସାରେ ଶରୀରରେ ବାତ, ପିତ୍ତ, କଫ ସମତୁଲ ରହିବା କଥା । ଅସମତୁଲ ଗୋଟିଏ ହେଲେ ରୋଗ ଆସେ । ଏହା ନାଡ଼ିର ଗତିରୁ ନିର୍ଣ୍ଣୟ କରାଯାଏ । ଏହା ପଞ୍ଚତ୍ରିକଟୁ (ନିମ୍ବ, ଗୁଳଚି, ବାସଙ୍ଗ, ପୋଟଳପତ୍ର, କଣ୍ଟାମାରିଚ) ନ ହେଲେ ପଞ୍ଚକଷାୟର ସମଷ୍ଟି (ଜାମୁ, ଶିମଳି, ବାଡିଅଂଳା, ବଉଳ ବରକୋଳି ଛେଲି) ନ

ହେଲେ ପଞ୍ଚ ନିମ୍ବ (ନିମ୍ବଗଛର ମୂଳ, ଛେଲି, ପତ୍ର, ପୁଷ୍ପ ଓ ଫଳ) । ରୋଗ ନିରୂପଣକରି ବୈଦ୍ୟ ଏ ସବୁ ସିଝାଇ ଏହାର ଶୀତଳ କ୍ୱାଥ କରି ରୋଗୀକୁ ଖୁଆଇବାର ବ୍ୟବସ୍ଥା କରୁଥିଲେ । ଏହା କାମଦେଉଥିଲା । ଏ ସବୁ ନିଜଘର ବାଡି ବା ପଡୋଶି ବାଡିରୁ ମିଳୁଥିଲା । ପଞ୍ଚବଟ ହେଉଛି, ଅଶୋକ, ବେଲ, ବଟ, ଅଶ୍ୱତ୍ଥ ଓ ଅଁଳା । ଗାଁରେ ଅନ୍ତତଃ ତିନିଚାରି ଜାଗାରେ ଏ ପଞ୍ଚବଟୀ ଦେଖିବାକୁ ମିଳୁଥିଲା । ସେମିତି ପଞ୍ଚଶସ୍ୟ (ଧାନ, ମୁଗ, ବିରି, ଯବ, ତିଳ) ସବୁ ଗୃହସ୍ଥ ଘରେ ଥିଲା । ପୂଜା ବ୍ରତରେ ପଞ୍ଚ ପଲ୍ଲବ (ବର, ଓସ୍ତ, ଆମ୍ବ, ଯଜ୍ଞଡିମ୍ବିରି ଓ ପଲାଶ (ପ୍ଲକ୍ଷ)) ଦରକାର ହେଲେ ସେଇ ଗାଁରେ ମିଳିଯାଉଥିଲା । ପ୍ରତି ଗୃହସ୍ଥ ବିଭିନ୍ନ ବୃକ୍ଷଲତା ଉଦଭିଦ ସଂରକ୍ଷଣ ବିଷୟରେ ସଚେତନ ଥିଲେ । ତୁଳସୀ ଅତି ପବିତ୍ର ବୃକ୍ଷ । ତୁଳସୀ ଚଉରାରେ ଥିଲେ ଗୃହସ୍ଥ ଦୈନିକ ସ୍ନାନ ପରେ ଏଥିରେ ପାଣି ଦେଉଥିଲେ । ଶାଳଗ୍ରାମ ଶିରରେ ଏହା ଦେଖିବାକୁ ମିଳୁଥିଲା । ତୁଳସୀ (ବୃନ୍ଦାବତୀ) ନିଜ ସ୍ୱାମୀ ଜଳନ୍ଧରର ମୃତ୍ୟୁ ପରେ ବିଷ୍ଣୁଙ୍କୁ ଅଭିଶାପ ଦେଲେ । କପଟରେ ତାର ସତୀତ୍ୱ ନଷ୍ଟ କରି ତାର ସ୍ୱାମୀକୁ ଯୁଦ୍ଧରେ ହତ୍ୟା କରିଥିବାରୁ ସେ ଶାପ ଦେଲା ଶାଳଗ୍ରାମ ରୂପେ ବିଷ୍ଣୁ ପୂଜା ପାଇଲେ ସେ ତାଙ୍କ ଶିରରେ ପୂଜା ପାଇବ । ବିଷ୍ଣୁ ତୁଳସୀକୁ ସ୍ୱାମୀ ଚିତାରେ ସହଗାମୀ ହେବାକୁ ନିବର୍ତ୍ତାଇବାକୁ ଅକ୍ଷମ ହେଲେ । ତେଣୁ ତାର ଚିତାଭସ୍ମରୁ ଚାରୋଟି ପବିତ୍ର ବୃକ୍ଷ ତୁଳସୀ, ଧାତ୍ରୀ (ଅଁଳା), ପଳାଶ ଓ ଅଶ୍ୱତ୍ଥ ଜନ୍ମ ହେବାର ପ୍ରତିଶ୍ରୁତି ଦେଲେ । ତେଣୁ ତୁଳସୀ ଜଳନ୍ଧର ପତ୍ନୀ ବୃନ୍ଦାଙ୍କ ରୂପାନ୍ତର ମାତ୍ର । ଏହି ପବିତ୍ର ବୃକ୍ଷର ଜନ୍ମ ବିଭିନ୍ନ ଭାବରେ ପଦ୍ମପୁରାଣ ବ୍ରହ୍ମବୈବର୍ତ୍ତପୁରାଣ ଆଦିରେ ଚିତ୍ରିତ । ଆୟୁର୍ବେଦ ଓ ଆଧ୍ୟାତ୍ମିକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ କାର୍ତ୍ତିକ ଶୁକ୍ଳପକ୍ଷ ନବମୀଦିନ ଶ୍ରୀ ବିଷ୍ଣୁଙ୍କର ପ୍ରତୀକ ଅଁଳା ବୃକ୍ଷର ସେମିତି ପୂଜା କରାଯାଉଥିଲା ।

ଓଷା ବ୍ରତରେ ପଞ୍ଚଫଳ ଲୋଡା ପଡୁଥିଲା । ଏ ଗୁଡିକ ହରିଡା, ବାହାଡା, ଅଁଳା, ଗୁଆ ଓ ଜାଇଫଳ । ଜାଇଫଳ ନ ମିଳିଲେ ବିକଳ୍ପ ବ୍ୟବସ୍ଥା ଥାଏ । ଔଷଧୀୟ ଗୁଣ ଯୋଗୁ ବୃକ୍ଷମାନଙ୍କର ସୁରକ୍ଷା ମିଳୁଥିଲା । ବଡ ବଡ ବର ଓସ୍ତଗଛ ଏବେ ଦେଖିବାକୁ ମିଳୁନାହିଁ । ଏଥିପାଇଁ କେବଳ ମହାବାତ୍ୟାକୁ ଦାୟୀ କଲେ ହେବ ନାହିଁ । ଯେତେ ଇଟାଭାଟି ପକ୍କାଘର ତିଆରି ପାଇଁ ଜଳୁଛି ତାର କାଠ ପ୍ରାୟ ଏହି ବିରାଟ

ପୁରାତନ ଗଛମାନଙ୍କରୁ ଆସୁଛି । ବର ଓସ୍ତ ଗଛର ବିବାହ ଏକ ପୁଣ୍ୟ କର୍ମରୂପେ ବିବେଚିତ ହେଉଥିଲା । ବିଭିନ୍ନ ବର୍ଣ୍ଣ ବା ଜାତି ମଧ୍ୟରେ ବିବାହ ନିଷେଧ ଥାଏ ମାତ୍ର ସେମାନେ ଏହିପରି ବୃକ୍ଷର ବିବାହ ପରେ ନିଜକୁ ସମୁଦି ବୋଲି ପରିଚୟ ଦେଉଥିଲେ । ସାମାଜିକ ସଂପର୍କ ରଖୁଥିଲେ । ବୃକ୍ଷର ପୁରୁଷାନୁକ୍ରମେ ସୁରକ୍ଷା ମଧ୍ୟ ଦେଉଥିଲେ । ବୃକ୍ଷରୋପଣ ପରେ ସାମାଜିକ ସ୍ତରରେ ଉତ୍ସବ ସାଧାରଣ ବିବାହ ପରି ଭୋଜିଭାତରେ ଛିଣ୍ଡୁଥିଲା । ଏ ପ୍ରଥା ଲୋପ ସଙ୍ଗେ ବୃକ୍ଷ ସୁରକ୍ଷା ବିଷୟ ବର୍ତ୍ତମାନ ଏତେ ଆବଶ୍ୟକ ହେଉଛି ଯେ କେହି ଜଣେ ଗାଁରେ ନିଜ ଜମି ହେଉ ବା ସର୍ବସାଧାରଣ ସ୍ଥାନରେ ହେଉ ଗୋଟିଏ ଔଷଧୀୟ ଉଦ୍ୟାନ କରି ଏହାର ସୁରକ୍ଷା ଦେଲେ ଅର୍ଥ ଉପାର୍ଜନ କରାଯାଇ ପାରିବ । ଏହି ଔଷଧିର ବ୍ୟବହାର ଏଲୋପାଥିକ ଔଷଧର ପାର୍ଶ୍ୱକ୍ରିୟାରୁ ମଧ୍ୟ ତ୍ରାହି ଦେବ ।

ଗାଁରେ ସାଧାରଣ ଫଳଗଛର ଅଭାବ ଏବେ ଜଣାଯାଉଛି । ଆମେ ୪ଟା ବେଳେ ଇସ୍କୁଲରୁ ଫେରି ପଖାଳ କି କଣ ଜଳଖିଆ ଖାଇବାପରେ ବାଗୁଡି ବୋହୁଚୋରି ଖେଳୁ । ବଳଗଣ୍ଡିରେ, ବରଗଛରେ ଡାଳ ମାଙ୍କୁଡି ଖେଳୁ । ଡାଳକୁ ଯୋଡା କରି ନାଚୁ, ପାଖରେ ଜାମୁକୋଳିଗଛ, ପିଜୁଳିଗଛ, ଆମ୍ବଗଛ ରାସ୍ତା କଡରେ ଥାଏ । ସେଥିରୁ ଝଡେଇ, ନ ହେଲେ ଗଛରେ ଚଢ଼ି ଫଳ ଖାଉ । ଖାଲି ରାସ୍ତାଧାର ନୁହଁ ବଡ ବଡ ଢ଼ିଅ ଖାଲି ବାଡିରେ ଏମିତି ଗଛ ଚଢ଼ା ଫଳଖିଆ ଆମର ନିୟମିତ ହୁଏ । ଆତ, ନେଉଳ୍ବା, (ରାମଫଳ, ସୀତାଫଳ) ଘରବାଡିରେ ଥାଏ । କ୍ୱଚିତ ବିକ୍ରି ପାଇଁ ଯାଏ । ଆମର ପୁଷ୍ଟିହୀନତା ବୋଧହୁଏ ଏହା ଦୂର କରୁଥିଲା । ଖାଦ୍ୟର ପୌଷ୍ଟିକତା କଥାରୁ ମନେ ପଡୁଛି ଆମେ କଣ ଖାଇଥିଲୁ ? ଦୁଧ ଘିଅ ସାଧାରଣ ମଣିଷ ଜଣେ ପାଉ ନଥିଲା । ବଗଡା ନାଲି ଚାଉଳ ଭାତ ସେ କେମିତି ମିଠା ଲାଗୁଥିଲା । ପଚିଶ ବର୍ଷ ବୟସରେ ସମ୍ବଲପୁର ଯିବା ପର୍ଯ୍ୟନ୍ତ ଚାଉଳ ଏତେ ସଫା ଓ ଏତେ ସରୁ ହୋଇପାରେ ମତେ ଜଣା ନଥିଲା । ଡାଲି ମୁଗ ଛଡା କୋଳଥ, ବିରି ଥିଲା । ତାହା ପୁଣି କ୍ୱଚିତ୍ ହେଉଥିଲା । ପରିବା କେହି କିଣୁ ନଥିଲେ । ଘରବାରିରେ ବାଇଗଣ, ଭେଣ୍ଡି, କଖାରୁ ହେଉଥିଲା । ବରଷା ଦିନେ ସବୁ ଚାଳଘର ପିଢ଼ାରେ ବୋଇତି କଖାରୁ ପାଣି କଖାରୁ, ଲାଉ ଲଟେଉଥିଲା । କଖାରୁ ଶାଗ ଫୁଲ ଡଙ୍କ ଖିଆଯାଉଥିଲା । କଖାରୁ ପାଚି

ହଳଦିଆ ଦେଖା ଗଲେ ଗଛ ମରିଗଲେ ତାହା ଆଣି ଭବିଷ୍ୟତ ବ୍ୟବହାର ପାଇଁ ସାଇତି ରଖାଯାଉଥିଲା । କଞ୍ଚା କଖାରୁ ବରଷାଦିନେ ତରକାରି ହେଉଥିଲା । ସେମିତି ପାଣିକଖାରୁ ରାଇ ହେଉଥିଲା । ଆମ୍ବିଳ ହେଉଥିଲା । ଗଛ ମରିଗଲେ ପିଢ଼ାରୁ ଧଳା କଖାରୁ ବାହାର କରାଯାଇ ଭବିଷ୍ୟତ ବ୍ୟବହାର ପାଇଁ ରଖାଯିବା ସହିତ କିଛି ବଡ଼ି କରାଯିବାରେ ଲାଗୁଥିଲା । ବିରିରେ କଖାରୁବଡ଼ି ମଞ୍ଜିବଡ଼ି, ଆଖୁବଡ଼ି ଆଦି ନାନା ପ୍ରକାର ବଡ଼ି ତରକାରିର ଅଭାବ ପୁରଣ ପାଇଁ ରଖାଯାଉଥିଲା । ସେମିତି ଲାଉ । ଲାଉ ଫଳ ବେଶି ରାଇ ହେଉଥିଲା । ସ୍ୱାମୀ ରାମଦେବ ଏହାର ରସର ଉପାଦେୟତା ବୁଝାଇବା ପର୍ଯ୍ୟନ୍ତ କେହି ଏହି ରସର ବ୍ୟବହାର ଜାଣିନଥିଲେ । ଏହା ତେଣୁ ଅପେକ୍ଷାକୃତ ଶସ୍ତା ଥିଲା । କଲରା ଜହ୍ନି, କାକୁଡ଼ି ବାଡରେ ଲଟଉ ଥିଲା । ନ ହେଲେ ମଞ୍ଚା କରି ଏହା ଅମଳ ହେଉଥିଲା । କାକୁଡ଼ି କଞ୍ଚାଖିଆ ଫଳ ଥିଲା । ଗଛରୁ ଛିଣ୍ଡାଇ କରି କାକୁଡ଼ିର ସୁଆଦ ଲୁଣ କଞ୍ଚାଲଙ୍କା ଦେଇ ସାଙ୍ଗମାନଙ୍କ ସହିତ ବର୍ଷାଦିନେ କି ଦୋଳଛୁଟିରେ ସ୍କୁଲରେ କି ଗାଁରେ ଖାଇବାର ମଜା ଆମ ନାତିମାନେ ନାନା ପ୍ରକାର ପରିବାର ସମ୍ମିଶ୍ରଣ ସାଲାଡ୍‌ରେ କୁଆଡୁ ପାଇବେ । ପୁଣି ସେ କାକୁଡ଼ି ହେଉ କି ଗାଜର, ବିଟ ହେଉ ଏତେ ବୁଢ଼ା ନିରସ ଯେ ତାହା ଖାଉଟି ପାଖରେ ପହଞ୍ଚିବା ବେଳକୁ ସ୍ୱାଦହୀନ ହୋଇ ଯାଉଛି । ସେମିତି ଖରାଦିନେ ଶାଗ । ଅନେକ ପ୍ରକାରର ଶାଗ କବିରାଜମାନେ ଔଷଧ ଭାବରେ ବତାଉଥିଲେ, ଯେମିତି ବଥୁଆ-ପରିଶ୍ରା ଅନିୟମିତତାରେ, ସୁନୁସୁନିଆ-ନିଦ୍ରାହୀନତାରେ, ପୋଦିନା- ଅରୁଚି ଓ ଅଜୀର୍ଣ୍ଣରେ, ସଜନା ଶାଗ ଓ ଛୁଇଁ-ରକ୍ତଚାପରେ । ହିଡିମିଚି, କଲରା, ପୋଇ, ପୋଟଳ, ପୁରୁଣି ଶାଗ, ପିତାଶାଗ, ମଦରଙ୍ଗା, ମୋଟି, କଣ୍ଟାନେଉଟିଆ, କଳମ, ଗଇଣ, ପିତାଗହମା ଆଦି ସହଜରେ ଉପଲବ୍ଧଥାଇ ଆମର ପୁଷ୍ଟି ସାଧକ ଥିଲା । କାର୍ତ୍ତିକ ମାସରେ ଅଗସ୍ତି ଶାଗର ବ୍ୟବହାର ବହୁତ ଥିଲା । ଫୁଲ ଓ ଶାଗ ହବିଷ୍ୟାଳିମାନେ ଶ୍ରଦ୍ଧାର ସହିତ ଖାଉଥିଲେ । ଏ ସବୁ କୁଆଡେ ଚାଲିଗଲା । ସେତେବେଳେ ମଧ୍ୟ ଆମ ଗାଁରେ ମାଙ୍କଡ ଥିଲେ । ୧୯୪୫ରେ ଅଧିକ ଖାଦ୍ୟ ଉତ୍ପାଦନ ଯୋଜନା ଆରମ୍ଭ ହେବା ସମୟରେ କେତେ ଶିକାରୀ ଲଗାଇ ମରାଯାଇଥିଲେ । କେନ୍ଦୁଝରଆଡୁ ମାଙ୍କଡିଆଜାତିର ଲୋକ ଆସି ସେମାନଙ୍କୁ ଫାଶରେ ଧରି ମାରି ଖାଉଥିଲେ । ମାଂସ ଶୁଖାଇ ରଖୁଥିଲେ ।

ତେବେ ସେଇ ମାଙ୍କଡମାନେ ଗୋଟାଏ ଗାଁରୁ ଅନ୍ୟ ଗାଁକୁ ସହଜରେ ଯାଇ ପାରୁଥିଲେ । ତେଣୁ ସେମାନଙ୍କର ସଂଖ୍ୟା ତୁଳନାରେ ଖାଦ୍ୟ ପ୍ରଚୁର ଥିଲା ଓ କୌଣସି ନିର୍ଦ୍ଦିଷ୍ଟ ଗ୍ରାମର ସେମାନେ ବିଶେଷ କ୍ଷତି ଘଟାଉ ନଥିଲେ । ସତୁରି ଅଶି ବରଷ ପରେ ଏ ସବୁ ଖାଦ୍ୟର ରୁଚି ବଦଳିଛି । ଶାଗ ପରିବା ମଧ ଅନାହୃତ ଭାବେ ଲୋପ ହେବାକୁ ବସିଲାଣି । ମୋର ଅଭିଜ୍ଞତା ୩ୟ ପୁରୁଷର ବିଶ୍ୱାସ ଯୋଗ୍ୟ ହେଉନାହିଁ ।

୧୯୩୦ ବେଳେ ଲେଖକ ଶୁଣେ ଯାତ୍ରାରେ ଦୁଆରି ବାହାରି ବୈଷ୍ଣବ ପାଣିଙ୍କ ଗୀତ ବୋଲେ -

କିଏ ଶୁଣିବ ହୋ ଆମେ ପାଠ ପଢ଼ି ହେଲୁ ନାଶ,
ସମସ୍ତେ କାନରେ କଲମ ଖୋସିଲେ ବିଲବାଡି ହେଲା ଘାସ ।

ସେତେବେଳଠାରୁ ଏବେ ପାଠପଢୁଆଙ୍କ ସଂଖ୍ୟା ବହୁ ଗୁଣ ବଢ଼ିଛି । ହେଲେ ଶ୍ରମର ମର୍ଯ୍ୟାଦା ହଜି ଯାଇଛି । ଲେଖକ ଦେଖିଛି ଗାଁର ବଡ ଜମିଦାର ଦାମୋଦର କାନୁନଗୋ ପ୍ରତିଦିନ ନଦୀକୁ ଗୋଟିଏ ବାଙ୍କୁଲି ନଗି ଧରି ଯାଆନ୍ତି । କେଉଁଠି ବିଲାତି ଦଳ ଟିକେ ଆଖିରେ ପଡିଲେ ବାଙ୍କୁଲି ନଗିରେ ଟାଣିଆଣି କୂଳରେ ଶୁଖିବାକୁ ରଖନ୍ତି । ପରେ ପୋଡି ଦିଅନ୍ତି । କାରଣ ଜିଲାବୋର୍ଡ ଆଇନ ଅନୁସାରେ ଜଳାଶୟରେ ବିଲାତି ଦଳ ଦେଖାଗଲେ ମାଲିକଙ୍କୁ ହାକିମଙ୍କ ଆଖିରେ ପଡିଲେ ସାଙ୍ଗେ ସାଙ୍ଗେ ଜୋରିମାନା । ଏବେ ସମସ୍ତେ ଶ୍ରମବିମୁଖ, ନିଜ ବାଡି ବଗିଚାରେ ଇଂରେଜି କିଚନ୍ ଗାର୍ଡେନରେ ମଧ କୋଡି କି ଖୁରୁପି ଧରିବା, ଗଛ ଲଗେଇବା, ଶାଗ ଦିପଟାଳି କରିବା ଅସମ୍ମାନଜନକ ମନେ କରୁଛନ୍ତି । ଏବେ ଯଦିଓ ନୂଆନୂଆ ଯନ୍ତ୍ରପାତି ଆସିଛି ଯେଉଁଥିରେ ହାତ ମାଟିହେବ ନାହିଁ । ବଗିଚାକାମ ସୌକିନ ହେବ । ପୂର୍ବେ ଆମକୁ ଶ୍ରମଜୀବୀ କରିବାକୁ ଧର୍ମଦଣ୍ଡ ଓ ରାଜଦଣ୍ଡର ଭୟଥିଲା । ୨ୟଟି ଏବେ ଦନ୍ତୁରା ହାଇଗଲାଣି । ଧର୍ମରେ ଆମର ବିଶ୍ୱାସ ନଥାଇ ଦଣ୍ଡ ମିଳିବାର ଡର ନାହିଁ । ଏସବୁ ବଦଳାଇବାକୁ ଶ୍ରମର ଯଥେଷ୍ଟ ମର୍ଯ୍ୟାଦା ଏବେ ଆବଶ୍ୟକ ପଡୁଛି ।



# ପିଲାଦିନ ପାଠପଢ଼ା

ସ୍ୱାଧିନତା ପୂର୍ବରୁ ଭାରତୀୟ ଅର୍ଥନୀତିର ଜଣେ ବିଶେଷଜ୍ଞ ଭାରତୀୟ କୃଷକକୁ ବର୍ଣ୍ଣନା କରିବାକୁ ଯାଇ ଲେଖିଥିଲେ "ସେ ଋଣଭାରରେ ଜନ୍ମନିଏ ଋଣରେ ବଢ଼େ ଓ ଶେଷରେ ଋଣଗ୍ରସ୍ତ ହୋଇ ଇହଲୀଳା ସମାପନ କରେ ।" ଅଣାନବେ ବୟସରେ ଅତୀତର ବିହଗାଲୋକନ କରି ମୁଁ କେତେ ଋଣୀ ତାହା କଳନା କରୁଛି । ଜନ୍ମହୁଏ ୧୯୨୨ ମସିହା ଓଢ଼ଣ ଷଷ୍ଠୀଦିନ । ସେ ଦିନ ଜଗନ୍ନାଥ ମହାପ୍ରଭୁ ଶୀତବସ୍ତ୍ର ପରିଧାନ ଆରମ୍ଭ କରନ୍ତି । ଏକ ଭୂମିହୀନ ସୁଖବାସୀ କରଣ ପରିବାରରେ ମୋ ଜନ୍ମ । ବାପା ବନ୍ଦୋବସ୍ତରେ କଣ ଅମଲା କାମ କରୁଥିଲେ । ଲେଖାପଢ଼ା କେବଳ ଓଡ଼ିଆ vernacular । ବନ୍ଦୋବସ୍ତର ତତ୍‌କାଳୀନ ନିୟମ ବିଚିତ୍ର । କାମଥିଲେ ଢ଼ଂକରା କାମ୍ଭ କରିବାକୁ । କାମ ସରିଗଲେ ଘରକୁ ଯାଅ । ଯଦି ବରଷା ଦିନ ଯେଉଁମାନେ କ୍ଷେତ୍ରରେ କାର୍ଯ୍ୟକରନ୍ତି ସେମାନଙ୍କୁ ମଧ୍ୟ ଅବେତନ ଛୁଟି । ୧୯୨୮ରେ ବାପା ଓଡ଼ିଶା ବନ୍ଦୋବସ୍ତ କାମ ସରିଲାରୁ ଚାକିରିରୁ ବିଦାହେଲେ । ତାଙ୍କ ଜଣା ଜଣେ ସାହେବ ଥିଲେ ନାଁ ଟପଲିନ । ବନ୍ଦୋବସ୍ତରୁ ସେ ଯାଇ କଟକର ଜିଲ୍ଲାଜଜ ହୋଇଥାଆନ୍ତି । ସେ ସାକ୍ଷାତ ଦେଲେ । ଆବେଦନ ଶୁଣିଲେ । ଇଂରାଜି ଅନଭିଜ୍ଞ ଯୋଗୁ ଗୋଟିଏ ଦପ୍ତରି କାମରେ ଯୋଗଦାନ ନିମିତ୍ତ ହୁକୁମ କଲେ । ବାପା ଶୁଣାଇଲେ ହଜୁର, ଡକରାପାଇଲେ ସାକ୍ଷାତକୁ ମୁଁ କାନରେ କଲମ ଖୋସି ହାଜର ହେଉଥିଲି । ଏବେ କଣ କାନରେ ଡ଼ାଙ୍ଗଣ ଖୋସିବି ? ହଜୁରଙ୍କର ଭବିଷ୍ୟତ ପାଇ ମୋଠାରେ ଦୟା ଥାଉ । ସେ ଚାକିରିତ ଗ୍ରହଣକଲେ ନାହିଁ । ଘରେ ବେକାର ହୋଇ

ବସି ରହିଲେ। ପୁଣି ଯାହା ସଞ୍ଚୟଥିଲା ତାହା ମଧ କେତେ ବର୍ଷରେ ଶେଷ ହେଲା । ତଥାପି ମୋର ପିଲାଦିନେ ଖଡ଼ିଛୁଆଁ (ବିଦ୍ୟାରମ୍ଭ) ହୋଇଥିବାର ମନେଅଛି। 'ଖଡ଼ିଛୁଇଁଲେ ତୁ ବିଦ୍ୟାପଢ଼ିବୁ' । ଏହିସମୟରେ ମୋର କର୍ଣ୍ଣବେଧ (କାନଫୋଡ଼ା) ଓ ଗୁରୁମନ୍ତ୍ର ଦୀକ୍ଷା ମଧ କରାଯାଇଥିଲା । ଅନେକ ଦିନଯାଏ ମୁଁ କାନରେ ଗୋଟାଏ ନୋଳି ପିନ୍ଧିଥିଲି । ୪ର୍ଥ ଶ୍ରେଣୀ ଯିବାବେଳେ ତାହା କାଢ଼ି ଦିଆଗଲା । ଏହା ସାଧାରଣତଃ ୪ବର୍ଷ ୪ମାସ ୪ଦିନରେ ହୁଏ । ମାତ୍ର ଅଭାବଗ୍ରସ୍ତ ଯୋଗୁ ଏହା ମୋର ବିଳମ୍ବରେ କରାଗଲା । ସେତେବେଳକୁ ମୋର ବିଦ୍ୟା ଅକ୍ଷର ପରିଚୟ ଶେଷ ଯାଏ ଗଲାଣି । ଶହେ ଆଠ ନଡ଼ିଆ ଶିଳୁପତାରେ ପିଟି ବେଦି ଉପରେ ଗୋବରଲିପା ପୀଠରେ ଯେତେବେଳେ ପୁରୋହିତ ମତେ ଲେଖାଇଲେ ତିନିଟି ମୁଣ୍ଡଳା ବ୍ରହ୍ମା, ବିଷ୍ଣୁ, ମହେଶ୍ୱର କହି, ମୁଁ ଆଗଚଲା ହୋଇ କହିଲି ଏ ତ ଠଅ । ତିନିଟା ଠଅ ଲେଖିଦେଉଛି । ସେ ଆଶୀର୍ବାଦ ଦେଲେ ତୋର ପାଠ ସେମିତି ଆଗେଇ ଥାଉ । ଅନେକ ବର୍ଷ ପରେ ବି.ଏ ପାସ କରି ତାଙ୍କ ଭାଷାରେ ହାକିମ ହେବା ପରେ ସଂକ୍ରାନ୍ତି ହୋମ କରିବାବେଳେ ଘରେ ସେଇ କୂଳପୁରୋହିତ ବାଙ୍କୁ ଶତପଥିଏ ମତେ ଏହା ସ୍ମରଣ କରାଇ ଦେଇଥିଲେ ।

ବ୍ୟଞ୍ଜନ ବର୍ଣ୍ଣରେ ଯୁକ୍ତ ବ୍ୟଞ୍ଜନ ବର୍ଣ୍ଣର ଚିହ୍ନ ଫଳା । ଯେମିତି ର ଫଳା ନ ଫଳା । ବ୍ୟଞ୍ଜନ ବର୍ଣ୍ଣରେ ଯୁକ୍ତ ସ୍ୱରବର୍ଣ୍ଣର ଚିହ୍ନ ମାତ୍ରା ଯଥା ଆକାର ଇକାର ଆଦି। ସଞ୍ଜବେଳେ ଟାହିରେ ଜଣେ ବୟସ୍କ ମୁରବୀଙ୍କ ପାଖରେ ମାଆମାନେ ଛୁଆକୁ ଛାଡ଼ିଦେଇ ଆରାମରେ ଘରକାମ କରୁଥିଲେ ଓ ଖାଇବା ପର୍ଯ୍ୟନ୍ତ ସେମାନଙ୍କୁ ଜାଗ୍ରତ ରଖୁଥିଲେ । ସେ ମୁରବୀ ପ୍ରାୟ ସାହିର ଜେଜେସ୍ଥାନୀୟ କେହି ଜଣେ ଜାଣିବାର ଲୋକ । ସେ ପିଲାମାନଙ୍କୁ ଅକ୍ଷର ଅ ଠାରୁ ହ କ୍ଷ ଯାଏ ବୋଲାନ୍ତି । ତାପରେ ଫଳା, ମାତ୍ରା ଦେଇ କ ଠାରୁ ହ ଯାଏ ଶିଖାନ୍ତି । କ ଆକାରେ କା ଖ ଆକାରେ ଖା ଏମିତି ମାତ୍ରା ଓ କ ରେ ଯ ଫଳା କ୍ୟ ଖରେ ଯ ଫଳା ଖ୍ୟ ଏମିତି ଫଳା ବୋଲନ୍ତି । ଆଉ ଟିକେ ବଡ଼ ପିଲାଥିଲେ ସେ ବେଶି ବେଳ ଯାଏ ଚେଇଁ ପାରିଲେ ତାଙ୍କୁ ପଣିକିଆ ଏକରୁ ପଚିଶକ ଯାଏ ବୋଲାଇ ଅଭ୍ୟାସ କରାନ୍ତି । ମୁଁ ମୋର ଜେଜେଙ୍କ ପାଖରେ କିଛି ଫଳା ଓ ମାତ୍ରା ଶିଖିବା ସହିତ କେତେ ଗୀତ ଶିଖିଥାଏ । 'କମଳ ଲୋଚନ

ଶ୍ରୀହରି', 'ବନ୍ଦଇହରି ଦେବ ମୁରାରି', 'କରି ମସ୍ତକ କପୋଳେ ଶୋହେଚିତା' ଆଦି । ପ୍ରଥମ ଓ ଦ୍ୱିତୀୟଟି ହଳାମଗାରେ ଓ ହରତାଳିକାରେ (ଗଣେଶ ପୂଜା) ଓ ଅନ୍ୟଟି ଶ୍ରୀପଞ୍ଚମୀ (ସରସ୍ୱତୀ ପୂଜା) ଦିନ ଠାକୁରଙ୍କୁ ପୁଷ୍ପାଞ୍ଜଳି ଦେବାବେଳେ ବୋଲାଯାଏ । ମାତ୍ର ମୋର ମନକୁ ବେଶି ପାଇଥିବା ଗୀତଟିରୁ କେତେ ଧାଡ଼ି ଏ ପର୍ଯ୍ୟନ୍ତ ଅଭୁଲା ରହିଛି । ତାହାହେଲା -

କହନ୍ତି ମାୟେ ଯେ ଶ୍ରୀକୃଷ୍ଣ ଆଗେ
କଥାଶୁଣ ବାବୁ ବଡ଼ ସରାଗେ ।
ଖେଳୁଆଡ଼ ବୁଦ୍ଧି ଛାଡ଼ରେ ବାବୁ
ଖଡ଼ିଛୁଇଲେ ତୁ ବିଦ୍ୟା ପଢ଼ିବୁ ।
ଗୁରୁଙ୍କ ଆଗେ ଓଳଗିବୁ ଯାଇ
ଗୋବିନ୍ଦ ସୁମରି ଛୁଇଁବୁ ଭୂଇଁ ।

ସେତେବେଳେ ଆମ ଗାଁରେ ଗୋଟିଏ ପାଠଶାଳା ଥାଏ । ୧୮୮୫ରେ ବାଲିକୁଦାରେ ମାଇନର ସ୍କୁଲ ହେଲା । ବିଦ୍ୟାଶିକ୍ଷାରେ କଣିଆଁ ଗାଁର ଗୋଟିଏ ଖାନଦାନି ଥାଏ । ସେଇଠୁ ୧୮୯୨ରେ ମଧ୍ୟ ଭର୍ଣ୍ଣକୁଲାର ପାସ କରିଥିଲେ ଗାଁର ଆନନ୍ଦ ଚନ୍ଦ୍ର ମହାନ୍ତି । ସେ ସେଇ ବିଦ୍ୟାଳୟରେ ଶିକ୍ଷକ ଥିଲେ ଓ ପରିଜା ସାହେବ (ଡ଼ଃ ପ୍ରାଣକୃଷ୍ଣ ପରିଜା) ତାଙ୍କର ଛାତ୍ର ଥିଲେ । ୧୮୮୪ ରେ ବାମନଚରଣ କାନୁନଗୋ ମଧ୍ୟ ଇଂରାଜୀ ପାସ କଲେ । ସେ ମଧ୍ୟ ମାଟ୍ରିକ (ସେତେବେଳେ ଏନଟ୍ରାନ୍ସ) ୧୯୦୨ରେ ପାସକରି ଜିଲ୍ଲା ମାଜିଷ୍ଟ୍ରେଟଙ୍କ କଚେରୀରେ ଅମଲା ହୋଇ ଶେଷରେ ନାଜର ଭାବରେ ୧୯୪୫ରେ ଅବସର ନେଲେ । ତାପରେ ୧୯୦୨ ମସିହାରେ ରଘୁନାଥ କାନୁନଗୋ ମାଇନର ପାସ କଲେ । ସର୍ଭେଜାଣି ସର୍ଭେୟର ଓ କଚେରି ଅମଲା ହେଲେ । ୧୯୫୧ରେ ଦଣ୍ଡଆଇନ ପେସକାର ଭାବେ ଅବସରନେଲେ । ଗାଁର ୨ୟ ମାଟ୍ରିକୁଲେଟ ଦୀର୍ଘଦିନପରେ ହେଲେ ୧୯୨୮ ମସିହାରେ ପୂର୍ଣ୍ଣଚନ୍ଦ୍ର କାନୁନଗୋ । ସେ ନିଜ ଦାଦି ରଘୁନାଥଙ୍କ ପାଖରେ ରହି ବାଙ୍କି ଡମପଡା ହାଇସ୍କୁଲରୁ ମାଟ୍ରିକ ପାସ କଲେ । ବାଲିକୁଦା ମାଇନର ଓ ପରେ ହାଇସ୍କୁଲରେ ଦୀର୍ଘଦିନ ଶିକ୍ଷକ ହୋଇ ସେ ଖୁବ ସୁନାମ ଅର୍ଜନ କଲେ । ମାତ୍ର ପାଖର ନରିଲୋ

ଖମ୍ମୀକୂଳରୁ ଗ୍ରାଜୁଏଟ କଲେଜ ପଢୁଆ ଆଇ.ଏ., ବି.ଏ.ଙ୍କ ପରି ଆମ ଗାରୁ କେହି ବାହାରୁ ନଥିଲେ ୧୯୪୪ ମସିହା ପର୍ଯ୍ୟନ୍ତ । ଅନେକ ଦିନରୁ ଗାଁରେ ପାଠଶାଳା ଥାଏ । ଏ ପ୍ରକାର ପ୍ରାଥମିକ ବିଦ୍ୟାଳୟ ପାଠ ସୁଯୋଗ କ୍ୱଚିତ୍ ଗାଁରେ ଥାଏ । ଆମ ଗାଁରେ କରଣ ପ୍ରାୟ ୨୫/୩୦ ଘର ଥିବେ । ସମସ୍ତେ ପଢ଼ନ୍ତି । ଭୂମିହୀନ ସ୍ୱଳ୍ପଭୂମି ବା ନାମକୁ ମାତ୍ର ଚାଷୀ । ଘରେ ଦି ଘର ବଡ଼ ଭୂମ୍ୟାଧିକାରୀ । ଜମିଦାର । ଅନ୍ୟମାନେ ପାଠପଢ଼ି ଚାକିରି କରି ବିଦେଶରୁ ଅର୍ଥ ଘର ଚଳିବାକୁ ମନିଅର୍ଡ଼ର ଯୋଗେ ପଠାନ୍ତି । ମୁଁ ଏହାକୁ କଲେଜ ଜୀବନରେ ମନିଅର୍ଡ଼ର ଭିତ୍ତିକ ଅର୍ଥନୀତି ଆଖ୍ୟା ଦେଇଥିଲି । ସେ କଥା ପରେ ।

ପାଠଶାଳା କଥା ଅଳ୍ପ ଅଳ୍ପ ମନେ ଅଛି । ଅବଧାନେ ଅନଧ୍ୟୟନ ଦିବସରେ ପାଠଶାଳା ବନ୍ଦ ରଖନ୍ତି । ଏକଦଶ୍ୟା ଗୁରୁଃହନ୍ତି ଶିଷ୍ୟହନ୍ତି ଚତୁର୍ଦ୍ଦଶୀ । ସଂକ୍ରାନ୍ତି ପୂର୍ଣ୍ଣମୀ ପର୍ବଦିନ ମାନଙ୍କରେ ସେମିତି ଚାହାଲି ବନ୍ଦ । ଅବଧାନେ କଣା ମାଷ୍ଟ୍ରେ । ଏକ ଚକ୍ଷୁ ବିଶିଷ୍ଟ । ଘର ଜଗସିଂହପୁର ନିକଟ ସିଇପି ଶାସନରେ । ନାମ ପରମାନନ୍ଦ ଷଡ଼ଙ୍ଗୀ । ଜମିଦାର ତାଙ୍କୁ ଗୋଟିଏ ଲମ୍ବା ଘର ଯୋଗାଇ ଦେଇଥାନ୍ତି । ସେଇଠି ସେ ରନ୍ଧାବଢ଼ା କରନ୍ତି, ଶୁଅନ୍ତି । ଘରର ବେଶୀ ଭାଗ ଗୋବର ବନମାଟିରେ ଲିପାହୋଇ ଥାଏ ଲେଖାପଢ଼ା ଅକ୍ଷର ଶିଖିବାକୁ । ଖଡ଼ି ପଥର ଖଣ୍ଡକ ବା ଗୋଟାଳି ଆକାରର ଧରି ଅକ୍ଷର ଲେଖାଯାଏ । ତାକୁ ଲିଭାଇ ଦିଆଯାଏ। ଖଣ୍ଡେ ଛାପା ଯିଏ ଘରୁ ନେଇଥାଏ ସେ ତାକୁ ପକାଇ ବସେ । ନହେଲେ ତଳେ ବସିବାକୁ ହୁଏ । କସ୍ତା ଲୁଗା ଲାଲରଙ୍ଗର ଶସ୍ତା । ପିଲାଏ ବେଶୀ ସେଇଆ ପିନ୍ଧନ୍ତି । ଯେଉଁମାନେ ଟିକେ ଅବସ୍ଥାପନ୍ନ ସେମାନେ ମୋଟା ମିଲଲୁଗା ୪/୫ ହାତର ପିନ୍ଧନ୍ତି । ସେଇଥିରେ ସିଙ୍ଘାଣି ପୋଛା ଯାଏ । ପାଠ ଲିଭାଇ ସେଇଥିରେ ହାତ ପୋଛି ସଫା କରାଯାଏ । ମାଷ୍ଟ୍ରେ (ଅବଧାନେ) ଦରମା ସରକାରଠୁ ପାଆନ୍ତି ନାହିଁ । ଗାଁ ଲୋକେ ଯାହାଙ୍କ ପିଲା ପଢ଼ନ୍ତି ସେମାନେ ମାସିକ କିଛି କିଛି ଅର୍ଥ ଦିଅନ୍ତି । ପାଳି କରି ତାଙ୍କୁ ଖାଇବାକୁ ଦିଅନ୍ତି । ଗୋଟିଏ ଥାଳିରେ ଚାଉଳ ଡ଼ାଲି କିଛି ପରିବା ଦିଅନ୍ତି । ତେଲ ଲୁଣ ମସଲା ପାଇ ମାସକୁ ଅଣେ ଦିଅଣା ଦିଅନ୍ତି । ରନ୍ଧା ତାଙ୍କର ସେଇଥିରୁ ଚଳେ । ବହୁତ ଚାଉଳ ବଳିପଡ଼େ । ତାକୁ ସେ ମାସକୁ ୩/୪ ଥର ନେଇ ଘରକୁ ଯାଆନ୍ତି । ଘରେ ରଖି ଆସନ୍ତି । ଜମିଦାର ଘର

ନିଜ ଜମିରେ ସ୍କୁଲ ଘର ତୋଳାଇ ଦେଇଥାଆନ୍ତି । ଅନ୍ୟ ଗ୍ରାମବାସୀମାନଙ୍କ ସହଯୋଗରେ ସେ ଘରର ଛଣ ଛପର ପ୍ରତିବର୍ଷ ହୁଏ । ପାଳି ଦେଇ ନ ପାରିବା ଘର । ମାସିକ ପଇସା ଆକାରରେ କିଛି ଅବଧାନଙ୍କୁ ଦିଅନ୍ତି । ହରିତାଳିକା ଶ୍ରୀପଞ୍ଚମୀ ପିଲାଙ୍କର ଗଣେଶ ସରସ୍ୱତୀ ପୂଜିବାଦିନ । ନଡ଼ିଆ ଉପରେ ଚିତ୍ର ହୋଇ ପୂଜାଯାଏ । ମୂର୍ତ୍ତି ତିଆରି ବ୍ୟୟବହୁଳ । ପୁଷ୍ପାଞ୍ଜଳି ପରେ ହରତାଳିକାରେ କରିମସ୍ତକେ କପୋଳେ ଓ ଶ୍ରୀପଞ୍ଚମୀରେ ବନ୍ଦଇହରି ବୋଲାଯାଇ ଠାକୁରଙ୍କୁ ସ୍ତବ କରାଯାଏ ।

ସବୁ ଚାଟ ଗୀତ ବୋଲନ୍ତି ଏକସ୍ୱରରେ । ଗୀତର କେତେପଦ ଲେଖୁଛି-

କରୀ ମସ୍ତକେ କପୋଳେ ଶୋହେଚିତା
ଖଡଗ ଡମ୍ବରୁ ଶୋହେ ବ୍ରହ୍ମବେତା
ଗ୍ୟାନ ଗୁରୁ ବୋଲି ଦେବେ ହେଲେ ବର
ନମୋ ନମୋ ଗଣନାଥ ବିଦ୍ୟାରେ ।
ଚତୁରପଣେ ଅମୃତ ଲଡୁକର
ନମୋନମୋ ଗଣନାଥ ବିଦ୍ୟାବର
ଛତ୍ରୀବୀରପଣେ ବାନାଉଡେ ନେତ
ଜଟା କଉପୀନ ବେଶ ଚଣ୍ଡୀସୁତ ।
ଡାକି ଡମ୍ବରୁ ବଜାନ୍ତି ଗଣେଶ୍ୱର
ଢଳି ଢଳି ନୃତ୍ୟକର ବିଦ୍ୟାବର ।

ଅବଧାନେ ଧାନକଟା ବେଳେ ସ୍ୱଚ୍ଛଳ ଲୋକଙ୍କଠାରୁ କିଛି ଧାନ ପାଆନ୍ତି । ତାଛଡ଼ା ଗୋଟିଏ ନଡ଼ିଆକୁ ଚୂନ ଥାଇ ସଫା କରାଯାଇ ତା ଉପରେ ସରସ୍ୱତୀ ଚିତ୍ର ଅଙ୍କା ଯାଇଥାଏ । ଏହା ସରସ୍ୱତୀଙ୍କର ପ୍ରତୀକ । ଛାତ୍ରମାନେ ତାହା ସରସ୍ୱତୀ ପୂଜାଦିନ ପୁଷ୍ପାଞ୍ଜଳି ଦେବାକୁ ଭୋଗ ଲଗେଇବାକୁ ପୂଜା କରନ୍ତି । ବିସର୍ଜନ ହୋଇଯାଏ ମାତ୍ର ନଡ଼ିଆ ପାଣିରେ ପଡ଼ି ନ ଥାଏ । ତାଙ୍କୁ ଜଣେ ବଡ଼ ଚାଟ ଧରେ । ଅନ୍ୟ ୪/୫ ଜଣ ତା'ସାଙ୍ଗରେ ଗାଁ ବିଲକୁ ହଳାମଗା ପାଇଁ ଗୀତ ବୋଲି ଯାଆନ୍ତି । 'ବନ୍ଦଇ ହରି ଦେବ ମୁରାରି ଲକ୍ଷ୍ମୀ ଦେବୀଙ୍କର କାନ୍ତ । ଗୀତ ଶ୍ରୀ ପଞ୍ଚମୀ ଦିନ ସମସ୍ତେ ବୋଲି

ଥା'ନ୍ତି। ପ୍ରାୟ ସବୁରି ମୁଖସ୍ଥ ଥାଏ । ବୋଲାଯାଏ -

ବନ୍ଦଇ ହରି ଦେବ ମୁରାରୀ
ଲକ୍ଷ୍ମୀଦେବୀଙ୍କର କାନ୍ତ
ଅଭୟବର ଢଙ୍କୁ କୁମର ସେ ପ୍ରଭୁ ଦେବ ଅନନ୍ତ ।..
ବାରମାସ ମଧ୍ୟେ ଅଟଇ ସାର
ମାଘ ସ୍ନାହାନକୁ ହେଲେ ବାହାର ।
ମାଘ ସ୍ନାହାନକୁ ବାହାର ହୋଇ
ବସନ୍ତ ପଞ୍ଚମୀ ନାମ ବୋଲାଇ ।
ଏଇ ପଞ୍ଚମୀ ଯେ ଅଟଇ ଭଲ
ଅନ୍ୟପଞ୍ଚମୀ ଦେହେ ଏହା ତୁଲ ।
ପିତୁଳ ଲେଖାଇ ବୁଲି ସେ ଯାନ୍ତି
ଶ୍ରୀଫଳ ପୁସ୍ତକ ହସ୍ତେ ଘେନନ୍ତି ।
ପିଲାଏ ରାଇ ବୋଇଲେ ଆମ୍ଭର
ଗୁରୁଙ୍କୁ ନିଅ ଇଷ୍ଟ ବନ୍ଧୁଘର ।
ଇଷ୍ଟବନ୍ଧୁ ଘର ମାଗିଣ ଯାଉ
ଯାହା ପାଉ ତାହା ଗୁରୁଙ୍କୁ ଦେଉ ।
ଅଦିଆ ବନ୍ଧୁର ପାସ ନ ଯାଉ
ଘରକୁ ଗଲେ ପରଚ୍ଛୁଆଁ ପାଉ ।
ଟଙ୍କା ସୁନା ଲୁଗା ଧାନ କଉଡି
ନ ଦେଲେ ଆଇହେ ଯିବୁ ବାହୁଡ଼ି ।
ସାହୁ ନୋହୁ ଆମ୍ଭେ ନୋହୁ ଖାତକ
ଯାହା ଦେବ ତାହା ଦେଖିବେ ଲୋକ ।
ବରଷକେ ଥରେ ଆମ୍ଭ ମାଗୁଣି
ଭଲା ଭିଆଇଲେ ଶାରଙ୍ଗପାଣି ।

ତା'ପରେ ବାଳବୋଧରୁ ଗୀତ -

ଧନ୍ୟ ଧନ୍ୟ ଧନ୍ୟ ଚଷାର ଜୀବନ
ଧନ୍ୟ ଧନ୍ୟ ଚଷା ନାମ,
ଖରାବରଷାରେ କେତେ କଷ୍ଟ ସହି
କରଇ ସେ କ୍ଷେତକାମ ।
ଅକର୍ମା ଯେ ଜନ ଭୂମିକି ସେ ସିନା
ନିନ୍ଦଇ ଆଳସ୍ୟ ଭରେ,
ସେ ଭୂମିରୁ ଚାଷୀ ଘର ଓ ପରକୁ
ଅନ୍ନ ବସ୍ତ୍ର ଦାନ କରେ ।
ପରିଶ୍ରମ କରି ଚାଷୀ କରେ କେତେ
ଜଗତର ଉପକାର,
ତଥାପି ତାହାର ମନରେ ନଥାଏ
ବୃଥା ଗର୍ବ ଅହଂକାର ।
ନାହିଁ ତାର କୋଠା ନାହିଁ ଦାସଦାସୀ
ଘୋଡ଼ାଗାଡ଼ି ନାହିଁ ତାର,
ତଥାପି ତା ଘର ସୁଖର ଆଳୟ
ସୁଖୀ ତାର ପରିବାର ।
ଧର୍ମ ପଥେ ରହି ଆନନ୍ଦରେ ନିତି
ପରିଶ୍ରମ କରେ ଚାଷୀ
ତେଣୁ ସୁଖୀ ସେହି ନଥିଲେ ହେଁ ତାର
କୋଠାଘର ଦାସଦାସୀ ।

ଚଷାର ଏହି ପ୍ରଶଂସା ଗୀତ ବୋଲି ହଳା ମଗା ଯାଏ । କିଆରିରୁ କିଏ ଗୋଟାଏ ବଡ଼ ଚାଷୀ ହେଲେ ଦିଇଟା କଳେଇ ଦିଅନ୍ତି । ଅବଧାନେ ତାକୁ ବେଶି ହେଲେ ନିଜେ ବେଙ୍ଗଳା ପକାଇବା ବ୍ୟବସ୍ଥା କରନ୍ତି । ନ ହେଲେ କେଉଁ ଚାଷିକୁ ଦେଇ ସମପରିମାଣର ଧାନ ବଦଳ କରି ଆଣନ୍ତି । ଖଳାମଗା ହଳାମଗା ଧାନ

ଅବଧାନେ ଶଗଡ଼ କରି ନିଜ ଘରକୁ ନିଅନ୍ତି । ବରଷରେ ଏଇଟା ବଡ଼ ରୋଳଗାର । ବିଦ୍ୟାରମ୍ଭରେ ଅବଧାନଙ୍କର କିଛି ନଗଦ ପଇସା ରୋଜଗାର ହୁଏ । ଅବଧାନେ ପୁରୁଣାକାଳିଆ ପାଠ ପଢ଼ିଥା'ନ୍ତି ।

ଚାଟଶାଳି ପାଠ ମୂଳ ପାଠ । ସେଥିରେ ବର୍ଣ୍ଣପରିଚୟ ବ୍ୟତୀତ କେତେକ ସରଳ ପଦ୍ୟ ଥାଏ । ମୁଖସ୍ଥ କରି ପଢ଼ାରେ ଦେବାକୁ ହୁଏ । ଯେଉଁଠି ଟିକେ ନୂଆ ଆଗୁଆ ପାଠପଢ଼ା ମାଷ୍ଟର ଥାଆନ୍ତି ସେମାନେ ବର୍ଣ୍ଣବୋଧ ସରିଗଲେ ଚାଟକୁ ଶିଶୁବୋଧ ବାଳବୋଧ ପଢ଼ାନ୍ତି । ସାହିତ୍ୟ ବର୍ଣ୍ଣବୋଧ ଶିଶୁବୋଧ ବାଳବୋଧ (ସବୁ ଭକ୍ତକବି ମଧୁସୂଦନଙ୍କର) ପାଠ୍ୟ । ଗଣିତରେ ପଚିଶିକଯାଏ ପଣିକିଆ ମୁଖସ୍ଥ କରିବାକୁ ହୁଏ । ସେ ପୁଣି ଗୁଣନ କାହାଣପଣରେ ପାଠ ଯଥା ତେର ନୂଆ (୧୩ x ୯) ୧୧୭ ଆଠ କାହାଣ ତେର ପଣ । ମିଶାଣ ଫେଡ଼ାଣ ଗୁଣନ ହରଣ ଓଡ଼ାଙ୍କ ଓ ମେଲାଙ୍କ ଇତ୍ୟାଦି । ଓଡ଼ାଙ୍କ ଏକ ପ୍ରକାର ମିଶାଣ ୧+୨=୩ ୩+୩=୬ ୬+୪=୧୦ ୧୦+୫=୧୫ ୧୫+୬=୨୧ ଏମିତି ମିଶାଇ ଦିଆଯାଏ ୧୦୦ ଯାଏ । ମିଶାଯାଉଥିବା ୨,୩,୪,୫ ଆଦି ମିଶିବା ସଂଖ୍ୟାମାନ ମେଲାଙ୍କ ଓ ୩,୬,୧୦,୧୫,୨୧ ଆଦି ମିଶାଣ ତଳମାନ ଓଡ଼ାଙ୍କ । ଫେଡ଼ାଙ୍କ ବା ଫେଡ଼ା ସେହି କ୍ରମରେ ଗଣିତର ଏକ ବିଯୋଗ ପ୍ରକ୍ରିୟା । ମିଶାଣରେ ଶହେଯାଏ ଯାଇ ଫେଡ଼ାଣରେ ପୁଣି ଏକକୁ ସେମିତି ଲେଉଟି ଆସିବାକୁ ହୋଇଥାଏ । ଟିକେ ବଡ଼ଚାଟ ହୋଇ ଏସବୁ ଜାଣିଗଲା ପରେ ନଳକଷା ଓ ଜରିବ୍ ମାପ ଶିଖାଯାଏ । ଜଣେ ବଡ଼ ଅବଧାନେ ଥା'ନ୍ତି । ଚାଟ ବେଶି ହେଲେ ସେ ନିଜର ସହକାରୀ ଜଣେ ରଖନ୍ତି । ତାକୁ ବେତନ ଦେବା ଦାୟିତ୍ୱ ତାଙ୍କ ନିଜର ।

ଜମି ମାପ୍ ଆଗେ ବାଉଁଶ ନଳରେ ହେଉଥିଲା । ତାପରେ ଜରିବ ବନ୍ଦୋବସ୍ତ (chain survey) ଚାଲୁ ହେଲା । ଚାଟ ଏହା ଗୀତ ମାଧ୍ୟମରେ ଶିଖୁଥିଲା । ପରେ କେଉଁ ଅମିନ ପାଖରେ ଚେନମେନ ହୋଇ କ୍ଷେତ୍ର ଉପରେ ପାଠର ପ୍ରୟୋଗ ଜାଣୁଥିଲେ । ନଳ ଅର୍ଥ ଜମିମାପ କରିବାର ଯଷ୍ଟି ବା ବାଡ଼ି । (chain) ମାପ ଶିକୁଳିର ଶହେ ଭାଗ ଗୋଟିଏ କଡ଼ି । ଗୀତରେ ପାଠ ଶିଖାଯାଏ । ଯାହା ମନେପଡୁଛି 'ଜରିବିକୁ କଡ଼ି ମାଗ ଆଠ ଗଣ୍ଡା, କଡ଼ି କଡ଼ି ତତ୍ତ୍ୱ ଆଠ । ଜରିବେ ଜରିବେ ଅଢ଼େଇ

ଗୁଣ୍ଠରେ ମନେ ହେତୁକର ଚାଟ ।' ଏକ ଗୁଣ୍ଠ ଏକ ଏକରର ପଚିଶଭାଗରୁ ଭାଗେ ପରିମିତ ଭୂମି । ମାଣକ ପଚିଶ ଗୁଣ୍ଠ, ଗୁଣ୍ଠକ ଷୋଳ ବିଶ୍ୱା । ବିଶ୍ୱାଏ କହିଲେ ଏକ ବର୍ଗ ପଦିକା । ପଦିକାର ଲମ୍ବ ମାଡକୁ ବନ୍ଦୋବସ୍ତ ପରେ ସବୁଆଡେ ଏକ ପ୍ରକାର । ଲମ୍ବ ୧୦ଫୁଟ ପାଞ୍ଚ ଇଞ୍ଚ ଓ ଏକ ଯବ । ଯବକ ଏକ ଇଞ୍ଚର ସାମାନ୍ୟ ଅଂଶ । ଏ ପଦିକାକୁ ଚବିଶଦସ୍ତି ପଦିକା କହୁଥିଲେ । ଏ ମାପ ଅଙ୍କ ଶିଖିଗଲେ ଚାଟ ନିଜେ ସ୍ୱାଧିନ ଭାବରେ ଜମିମାପ କରି ଜୀବିକା ଅର୍ଜନ କରୁଥିଲେ । ଧାନର ମାପ ସେମିତି ଥାଏ ଭରଣରେ । ୫ ସେରିଆ ଗୌଣି ଗୋଟିକରେ ସାଢ଼େ ତିନି ସେର କଟକୀ ଧାନ ଧରେ । ଭରଣକ ଚାରିଛେଲା । ଛେଲାକ ଦୁଇ ପଉଟି । ପଉଟିକ କୋଡିଏ ଗଉଣି । ମାପ ସେମିତି ବିଶା କାଠିରେ ହେଲେ ବିଶ୍ୱାକ କୋଡିଏ ପଳ । ପଳକ ଦୁଇ ତୋଳା । କଟକି ସେରକ ୧୮୦ ତୋଳା । ମୂଲ୍ୟବାନ ଧାତୁ ଜିନିଷ ଭରିରେ ଓଜନ ହୁଏ । ଭରିକ ଦଶମଶା । ମଶାକ ୪ ରତି । ରତିକ ୪ ଧାନ । ଏହା ଲେଖିବାର ଉଦ୍ଦେଶ୍ୟ ଗଣିତ ପାଠାରେ ଏ ସବୁ ହିସାବ ରଖାଥାଏ ଓ ସେ ହିସାବରେ ଅଙ୍କ ଶାସ୍ତ୍ରରେ ପ୍ରଶ୍ନ ଆସେ । ଏହି ସବୁ ପାଠ ଅତିଶୟ ଶକ୍ତ । ବର୍ଣ୍ଣବୋଧରୁ ବନାନ କହିବାକୁ ନିତିଦିନ ପଢ଼େ । ପଣିକିଆ ପଚିଶିକ ବୋଲିବାକୁ ହୁଏ । ଦଶକ ଯାଏ ହୁଏତ ଅଧିକାଂଶ ଯାଆନ୍ତି । ତା'ପରେ କଷ୍ଟପାଠ । ଅଧିକାଂଶ ନ ବୋଲି ପାରି ମାଡ଼ ଖାଇ ରକ୍ତାକ୍ତ ହୁଅନ୍ତି । ତା'ପରେ ପାଠକୁ ଗଲା ବେଳକୁ ଚାଟ ସଂଖ୍ୟା ଅଧା ହୋଇଯାଏ । ସାହିତ୍ୟରେ ସେମିତି ଫଳା ମାତ୍ରା ସହଜରେ ହୋଇଯାଏ । ମାତ୍ର ଯୁକ୍ତାକ୍ଷର ବେଳକୁ ପାଠକଷ୍ଟ - ଆକାଙ୍କ୍ଷା, ପରାଙ୍ମୁଖ, ବ୍ୟଞ୍ଜନ, ପଞ୍ଝା, ପଙ୍କ, ସ୍ତ୍ରୀ, ଉଦ୍ୟୋଗ, ସ୍ୱାତନ୍ତ୍ର୍ୟ ସ୍ୱର୍ଣ, ଉର୍ଦ୍ଧ୍ୱ ଇତ୍ୟାଦିର ବନାନ ନ କହିପାରିଲେ ଦଣ୍ଡ ଅତି କଠୋର । ସେ ଦଣ୍ଡ ପୁଣି ବିଚିତ୍ର । ଢ଼େଙ୍କିଆ, ଏକ ଗୋଡ଼ିକିଆ ଠିଆ, ନାକରେ ହାତଦେଇ ଗୋଟିଏ ଗୋଡ଼ରେ ଠିଆ । ପାଦ ତଳେ ଲାଗିବା ଅବଧାନଙ୍କ ଦୃଷ୍ଟି ପଡ଼ିଲେ ବେତରେ ମାଡ଼ । ବେତ ସେଥି ପାଇଁ ବିଶେଷ ଭାବରେ ତେଲ ଲଗାଯାଇ ପ୍ରସ୍ତୁତ ଥାଏ । ପିଚି ପିଚି ଶବଦ କରି ଦେହରେ ଲୋଳା ଫଠେଇ ଦିଏ ବା ସେଥିରୁ ରକ୍ତ ବାହାରେ । ଡ଼ରରେ ପାଠ ନପଢ଼ିବା ପାଇଁ ଚାଟ ଯାଇ ଲୁଚେ ଘରର ଦେପିଣ୍ଡି ପାଖରେ । ସେଇଟା ପରିବାର ଘର ଭିତରେ ଅବଧାନଙ୍କ ଅଗମ୍ୟ ସ୍ଥାନ । ଦୁଇଟା

ବଡ଼ ଚାଟ ଲଙ୍ଗଳା ହୋଇ ସେଠାକୁ ଯାଇ ତାକୁ ଶୂନ୍ୟରେ ଟେକି ଆଣି ଅବଧାନଙ୍କ ଛାମୁରେ ହାଜର କରାନ୍ତି । ପାଠ ଆରମ୍ଭ କରିବା ଆଗରୁ ସେଇ ଚାଟଶାଳି ଆଗରେ ଖେଳି ବୁଲୁଥିବା ଛୋଟ ପିଲା ଏ ଦୃଶ୍ୟ ଦେଖି ଚାହାଳିଯିବା ନାଁ ଶୁଣିଲେ ହଗି ମୁତି ପକାନ୍ତି । ଡ଼ର ଯିବାକୁ । ବାପା ମାଆ ଯେତେ ବୁଝାଇଲେ ମଧ ମନରେ ଏ ଡର ବସା ବାନ୍ଧି ରହେ । ପୁଣି ସେ କୋଠରିରେ ଅବଧାନଙ୍କର ଗୋଷେଇଛୁଙ୍କ ସହିତ ଲିପା ଗୋବର ଗନ୍ଧ ବାହାରେ ଗାଈ ଗୋରୁ ମଣିଷ ମୂତ, ଗୁହ ଗନ୍ଧ ସମ୍ମିଶ୍ରଣରେ ଏକ ବିଚିତ୍ର ପରିବେଶ ଚାଟକୁ ଡ଼ରେଇ ଦିଏ । ମୁଁ ଚାଟଶାଳୀକୁ ଯିବାକୁ ବୋଉ ପାଖରେ ଲୁଚେ ମାତ୍ର ମୋର ଧଡିଆ ଦାଦି ମୋତେ ସାଙ୍ଗରେ ନେଇଯାଇ ତତେ ଆଣି ଆସିବି ବୋଲି କହି ଭୁଲାଇ ଦିଅନ୍ତି । ବସେଇ ଦେଇ ଆସନ୍ତି । ପୁଣି ଯାଇ ଆଣି ଆସନ୍ତି । ଚଟାଣରେ ଲେଖା ସାରି ମୁଁ ସିଲଟ ଖଡି ଧରିଲି । ସିଲଟରେ ଲେଖି ଅକ୍ଷର ଗୋଲ କରିବାକୁ ହୁଏ । ସିଲଟ ପରେ ମାଟିଆ ବାଲି କାଗଜରେ ପର କଲମ କାଠି କଲମରେ ଲେଖାଯାଏ । ପରେ ସେଇ କାଠି କଲମରେ ନବଦିଆ ଓ ପୂରା କଲମ ମିଳିଲା କାଳି ଏକ ସୁଦୂର ପତରରେ ଘରେ ତିଆରି ହୁଏ । ପୋଡା ମାଟି ଦୁଆତରେ ଭରାଯାଏ । ପରେ ବଜାରରେ କାଳି ଗୁଣ୍ଡ ଓ ଜେବିଡି କମ୍ପାନୀର ଗୋଲ ଗୁଳି ମିଳିଲା । ବର୍ଣ୍ଣବୋଧର ଫଳା ମାତ୍ରା ଲଗାଇ ସବୁ ଅକ୍ଷରର ପଦ ଲେଖିବାକୁ ପଡ଼େ । ତା'ପରେ ଯୁକ୍ତାକ୍ଷର ! କୋଟ କଚେରୀରେ କରଣୀ ଅକ୍ଷରର ବ୍ୟବହାର ଥାଏ । ଆଉ ଟିକେ ବଡ଼ ହେଲେ ତାକୁ ପଢ଼ିବା ଲେଖିବାକୁ ଦିଆଯାଏ ।

ମୋର ପାଠ ଏମିତି ବର୍ଣ୍ଣବୋଧ ଶିଶୁବୋଧ ସରିବାବେଳକୁ ବୟସ ୬/୭ ବରଷ । ଏତିକିବେଳେ ଶିକ୍ଷାଦାନ ପ୍ରଣାଳୀରେ କିଛି ପରିବର୍ତ୍ତନ ଆରମ୍ଭ ହେଲା । ସରକାର ନୂତନ ଗଠିତ ଶିକ୍ଷା ସଂସ୍କାର ଆଣି ଏଇ ଅଣତାଲିମପ୍ରାପ୍ତ ଗ୍ରାମୀଣ ଅବଧାନମାନଙ୍କୁ ବିଦା କରି ସ୍ଥଳ ବିଶେଷରେ ସରକାରୀ ଗ୍ରାଣ୍ଟ ଦେଇ ଶିକ୍ଷକ ନିଯୁକ୍ତ କଲେ । ଡିପୋଟି ଚାକିରିରୁ ଇସ୍ତଫା ଦେଇ ମହାତ୍ମା ଗାନ୍ଧିଙ୍କ ଆଦର୍ଶରେ ଦେଶସେବାରେ ଲାଗିଥିବା ତ୍ୟାଗୀ ଗୋପବନ୍ଧୁ ଚୌଧୁରୀ ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ । ଲକ୍ଷ୍ମୀଧର ମହାନ୍ତି ଭାଇସ ଚେୟାରମ୍ୟାନ । ପରେ ଲକ୍ଷ୍ମୀଧର ହେଲେ ଚେୟାରମ୍ୟାନ । ଆମ ଗାଁ ଚାଟଶାଳୀର ଛାତ୍ରସଂଖ୍ୟା ଓ ଶିକ୍ଷାର ଲୋକପ୍ରିୟତା ଦୃଷ୍ଟେ ସେଠାରେ ଗୋଟିଏ

ଜିଲ୍ଲାବୋର୍ଡ଼ ପରିଚାଳିତ ବିଦ୍ୟାଳୟ ଖୋଲିବାର ନିଷ୍ପତ୍ତି ନେଲେ । ଗାଁ'ର ଗୋବିନ୍ଦ ଚନ୍ଦ୍ର କାନୁନଗୋ ନରମାଳ ଟ୍ରେନିଂସ୍କୁଲରେ ପଢ଼ିଥାନ୍ତି । ପୁରୀ ଜିଲ୍ଲା କାକଟପୁରରେ ଶିକ୍ଷକ ଥା'ନ୍ତି । ତାଙ୍କ ମାମୁଁ ଆପିଲା ହାଜିପୁରର ମାଧବ ଚନ୍ଦ୍ର ନାୟକ ବିଦ୍ୟାଳୟ ସମୂହର ଡ଼େପୁଟି ଇନସ୍‌ପେକ୍ଟର ଥା'ନ୍ତି । ଗୋବିନ୍ଦ ଚନ୍ଦ୍ର ଆମ କୁଟୁମ୍ବିକ । ମୋର ବାପାଙ୍କୁ ସମବୟସୀ ହେଲେ ମଧ ଦାଦି ଡ଼ାକୁଥିଲେ । ତାଙ୍କୁ ମାମୁଁ ଜିଲ୍ଲା ବଦଳି କରାଇ ଆଣିଲେ; କଣିଆଁ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ହେଡ଼ ପଣ୍ଡିତ ଭାବେ ନିଯୁକ୍ତି ଦେଲେ । ତାଙ୍କ ଦରମା ବାର ଟଙ୍କା । ସେତେବେଳେ ଅତିବେଶି । କାକଟପୁରରୁ ଛାତ୍ରାଭାବ କାରଣରୁ ତାଙ୍କ ସହିତ ଅନୁଦାନ ମଧ ବଦଳି ଆସିଲା । ବିଦ୍ୟାଳୟର ନିଜର ଘର ହେବା ଦରକାର । ଅନ୍ୟ ଜମିରେ ଘର ଥାଇ ସେଇଠି ପାଠପଢ଼ା ଚାଲୁଥିଲେ ଜିଲ୍ଲାବୋର୍ଡ଼ ତାକୁ ମଞ୍ଜୁରି ଦେବ ନାହିଁ । ଗାଁର ବିଶିଷ୍ଟ ଲୋକମାନେ ଏ ସୁଯୋଗକୁ ହାତଛଡ଼ା କରିବାକୁ ଦେଲେ ନାହିଁ । ଗାଁର ମଝି ସ୍ଥଳରେ ଜମିଦାର ଦାମୋଦର କାନୁନଗୋ, ମକଦମ ଗଣେଶ୍ୱର ସ୍ୱାଇଁ ଓ ଜମିମାଲିକ ଜନାର୍ଦ୍ଦନ ମହାନ୍ତି ସ୍ୱତଃପ୍ରବୃତ୍ତ ହୋଇ ନିଜ ନିଜର ଜମିଦାନ କଲେ ଯାହା ଉପରେ ସରକାରୀ ସାହାଯ୍ୟ ଓ ଗ୍ରାମବାସୀମାନଙ୍କର ସହଯୋଗରେ ନୂତନ ଘରଟିଏ ତିଆରି ହେଲା । ଗ୍ରାମର ଏ ତିନିଜଣ ବିଶିଷ୍ଟ ବ୍ୟକ୍ତି ନିଶ୍ଚୟ ପ୍ରାତଃ ସ୍ମରଣୀୟ । ଖାଲି କଣିଆଁ ନୁହଁ ଆଖପାଖ ଗାଁରୁ ଆସି ପିଲାଏ ପଢ଼ିଲେ । ବୃତ୍ତି ପାଇଲେ । ସୁନାମ ଅର୍ଜନକଲେ । ତା'ଭିତରେ କୁଳିଆଗାଁର ସ୍ୱର୍ଗତଃ ନଟବର ସ୍ୱାଇଁ ଏଇ ବିଦ୍ୟାଳୟର ପରେ ପ୍ରଧାନ ଶିକ୍ଷକ ହେଲେ । ଯଶସ୍ୱୀ ଶିକ୍ଷକ ।

ଖୁବ ଲମ୍ୱାଚଉଡ଼ା ଚାଳଛପର ଘର । ଏଥିରେ ଶିଶୁ ପ୍ରଥମ ୨ୟ ୩ୟ ଶ୍ରେଣୀର ଛାତ୍ରମାନେ ଅଲଗା ଅଲଗା ବସି ପଢ଼ିବାର ବ୍ୟବସ୍ଥା ହେଲା । ୨ୟ ଶିକ୍ଷକ ଆଉ ଜଣକୁ ନିଯୁକ୍ତି ଦିଆଗଲା । କାହ୍ନୁ ଚରଣ ମହାନ୍ତି । ସେ ତାଲିମ ପାଇ ନ ଥିଲେ ମଧ ମାଇନରଯାଏ ୭ମ ଶ୍ରେଣୀ ପାଠ ପଢ଼ିଥାନ୍ତି । ତାଙ୍କର ଦରମା ପାଞ୍ଚ ନାଁ ତିନି ଟଙ୍କା କଣ ମାତ୍ର ତାହା ଅନିୟମିତ ଥାଏ । ସେ ପିଲାଙ୍କଠାରୁ ମାସିକ କିଛି ପାରିଶ୍ରମିକ ଆଦାୟ କରି ଚଳୁଥିଲେ । ଶିଶୁ ଓ ପ୍ରଥମରେ ତାଙ୍କର ପାଠ ପଢ଼ା ଦାୟିତ୍ୱ ବେଶି । ଗୋବିନ୍ଦ ଚନ୍ଦ୍ରଙ୍କୁ ସମସ୍ତେ ବଡ଼ ମାଷ୍ଟର ଡ଼ାକୁଥିଲେ । ୧୯୩୦ କି ୨୯ ଶେଷବେଳକୁ

ସେ ଆସି ତାଙ୍କ ନୂତନ କାର୍ଯ୍ୟଭାର ଗ୍ରହଣ କଲେ । ତାଙ୍କ ଶିକ୍ଷାଦାନ ପଦ୍ଧତି ପୁରୁଣାକାଳିଆ ଢ଼ାଞ୍ଚାରୁ ଅଲଗା ଥିଲା। ବାଲିକୁଦାରେ ଜଣେ ବିଦ୍ୟାଳୟ ପରିଦର୍ଶକ ଥିଆନ୍ତି । ସେ ଶୂନ ଗାଡ଼ି (ସାଇକେଲ) ଚଢ଼ି ବିଦ୍ୟାଳୟକୁ ଆସିଲେ ଆମ୍ଭେମାନେ ବିସ୍ମୟାଭୂତ ହୋଇଯାଉ ତାଙ୍କ ଯାନଦେଖି । ବିଭିନ୍ନ ଶ୍ରେଣୀର ପାଠ୍ୟକ୍ରମ ସେ ପ୍ରସ୍ତୁତ କରି କି ସରକାରଙ୍କଠାରୁ ପାଇ ତାକୁ ବିଦ୍ୟାଳୟରେ ଚଳାଇବା ଦାୟିତ୍ୱ ହେଡ଼ପଣ୍ଡିତକୁ ଦେଲେ । ଆଗରୁ ଚାଟଶାଳି ପାଠ ସରିଲେ ପିଲାଟି ୧୮୮୫ ମସିହାରେ ପ୍ରତିଷ୍ଠିତ ବାଲିକୁଦା ମଧ୍ୟ ଇଂରାଜୀ ବିଦ୍ୟାଳୟରେ ନାଁ ଲେଖାଇବାକୁ ଯୋଗ୍ୟ ବିବେଚିତ ହେଉଥିଲା । ମଧ୍ୟ ବିଦ୍ୟାଳୟ ପ୍ରଧାନ ଶିକ୍ଷକ ତାର ପାଠ ପରୀକ୍ଷା କରି ଉପଯୁକ୍ତ ମନେ କଲେ ନାମ ଲେଖାଇବାକୁ ଅନୁମତି ଦେଉଥିଲେ । ପରବର୍ତ୍ତିକାଳର ଟ୍ରାନ୍ସଫର ସାଟିଫିକେଟ ବ୍ୟବସ୍ଥା Transfer certificate ସେତେବେଳେକୁ ଚାଲୁ ହୋଇ ନ ଥାଏ । ବଡ଼ମାଷ୍ଟ୍ରେ ସେଇ ନିର୍ଦ୍ଦେଶ ମୁତାବକ ପାଠ୍ୟ ଖସଡାର ପାଠ ପଢ଼ାଇଲେ । ସାହିତ୍ୟ, ଗଣିତ, ଇତିହାସ, ଭୂଗୋଳ, ମାନସାଙ୍କ, ଚିତ୍ରାଙ୍କନ, ଡ୍ରିଲ, ପତ୍ରଲିଖନ ଦଲିଲ ଲିଖନ ଓ ପାଠନ । ୧୯୩୦ ମସିହାରେ ମୁଁ ୨ୟ ଶ୍ରେଣୀରେ ପଢୁଥିବାବେଳେ ସେ ଆସିଲେ । ସ୍କୁଲ ବରଷ ଜାନୁଆରିରେ ଆରମ୍ଭ ଡ଼ିସେମ୍ବରରେ ଶେଷ ।

୧୯୩୧ ମସିହା ଜାନୁଆରିରେ ମୋର ୩ୟ ଶ୍ରେଣୀ । ବଡ଼ ମାଷ୍ଟ୍ରେ ମୋତେ ବୃତ୍ତି ପରୀକ୍ଷାକୁ ଯିବାପାଇଁ ପ୍ରସ୍ତୁତ କରାଇବାରେ ଲାଗିଲେ । ନୂଆ ପ୍ରକାରର ପାଠ । ବାଳବୋଧ, ଗଣିତ, ରତ୍ନାକର ଗରାବଡୁ ଲିଖିତ ଇତିହାସ ଭୂଗୋଳ, ଗଣପତିଲାଲ ଚଉବେଙ୍କର ଛପା କସରତ ଶିକ୍ଷା (ଯାହା ମନେ ପଡୁଛି) ଓ ଚିତ୍ରାଙ୍କନର ବହି ସେ ପ୍ରଚଳନ କରାଇଲେ । ଅନ୍ୟବର୍ଷମାନଙ୍କରେ ବୃତ୍ତି ପରୀକ୍ଷାରେ କି ପ୍ରକାର ପ୍ରଶ୍ନ ପଡୁଥିଲା ତାହା ସେ ନିଜ ଅଭିଜ୍ଞତାରୁ ଜାଣିଥିଲେ ଓ ସେହି ଅନୁସାରେ ନିଜ ବିଦ୍ୟାଳୟରୁ ଜଣେ ଦୁଇଜଣକୁ ପ୍ରତି ବର୍ଷ ପ୍ରସ୍ତୁତ କରିବାରେ ଲାଗିଲେ । ବିଦ୍ୟାଳୟ ପରିର୍ଦ୍ଦଶକଙ୍କ ପାଖରେ ମଧ୍ୟ ତାଙ୍କର ଖାତିର ଥାଏ । ବିଦ୍ୟାଳୟରେ ଦିବେଳା ପଢ଼ା । ସକାଳୁ ଯାଇ ୭ଟା/୮ଟା ବେଳକୁ ପଖାଳ ଖାଇବା ଛୁଟି । ପୁଣି ଯାଇ ୧୧/୧୨ଟା ଯାଏ ପାଠ । ଉପରବେଳା ଛାଇ ଲେଉଟିଲେ ଯାଇ ବେଳ ବୁଡ଼ିବାଯାଏ । ବୃତ୍ତି ପରୀକ୍ଷାକୁ ଯିବା କଥା ଉଠିଲାରୁ ସଞ୍ଜବୁଡ଼େ ଡ଼ିବିରି ଆଲୁଅରେ ମାଷ୍ଟରଙ୍କ ପାଖରେ

ଘଣ୍ଟେ ଅଧେ ପାଠ ପଢ଼ା ନିଦ ଘାରି ଟଳି ପଡ଼ିବା ଯାଏ ।କିରୋସିନି ଦିପ୍ରକାର ମିଳେ ସଫା ଓ କଳା ଲଣ୍ଠନରେ ସଫା ଟିକେ ବେଶ ନିର୍ମଳ ଆଲୁଅ ଦିଏ । ଡ଼ିବିରିରେ କଳା ଆଲୁଅ ପୁଣି ଧୂଆଁ । ପରେ ଚତୁର୍ଥ ଶ୍ରେଣୀରେ ମୋର ବଡ଼ ଜେଜେମା ଯାହା ପାଖରେ ମୁଁ ରାତିରେ ଶୁଏ, କହିଲା- ମାଆ ସରସ୍ୱତୀ ପାହାନ୍ତାରେ ଘରଘରବୁଲି ପାଠପଢୁଆ ଦେଖି ପାଠ ଦେଇଥାନ୍ତି । ସେଥିପାଇଁ ମୁଁ ପରୀକ୍ଷା ଆଗରୁ ପାହାନ୍ତାରେ ଉଠି ଡ଼ିବି ଆଲୁଅରେ ସକାଳ ଯାଏ ପଢ଼େ । ବିଦ୍ୟାଳୟରେ ସକାଳ ଉପସ୍ଥିତି ପାଇଁ ଛାତ୍ରମାନଙ୍କ ମଧ୍ୟରେ ପ୍ରତିଯୋଗିତା ଥାଏ । ଯେ ଆଗ ପହଞ୍ଚିବ ଶୂନ । ତା'ହାତରେ ବେତ ଖାଲି ଛୁଆଁଇ ଦିଆଯାଏ । ସେହି କ୍ରମରେ ସଂଖ୍ୟା ଶେଷ ଯାଏ ବେତମାଡ଼ । ଅବଶ୍ୟ ବେତ୍ରାଘାତ ନାମମାତ୍ର ହୁଏ । ବିଦ୍ୟାଳୟ ପରିଦର୍ଶକ ବର୍ଷକ ଭିତରେ ଥରେ ଦିଥର ଆସି । ଛାତ୍ରମାନଙ୍କର ପୂର୍ବାର୍ଜିତ ଜ୍ଞାନ ପରୀକ୍ଷା କରି ଶିକ୍ଷକଙ୍କର ଦକ୍ଷତା ମାପ କରନ୍ତି । ତାଙ୍କର କର୍ମ କ୍ଷେତ୍ର ବାଲିକୁଦା ଥାନା ସୀମା । ଅଳ୍ପ କେତୋଟି ମଞ୍ଜୁରିପ୍ରାପ୍ତ ଜିଲ୍ଲାବୋର୍ଡ଼ ପରିଚାଳିତ ବିଦ୍ୟାଳୟ ଥାଏ । ତାଙ୍କର ଅଫିସ କାମ କରିବାକୁ କିରାଣି ନ ଥା'ନ୍ତି । ବଡ଼ମାଷ୍ଟ୍ରେଏହି ଦାୟିତ୍ୱ ଭଲଭାବେ ନିଅନ୍ତି । ବରଷକୁ ଥରେ ସାଲତମାମି ବାର୍ଷିକ ବିବରଣୀ ପଠାଯିବା ବେଳେ ସେ ଏକାଧିକ ଦିନ ତାଙ୍କୁ ସାହାଯ୍ୟ କରିବାକୁ ଯାଆନ୍ତି । କ୍ରମେ ସେ ତାଙ୍କର ସହାୟକ ମଧ୍ୟ ନିଜେ ତାଲିମ କରାଇଲେ । ତାଙ୍କ ଦାୟିତ୍ୱ କମିଗଲା ।

୧୯୩୧ ମସିହାର ଗୋଟିଏ କଥା ମନେପଡୁଛି, ଦିନେ ଗାଁର ଚଉକିଦାର ଭଗିମାଳିକ ଘର ଘର ବୁଲି ଶୁଣାଇଲେ ସମସ୍ତେ ଘର ବାଟ ମୁହଁ ବାଁ ପାଖରେ ହାତେ ଲମ୍ବ ହାତେ ଓସାରର ବନମାଟିରେ ଗୋବରଦେଇ ଲିପି ତା ଉପରେ ଚୂନ କି ପିଠଉ ଲଗେଇବେ । ତା ଉପରେ ସରକାର ଲୋକ ଆସି ଲେଖିବେ । ଏହା ନ କଲେ, ଲେଖା ଲିଭାଇ ଦେଲେ ଛଅମାସ ଜେଲଦଣ୍ଡ । ଚଉକିଦାର ଗାଁରେ ରାଜଶକ୍ତିର ପ୍ରତୀକ । ତାଙ୍କୁ ସରକାର ମଧ୍ୟ ଚାକିରି ସାଙ୍ଗରେ ନେଳିଆ ପଗଡ଼ି ଓ ନେଳିଆ ଅଣ୍ଟା ପଟି ଉପରେ ଢ଼ିଲା ପୋଷାକ ଦେଇଛି । ସେ ପ୍ରତି ସପ୍ତାହରେ ଥରେ ଯାଇ ଥାନାରେ ହାଜିରା ଦିଅନ୍ତି । ବାଲିକୁଦା ଫାଣ୍ଡି ଥିଲା । ଅଳ୍ପ କେତେ ବରଷ ହେଲା ଥାନା ହୋଇଛି । ଜଣେ ମୁନସି S.I ଜଣେ ଜମାଦାର ASI ୩/୪ ଜଣ ଲାଲ ପଗଡ଼ିଆ

ସିପାହି ନେଇ ସେମାନେ ବିରାଟ ଭୂଖଣ୍ଡରେ ଶାନ୍ତି ଶୃଙ୍ଖଳା ଦାୟିତ୍ୱ ତୁଲାଇବାକୁ ପ୍ରସ୍ତୁତ । ଗାଁରେ ଚଉକିଦାର ସେମାନଙ୍କର ଚର । ଗାଁର ହାନିଲାଭ, ଜନ୍ମମୃତ୍ୟୁ, ଅଜଣା ଲୋକ ଯିବା ଆସିବା, ଚୋରି, ଦାରି, ପାପଗର୍ଭ, ଭ୍ରୁଣହତ୍ୟା ଆଦି ଯାବତୀୟ ଅପରାଧ ସେ ଥାନାରେ ଜଣାଇ ଥାଆନ୍ତି । ଅସହଯୋଗ ଆନ୍ଦୋଳନବେଳେ କେଉଁମାନେ ଏଥି ପ୍ରତି ଆଗ୍ରହୀ ବାହାରୁ କିଏ ଆସି ତାଙ୍କୁ ଉସୁକେଉଁଛି ଏ ସବୁ ମଧ୍ୟ ଜଣାନ୍ତି । ଥାନାରେ ହାଜିରା ଦେଲେ ବାବୁଙ୍କର କାଠହଣା ପାଣି ବୁହା, ବଗିଚା, ଗାଈ ଗୋରୁକାମ ଦାୟୀତ୍ୱ ତାଙ୍କର । ସଞ୍ଜବେଳକୁ ଗାଁକୁ ଫେରନ୍ତି । ମାସକୁ ପାଆନ୍ତି ୪/୫ ଟଙ୍କା ଆଗେ ଦରମା ଥାନାବାବୁଙ୍କ ଜରିଆରେ ଦେବାର ବ୍ୟବସ୍ଥା ଥିଲା । ଆପତ୍ତି ହେଲା ସେମାନେ ନ ବାଣ୍ଟି ଏହା ଆତ୍ମସାତ କରୁଛନ୍ତି । ବିହାର ଓଡ଼ିଶାର ଗୋଟିଏ ଚଉକିଦାର ଆଇନ ଥାଏ । ସେହି ଅନୁସାରେ ଟିକସ ଆଦାୟ ହୁଏ । ଗାଁରେ ଚାଷୀମାନଙ୍କଠାରୁ ଏହି ଟିକସ ବାର୍ଷିକ ଅସୁଲ ହୁଏ । ସର୍ବନିମ୍ନ ସର୍ବୋଚ୍ଚ ମଧ୍ୟ ଧାର୍ଯ୍ୟ ଅସୁଲ ପାଇଁ । ଗାଁ ଗୁଡିକ ଇଉନିଅନରେ ବନ୍ଧିତ ଥାଏ । ଆଜିକାଲିର ଗ୍ରାମପଞ୍ଚାୟତ ପରି । ପ୍ରତ୍ୟେକରେ ଜଣେ ଇଉନିଅନ ପ୍ରେସିଡେଣ୍ଟ ଥାଆନ୍ତି । ତାଙ୍କର ମନୋନୟନ କରଦାତା ମାନଙ୍କ ପରାମର୍ଶକରି ସବ କଲେକ୍ଟର କରନ୍ତି । ନିଷ୍କଳଙ୍କ ଚରିତ୍ର ରାଜଭକ୍ତ ସଦକୁଳଜଃ ଦେଖି ଏହାକୁ ମର୍ଯ୍ୟାଦାବନ୍ତ ଭାବେ ନିଯୁକ୍ତି ଦିଆଯାଏ । କେତେଗୋଟି ଗାଁର ଚଉକିଦାର ଟିକସ ଅସୁଲକୁ ଜଣେ ଦଫାଦାର ଥାନ୍ତି । ବଡ ଇଉନିଅନରେ ଏକାଧିକ ଥାଆନ୍ତି । ତାଙ୍କ ଦ୍ୱାରା ଅସୁଲ ଟିକସ ଖଜଣାରେ ଜମା ହୋଇ ସେଇଥିରୁ ଚଉକିଦାର, ଦଫାଦାରଙ୍କ ଦରମା ଦିଆଯାଏ । ସରକାର ବେଶି କମ୍ ଭରଣା କରନ୍ତି । ଚଉକିଦାରଙ୍କର ତ୍ରୈମାସିକ ପରେଡରେ ସବକଲେକ୍ଟରଙ୍କ ପକ୍ଷରୁ ଜଣେ ସବ ଡେପୁଟି ଆସି ସେମାନଙ୍କର ଦରମା ଦେଇ ପ୍ରାପ୍ତିସ୍ୱୀକାର ଲେଖାଇ ରଖନ୍ତି । ଏହି ଅବସରରେ ଉକ୍ତ ଅଧିକାରୀ ତାଙ୍କର ଅନ୍ୟାନ୍ୟ ଇନକୁଆରି ମଧ୍ୟ ସଂପନ୍ନ କରନ୍ତି । ଅସହଯୋଗ ଆନ୍ଦୋଳନବେଳେ ଯୁଦ୍ଧ ଲାଗିଲା ପରେ ଏହି ରାଜଭକ୍ତ ଅଧିକାରୀମାନଙ୍କର ଗ୍ରାମ ଦାୟିତ୍ୱ ବହୁଗୁଣ ବଢ଼ିଯାଏ ଗାଁରେ ବାହାବ୍ରତ ଉତ୍ସବ, ଯାନିଯାତ୍ରାରେ ଚଉକିଦାରକୁ ନିମନ୍ତ୍ରଣ (ଖବରଦେଇ) । ବାହା, ବ୍ରତ ଆଦିରେ ସେ ଦରକାର । ବର ଶୋଭାଯାତ୍ରାରେ ଶାନ୍ତି ଶୃଙ୍ଖଳା ରକ୍ଷା କରନ୍ତି ଅନ୍ୟ ଗାଁକୁ ଯିବାର ଥିଲେ । ଖିଆ ପିଆ ପାଇଁ ସେ

କଦଳୀପତ୍ର ଭିନ୍ନ ଭିନ୍ନ ବାରିରୁ ସଂଗ୍ରହ କରି ଠିକବେଳେ ଆଣି ପହଞ୍ଚାନ୍ତି । ଭୋଜିରେ ଭାଗୀ ହୁଅନ୍ତି । ସ୍ଥଳ ବିଶେଷରେ କିଛି ଘରକୁ ବି ନିଅନ୍ତି । ଦାଣ୍ଡ ବାଟ ମୁହଁ ଲିପା ହୋଇଥିଲା ଜନଗଣନା ପାଇଁ । କେତେଲୋକ ନିଯୁକ୍ତି ପାଇଥାନ୍ତି । ସେମାନେ ଆସି ଘର ନମ୍ବର ଆଦି ତା ଉପରେ ଲେଖିଦେଇଗଲେ । ପୁଣି ଗୋଟାଏ ଦିନ ଏକା ସମୟରେ ସବୁଆଡେ ସଂଖ୍ୟା ଲେଖି ଲୋକମାନଙ୍କର ଗଣନା ନେଲେ । କର୍ତ୍ତବ୍ୟ ନିଷ୍ଠ ଥାନାବାବୁ ଚଉକିଦାରମାନଙ୍କୁ ଆୟତ୍ତରେ ରଖିଥାନ୍ତି । ନଚେତ ନ୍ୟାୟନିଷ୍ଠା ସହାନୁଭୂତି ଶୂନ୍ୟ ଇଉନିଅନ ପ୍ରେସିଡେଣ୍ଟମାନଙ୍କର ଏମାନେ ଛମାଣ ଆଠଗୁଣ୍ଠର ଗୋବରା ଜେନା ପାଲଟି ଯାଆନ୍ତି ।

୧୯୩୧ ନଭେମ୍ବର ମାସ ପ୍ରଥମ ସପ୍ତାହ ହେବ । ମୋର ବୟସ ନଅପୁରା ହୋଇନଥାଏ । ନଅବର୍ଷ ନ ହେଲେ ବୃତ୍ତି ପ୍ରତିଯୋଗିତାକୁ ଯିବାକୁ ଅଯୋଗ୍ୟ । ତେଣୁ ମୋର ଜନ୍ମ ୧୯୨୨ ନଭେମ୍ବର ୨୫ ହେଲେ ମଧ୍ୟ ତାକୁ ପଛେଇ ମାର୍ଚ୍ଚ ୩୧ ତାରିଖ ୧୯୨୨ କରି ଲେଖାଗଲା । ସେଇ ମାସରେ ଆମେ ବିଭିନ୍ନ ବିଦ୍ୟାଳୟରୁ ୮/୧୦ ଜଣ ଛାତ୍ର ପରୀକ୍ଷା ଦେଲୁ । ପରିଦର୍ଶକ ଅଫିସ ଘର ଆଗ ପଡ଼ିଆରେ ଜଣେ ବାଳକ ଜଣେ ବାଳିକା ବଛାଗଲେ । ସେମାନେ ଡ଼ିସେମ୍ବରରେ ଜଗତସିଂହପୁର ଯାଇ ସେଠାରେ ବୃତ୍ତି ପରୀକ୍ଷା ଦେବେ । ବାଳକଭାବରେ ମୁଁ ବାଳିକାଭାବରେ ଅଳାଭରର ହେମଲତା ଦେଇ (ସ୍ୱାଇଁ) । ବାଲିକୁଦା ଅନ୍ୟ କେନ୍ଦ୍ରରୁ ଆଉସବୁ କିଏ ବଛାଯାଇଥିଲେ । ଶେଷରେ ପରୀକ୍ଷା ଜଗତସିଂହପୁର ମାଇନର ସ୍କୁଲ କୋଠା (ବର୍ତ୍ତମାନ ବାଳିକା ହାଇସ୍କୁଲ)ରେ ହେଲା । ତା' ପୂର୍ବଦିନ ରାତିରେ ବଡ଼ମାଷ୍ଟ୍ରେ ଓ ବାପା ମୋତେ ଗୋଟିଏ ଟାଟିଲଗା ଶଗଡ଼ରେ ବସାଇ ରନ୍ଧାବାସନ, ଚାଉଳ, ଡ଼ାଲି, ଚୂଡ଼ା, ନଡ଼ିଆ, ଗୁଡ଼ ଆଦି ଧରି ଗାଁରୁ ୧୭/୧୮ କିଲୋମିଟର ବାଟ ଯାଇ ସେଠାରେ ଗୋଟିଏ ଚଟିଘର ଦିନକ ପାଇ ଭଡ଼ାନେଇ ରହିଲେ । ସକାଳୁ ଉଠି ମୁଁ ପ୍ରଥମେ ଗୋଟିଏ ସହର ଦେଖିବାର ସୁଯୋଗ ପାଏ । ବାଲିକୁଦା ଅପେକ୍ଷା ଏହା ଆୟତନରେ ବଡ଼ । ବାଲିକୁଦାକୁ ଜଗତସିଂହପୁରରୁ ଖରାଦିନେ କେବେ କେବେ ଯାତ୍ରୀ ଧରି ଗୋଟିଏ ବସ ଆସେ ମାତ୍ର ସେଇଠି ଦିନକୁ ୪/୫ ଖଣ୍ଡ ଯିବାଆସିବା କରୁଥାଏ । ବାଲିକୁଦାରୁ କଚା ରାସ୍ତା । ଖରାଦିନେ ଶଗଡ଼ ଯାଏ ଭଲରେ ମାତ୍ର ବରଷାଦିନ

ହେଲେ ଚିକିଟା ଗହିରମାଟିରେ ପହିଆ ଦବି ଯାଏ । ବଳଦଟାଣିବା କଷ୍ଟ । ପାକନପୁର ଢ଼ିଅସାହି ଆଗର ଗହୀର ଏସବୁ ସକାଶେ କୁଖ୍ୟାତ ଥାଏ । ଜଗତସିଂହପୁରର ଚଉଡ଼ା କେନାଲରେ ପାଣି ଦିକୁଳ ଖାଇ ବୋହିଯାଉଥାଏ । ଦୋକାନ ବଜାର ବେଶି । ନାନା ପ୍ରକାରର ଷ୍ଟେସନାରୀ ବହି କାଗଜ କଲମ ଦୋକାନ । ଜଳଖିଆ ଅନେକ ପ୍ରକାରର । ଖୁଣ୍ଟରେ ତାର ଲଗାହୋଇ କଟକ ଆଡୁ ଆସିଛି । ତାକୁ ଦେଖି ପଚାରିବୁଝେ ତାହା ଟେଲିଗ୍ରାଫ । ତାର କଟକରୁ ଆସିଛି । ଜରୁରି ଖବର ଥିଲେ ଏଇ ତାର ଲାଇନରେ ଟରେଟକ୍କା କରି ଚିହ୍ନ ଆସି ବାର୍ତ୍ତାକଣ ତାହା ଅର୍ଥ କରାଯାଏ ତାର ବାର୍ତ୍ତା ବଣ୍ଟାଯାଏ । ବାଲିକୁଦାକୁ ଟେଲିଗ୍ରାମ କାହାର ଥିଲେ ଏଠାକୁ ଆସି ତାହାପରେ ଡ଼ାକଯୋଗେ ତା ପାଖକୁ ଯାଏ । ଜଗତସିଂହପୁରରେ ବଡ଼ ଡ଼ାକଘର । ଏଇଠୁ ମେଲ ମଟରଗାଡ଼ିରେ ସନ୍ଧ୍ୟାବେଳେ କଟକ ଯାଏ । ସେଇଠୁ ରେଳରେ ଚାରିଆଡ଼େ ପଠାଯାଏ । ବାଲିକୁଦା ଛୋଟ ପୋଷ୍ଟଅଫିସ । ଜଣେ ଡ଼ାକ ମୁନସି, ଜଣେ ଡ଼ାକ ପିଅନ ଥାଆନ୍ତି । ସେଠାକୁ ବୋରିକିନା ମାଛଗାଁରୁ ଡ଼ାକ ହରକରା ମୁଣ୍ଡରେ ଡ଼ାକ ଆଣନ୍ତି । ବନ୍ଦ ଥିବା ସିଲକରା ବ୍ୟାଗ ଧରି ପ୍ରତିଦିନ ଦଉଡ଼ି ଦଉଡ଼ି ଆସନ୍ତି । ଆଉ ଜଣେ ଜଗତସିଂହପୁର ନେଇ ମେଲ ଗାଡ଼ିରେ ଦିଏ । ତାଙ୍କର ଖରାକାକର ଶୀତବରଷା କିଛି ନାହିଁ । ଜେଜେ କୁହନ୍ତି ମହାରାଣୀ ଭିକ୍ଟୋରିଆଙ୍କ ଡ଼ାକବାଲାକୁ ବାଘ ବି ନ ଅଟକାଇ ଛାଡ଼ିଦିଏ । ସେଠାରେ ଡ଼ାକଘର କୋଠା ବଡ଼ । ବହୁତ ଲୋକ କାମ କରନ୍ତି । ବଡ଼ ମାଇନର ସ୍କୁଲ । ପୁଣି ଝିଅ ପିଲାଙ୍କର ଗୋଟିଏ ବାଳିକା ନିମ୍ନ ପ୍ରାଥମିକ ସ୍କୁଲ ଥାଏ । ସେଇଠି ସିଲେଇ, ବୁଣାବୁଣି, ପାଠ ସାଙ୍ଗରେ ଝିଅଙ୍କୁ ଶିଖାଯାଏ । ସେମାନେ ଅଙ୍କ ନ କଷିଲେ ଚଳେ । ବଦଳିଆ ପାଠ ତାଙ୍କର ଥାଏ । ଗାଧୋଇ ଜଳଖିଆ ଖାଇ ବଡ଼ମାଷ୍ଟ୍ରଙ୍କ ସାଙ୍ଗେ ପରୀକ୍ଷା କେନ୍ଦ୍ରକୁ ଯାଇ ଦଶଟା ପୂର୍ବରୁ ହାଜର । ଛପାପ୍ରଶ୍ନ ଆସିଥାଏ । ଆଗରୁ ସେମିତି ଛପା ପ୍ରଶ୍ନ କାଗଜ ଦେଖି ନ ଥାଏ । ଦିଥରରେ ପରୀକ୍ଷା ସେଇଦିନ ସରିଗଲା । ଗୋଟିଏ କରଣି ଲେଖା ଦଲିଲ ପଢ଼ିବାକୁ ଦିଆଯାଇଥିଲା । ଯାହା ଲେଖିଥିଲି ତାହା ବତେଇଲି । ବଡ଼ମାଷ୍ଟ୍ରେ ଖୁସି ହେଲେ । ପୁଣି ସେଇ ରାତିରେ ଗାଁକୁ ଲେଉଟି ଆସିଲୁ । ବୋଧହୁଏ ଡ଼ିସେମ୍ବର ବଡ଼ଦିନଛୁଟି ଆଗରୁ ଫଳ ବାହାରିଲା । ତିନିଟଙ୍କାର ମାସିକ ବୃତ୍ତି ମୁଁ ପାଇଲି । ବାଳିକା ବୃତ୍ତି

ହେମ ପାଇ ଗାଁର ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପଢ଼େ ।

ଆମ ଇଷ୍ଟଦେବତା ଗଦାଧର ମହାପ୍ରଭୁ । ବାପା ମନ ଆନନ୍ଦରେ ବଡ଼ମାଷ୍ଟ୍ରଙ୍କ ପରାମର୍ଶରେ ଏହି ଉପଲକ୍ଷେ ପ୍ରସାଦ କରିବାକୁ ଚାହିଲେ ମାତ୍ର ଦିଅଁଙ୍କ ମାଫେଡଦାରଙ୍କ ମଧ୍ୟରୁ ଜଣେ ଯୋଗିବାବୁ ଏଥିପାଇଁ ଅନୁମତି ଦେଲେ ନାହିଁ । ତାଙ୍କର ଆପତ୍ତି ଥିଲା ତାଙ୍କ ପୁଅ ନବକିଶୋର (ଅକାଳରେ ମୃତ) ମୋ ସାଙ୍ଗରେ ଏକା ଶ୍ରେଣୀରେ ପଢୁଥିଲା । ତାକୁ ବୃତ୍ତି ପାଇ ନ ବାଛି ବଡ଼ମାଷ୍ଟ୍ରେ ମତେ ବାଛି ବୃତ୍ତି ଦିଆଇଲେ । ଦୁଇଜଣଙ୍କର ବ୍ୟକ୍ତିଗତ ସଂପର୍କ କେଉଁ ମଧୁର ନଥିଲା । ତାଙ୍କର ଧାରଣା ଯେ ଶିକ୍ଷକ ଇଚ୍ଛା କଲେ ଜଣେ ପିଲାଙ୍କୁ ବୃତ୍ତି ଦେଇପାରିବେ । ଏହା ଅନେକଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କଲା । ତେଣୁ ଠାକୁରଙ୍କ ପାଖରେ ଭୋଗଦେବା ହୋଇପାରିଲା ନାହିଁ । ବିଦ୍ୟାଳୟ ପରିଦର୍ଶକ (S.I) ଙ୍କୁ ମୁଁ କୃତଜ୍ଞତା ଜଣାଇବାକୁ ଦିନେ ବଡ଼ମାଷ୍ଟ୍ରଙ୍କ ସହିତ ଯାଇ ଦେଖାକଲି । ଦନ୍ତଳ କଦଳୀ, ଘଡ଼ିରେ କିଛି ଘିଅ, ଅରୁଆ ଚାଉଳ, ପାଟଜପୁରା କଦଳୀ ପ୍ରଣାମୀ (ଦର୍ଶନୀ) ସ୍ୱରୂପ ଦେଲି । ସେ ଖୁସି ହେଲେ । ମାତ୍ର ୧୯୫୦ ମସିହାରେ ସେହି ଶ୍ରୀରାମଚନ୍ଦ୍ର ଘୋଷ BALT କଣ୍ଟାବାଞ୍ଜି (ବଲାଙ୍ଗିର ଜିଲ୍ଲା)ରେ ଡ଼େପୁଟି ସ୍କୁଲ ଇନ୍ସପେକ୍ଟର ଓ ମୁଁ ତହସିଲଦାର ମାଜିଷ୍ଟ୍ରେଟ ୧ମ ଶ୍ରେଣୀ ଥିବାବେଳେ ମୋର ପରିଚୟ ଦେବାକୁ ପୂର୍ବଦେଖା ମନେ ପକାଇଲି । ସେ କେମିତି ଅସ୍ୱସ୍ତି ବୋଧ କଲେ । ତେଣୁ ମୁଁ ମଧ ତାଙ୍କୁ ଅଜଣା ବ୍ୟକ୍ତିପରି ବ୍ୟବହାର କଲି । ୧୯୪୮ ରେ ପାଟଣା ଗଡ଼ଜାତ ମିଶ୍ରଣର ଅଳ୍ପଦିନ ପରର ଏକଥା ।

କଣିଆଁ ନିମ୍ନ ପ୍ରାଥମିକ ବିଦ୍ୟାଳୟରୁ ଶିକ୍ଷକଙ୍କ ନିଷ୍ଠାଯୋଗୁ ପ୍ରାୟପ୍ରତିବର୍ଷ ମୋପରି ଅନ୍ୟ ବୃତ୍ତିଧାରୀ ବାହାରିଲେ । ଜୀବନରେ ମୁଁ ପ୍ରଥମ ଋଣି ଜନ୍ମଦାତା ବାପାମାଆଙ୍କୁ ଛାଡ଼ିଦେଲେ ଏଇ ବଡ଼ ମାଷ୍ଟରଙ୍କ ପାଖରେ । ତାଙ୍କ ଜ୍ୟେଷ୍ଠପୁତ୍ର ବଟକୃଷ୍ଣ ଗାଁରୁ ପ୍ରଥମ ଓଡ଼ିଶା ଇଂଜନିଅରିଂ ସ୍କୁଲ କଟକରୁ ଚାରିବର୍ଷ ବୈଷୟିକ ଟ୍ରେନିଂପ୍ରାପ୍ତ ଯୁବକ । ସେ ବି.ଏନ.ଆର.ରେ ଚାକିରି ପାଇଲେ । ରେଲବାଇ ବିଭାଗରୁ ଅବସର ନେଲେ । ତାଙ୍କର କନିଷ୍ଠ ସନ୍ତାନ ଶଚିଦାନନ୍ଦ (ସାଭଉ) ଗାଁର ପ୍ରଥମ MBBS ଡ଼ାକ୍ତର । ପ୍ରଥମ ଶ୍ରେଣୀ ଚାକିରିରୁ ଅବସର ନେଇ ଏବେ ବ୍ରହ୍ମପୁରର ବାସିନ୍ଦା, ସେମିତି ପ୍ରାଣକୃଷ୍ଣଙ୍କର ଜ୍ୟେଷ୍ଠପୁତ୍ର ଗାଁର ପ୍ରଥମ ଇଂଜିନିଅର । ନିର୍ବାହୀ ଇଲେକଟ୍ରିକ ଇଂଜିନିଅରି

ଥାଇ ଓଡ଼ିଶା ସରକାରରୁ ଇସ୍ତଫା ଦେଇ ହିନ୍ଦୁସ୍ଥାନ ଷ୍ଟିଲରେ ଯୋଗଦେଲେ । ଭିଲାଇ ଷ୍ଟିଲପ୍ଲାଣ୍ଟର ଡ଼େପୁଟି ଚିଫଇଂଜିନିଅରରୁ ଅବସରନେଇ ମଧ୍ୟପ୍ରଦେଶ ରାୟପୁର ଭିଲାଇରେ ରହୁଛନ୍ତି । ଦ୍ୱିତୀୟ ଅଦ୍ୱୈତ ଗାଁରୁ ପ୍ରଥମ ଉଚ୍ଚତର ଶିକ୍ଷାପାଇ ବିଦେଶ ଯାଇଥିଲେ କାଗଜ ବୈଷୟିକ ଜ୍ଞାନ ଶିକ୍ଷା ଉଦ୍ଦେଶ୍ୟରେ । ବିଭିନ୍ନ କଂପାନିରେ କାର୍ଯ୍ୟରତ ଥାଇ ଅବସରପରେ ଭୁବନେଶ୍ୱରରେ ଅବସ୍ଥାପିତ ।

୧୯୩୨ ଜାନୁଆରି ମାସରେ ମୁଁ ବାଲିକୁଦା ମାଇନର ସ୍କୁଲରେ ୪ର୍ଥ ଶ୍ରେଣୀରେ ନାମ ଲେଖାଇଲି । ମନରେ ବଡ଼ ଗର୍ବ ହେଲା ଯେତେବେଳେ ଫାଷ୍ଟବୁକ ଧରି ଏବିସିଡ଼ି ଇଂରାଜି ଅକ୍ଷର ଚିହ୍ନିଲି । ଅକ୍ଷର ଲେଖିଲି । ମୋର ୪ର୍ଥ ଶ୍ରେଣୀରେ ନାମଲେଖାଇ ପାଠ ପଢ଼ା ଆରମ୍ଭ ପରେ ଜେଜେଙ୍କର ମୃତ୍ୟୁ ମୋ ପାଇ ବଡ଼ ଦୁଃଖଦ ହେଲା । ସେ ବାପାଙ୍କ ନିଜ ବାପା ନ ଥିଲେ । ତାଙ୍କ ବାପା ବୋଉ ତାଙ୍କ ଜନ୍ମର ଅଳ୍ପଦିନପରେ ମରିଗଲେ । ଜେଜେ ତାଙ୍କୁ ଲେଖା ପଢ଼ା ଶିଖାଇ ପାଳିଥିଲେ । ମୁଁ ମଧ୍ୟ ଏହା ଜାଣି ନ ଥିଲି । ମୋର ଡ଼ାକ ନାମ କାଳିଆ । ଘରେ ବାପାବୋଉ ଓ ଅନ୍ୟମାନେ ଡ଼ାକନ୍ତି ବାଇଆ । ମାତ୍ର ସେଇ ଏକମାତ୍ର ଯେ ମତେ ବିଷ୍ଣୁ ଡ଼ାକନ୍ତି । ତାଙ୍କର କଣ ରୋଗ ହେଲା ପେଟ ଫୁଲିଗଲା । ତାଙ୍କୁ ନେଇ ଗୋଟିଏ ପଥର କୁଣ୍ଡରେ ପାଣି ପୁରାଇ ବସାଇଲେ । ମୋର ସ୍କୁଲଯିବା ଇଚ୍ଛା ନ ଥାଏ ମାତ୍ର ଡ଼ରେଇ ଦେଲେ ଦିନେ ନ ଗଲେ ବି ବୃତ୍ତି କଟିଯିବ । ବାଧହୋଇ ଗଲି । ତାଙ୍କ ଅବସ୍ଥା ବେଶି ଖରାପ ହେଲା । ସେ ଖାଲି ବିଷ୍ଣୁ ଆସିଲା ଆସିଲା ଏମିତି ଖୋଜି ଖୋଜି ଶେଷକୁ ବିଷ୍ଣୁ ବିଷ୍ଣୁ ହୋଇ ଜୀବନ ଛାଡ଼ିଲେ । ସମସ୍ତେ କହିଲେ ନାଁ ଦେଇଥିଲେ ସେମିତି ଡ଼ାକି ଡ଼ାକି ସ୍ୱର୍ଗକୁ ଯିବାକୁ । ତାଙ୍କୁ ନେଇ ଶ୍ମଶାନରେ ସତ୍କାର କଲେ । ମୁଁ ଯାଇ ଖଣ୍ଡେ କାଠ ସେଥିରେ ପକାଇଲି । ପାଠପଢ଼ା ଛଡ଼ା ଅନ୍ୟ ସମୟରେ ସେ ମୋର ଅତି ନିକଟତମ ଥିଲେ । ମୋର ଯାହା ଅଭାବ ସେ 'ମୋ ପିନିସିନି ପାଇ ଗଲେ ତତେ ଆଣିଦେବି' କହି ବୋଧଦିଅନ୍ତି । ଏହି ସମୟରେ ତାଙ୍କ ନିଜ ପୁଅ ରାଘବାନନ୍ଦଙ୍କର (ମୋ ଧଡ଼ିଆ ଦାଦି) ଗୋଟିଏ ପୁଅ କେଇ ମାସର ହୋଇଥାଏ । ଆଜନ୍ମ ବ୍ରହ୍ମଚାରୀ । ସେ ରେଳ ଡାକସେବା ବିଭାଗର କର୍ମଚାରୀ ଓ ଶ୍ରମିକ ନେତା ଥାଇ ଅବସର ପରେ ଏବେ କଟକ ଶ୍ରୀ ବିଜୟ କୃଷ୍ଣ ଆଶ୍ରମର ବାବା ବଂଶୀଧର (ବୁଢ଼ାବାବା) । ଦାଦି କିଛି କାମ

କରିବାକୁ ଆଗ୍ରହୀ ନଥା'ନ୍ତି । ତାହାଲି କରି ପାଠ ପଢ଼ାଇଲେ ନିଜେ ଖାଇ ଅନନ୍ଦରେ ରହିଯାନ୍ତି । ଘର ଦାୟିତ୍ୱ ଭୁଲିଯାନ୍ତି । ବାପା ତାଙ୍କଠାରୁ ଅଲଗା ରୋଷେଇ ବାସ କଲେ । ମାତ୍ର ସେସବୁ ଦାୟିତ୍ୱ ଖସାଇ ବାଲେଶ୍ୱର ଚାଲିଗଲେ । ପାହିଅଷ୍ଟି ଲଙ୍ଗଳେଶ୍ୱର ବୋଲି ଗୋଟିଏ ଗାଁରେ ଚାଟଶାଳି କରି ରହିଗଲେ । ଗୋଟିଏ ପୁଅ ଓ ଝିଅଙ୍କୁ ନିଜ ବାପ ଘର ସାହାଯ୍ୟନେଇ ଖୁଡ଼ି କେତେଘର ରନ୍ଧାବଢ଼ା କରି ପୋଷି ପାଳି ମଣିଷ କଲା । ତାହା ଅଜିକାଲି ବିଶ୍ୱାସ କରି ହେବ ନାହିଁ । ବାପାଙ୍କର ମୁଁ ବିଦେଶ ଗଲାପରେ ପୁଅଟି ଅତି ଆଦରର ହୋଇଗଲା । ଅଭାବୀ ସଂସାରରେ ସବୁ ଘଟେ । ଏ ବିଧାତାର ଘଟଣ ।

ବାଲିକୁଦା ମାଇନରସ୍କୁଲ ଦଶଟାରୁ ଚାରିଟା ପ୍ରତିଦିନ ହୁଏ । ମଝିରେ ଗୋଟାଏ ବେଳକୁ ଖେଳଛୁଟି । ଶନିବାର ଅଧା ଛୁଟି । ରବିବାର ଦିନଟା ଛୁଟି । ଗାଁ ସ୍କୁଲକୁ ଯିବାପରି ଦିନକୁ ୩ଥର ଯିବାକୁପଡ଼େ ନାହିଁ । ପଖାଳ ଶାଗ ନ ହେଲେ ଭାତ କି ଶାଗ ବାଇଗଣ ପୋଡ଼ା କି ଭଜା ସହିତ ଖାଇ ତରବର ହୋଇ ସାଙ୍ଗମାନଙ୍କ ସହିତ ଯିବାକୁ ପଡ଼େ । ଅନେକ ପାଖ ଆଖ ଗାଁରୁ ପିଲା ଆସନ୍ତି । ମାଛଗାଁ ବୋରିକିନା ପାଖରୁ ୪/୫ ମାଇଲି ଗାଁରୁ ଆସନ୍ତି । ପରୀକ୍ଷା ପାଖ ହେଲେ ଛାତ୍ରବାସରେ ରହିଯା'ନ୍ତି । ସବୁଦିନ ରହିବା ବ୍ୟୟବହୁଳ ଯାହା ସାଧାରଣ ପିତା ମାତା ପକ୍ଷରେ କଷ୍ଟକର । ପରବର୍ତ୍ତୀ କାଳର ମାଛଗାଁ ପାଖ ଓଚିଦାରୁ ପ୍ରଖ୍ୟାତ ଅଧ୍ୟାପକ ଡ଼କ୍ଟର ଶ୍ରୀରାମଚନ୍ଦ୍ର ଦାସ, ଘନଶ୍ୟାମ ଦାସ ଆଇପିଏସ, ଯୋଗେନ୍ଦ୍ର ଦାସ ହେଡ଼ମାଷ୍ଟ୍ର, ଖମ୍ୱାକୁଳ ତିଗିରିଆରୁ କବି ରଜନୀକାନ୍ତ ଦାସ, ତାଙ୍କ ଭାଇ ଅଧ୍ୟାପକ ଡ଼ଃ ସୂର୍ଯ୍ୟକାନ୍ତ ଦାସ, ମୋର ସହପାଠୀ ପ୍ରଥମ ପଶୁଡାକ୍ତର ଗୌରହରି ଦାସ, ଚଅଁରପୁରର ପ୍ରାଥମିକ ଶିକ୍ଷକ ଚକ୍ରଧର ନାୟକ, ଜଗନ୍ନାଥ ନାୟକ ଓ ନାଗପୁର କ୍ଷେତ୍ରମୋହନ ବିଶ୍ୱାଳ, ଉଭୟ ସ୍ୱାଧୀନତା ସଂଗ୍ରାମୀ ଧନିଶ ଘନଶ୍ୟାମ ସାମଲ, ମହେଶ୍ୱର ବିଶ୍ୱାଳ ଗୁଡ଼ପାଇଲେ । ଦୁହେଁ ପ୍ରାଥମିକ ଶିକ୍ଷକ ଓ ଆଉ ଅନେକ ଆସୁଥିଲେ । ପରବର୍ତ୍ତୀ ଜୀବନରେ ସେମାନେ ବିଭିନ୍ନ କ୍ଷେତ୍ରରେ ସୁପ୍ରତିଷ୍ଠିତ । ପ୍ରଧାନ ଶିକ୍ଷକ ରାଜକିଶୋର କାନୁନଗୋ ସୁସାହିତ୍ୟିକ ଥିଲେ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ପ୍ରତିଷ୍ଠିତ 'ନବଭାରତ' ମାସିକ ପତ୍ରିକାରେ ତାଙ୍କ ପ୍ରବନ୍ଧ ପ୍ରକାଶିତ ହୋଇ ଆଦୃତ ହୋଇଥିଲା । ଆଦର୍ଶ ଶିକ୍ଷକ ଭାବରେ ଜଣାଶୁଣା ଯୋଗୁ ଅନ୍ୟ ଆଡୁ

ମଧ୍ୟ ପିଲାମାନେ ଆସି ସ୍କୁଲରେ ନାମ ଲେଖାଇ ଛାତ୍ରାବାସରେ ରହି ଶୃଙ୍ଖଳିତ ଓ ନିଜ କାମ ନିଜେ କରିବା ଶିଖୁଥିଲେ । ସେମାନଙ୍କ ମଧ୍ୟରେ ବ୍ୟବସ୍ଥାପକ ମୁରଲିଧର କାନୁନଗୋ କସ୍ତୁରି ଚରଣ ମଲିକ ଆଇ.ଏ.ଏସ. ଭ୍ରମରବର ଜେନା ତାଙ୍କଭାଇ ଜିଲ୍ଲା ସବ ରେଜିଷ୍ଟର ଦିଗମ୍ବର ଜେନାଙ୍କ ନାମ ମନେ ପଡ଼ୁଛି । ଆମର ଖେଳି ଖେଳି ଗୀତ ବୋଲି ଗପସପ କରି ସାଙ୍ଗମେଳରେ ଗାଁରୁ ରାସ୍ତା ସରିଯାଏ ବିଦ୍ୟାଳୟରେ ପ୍ରବେଶ ଯାଏ । ଦଶଟାରେ ଘଣ୍ଟା ବାଜେ । ପିଟା ଘଣ୍ଟା । ଖୁବ ଦୂରକୁ ମଧ୍ୟ ଶୁଭେ । ପ୍ରତି ପିରିୟଡ଼ ୩୦/୩୫ ମିନିଟ । ତାହା ସରିଗଲେ ପୁଣି ଘଣ୍ଟା ବାଜେ । ପାଠ ପଢ଼ା ସାଙ୍ଗରେ ଡ୍ରିଲ ଖେଳ କୁଦ, ବଗିଚା କାମ ମଧ୍ୟ ହୁଏ । ସେଥିପାଇଁ ସପ୍ତାହରେ ଧରାବନ୍ଧା ପିରିୟଡ଼ ଥାଏ । ବିଦ୍ୟାଳୟରେ ୪ର୍ଥରୁ ୭ମ ଚାରୋଟି ଶ୍ରେଣୀ । ପ୍ରତି ଶ୍ରେଣୀରେ ଛାତ୍ରସଖ୍ୟା ତିରିଶରେ ସୀମିତ । ଚତୁର୍ଥ ଶ୍ରେଣୀରେ ବେଶୀ ନାମ ଲେଖା ହେଲେ ଗୋଟିଏ ଅଧିକ ସେକସନ ହୁଏ ।  ଛାତ୍ରସଂଖ୍ୟା କମିଗଲେ ତାହା ଭାଙ୍ଗିଦିଆଯାଏ । ପ୍ରଧାନ ଶିକ୍ଷକ ରାଜକିଶୋର କାନୁନଗୋଙ୍କ ଘର ଗୋବିନ୍ଦପୁର ଥାନା ଉତ୍ତାରଣ । ଆଇ.ଏ. ପାସ । ଶିକ୍ଷକଭାବେ ସୁନାମ ଥାଏ । ଅନେକ ଦିନ ସେଠାରେ ଥିଲେ । ବହୁତ ମର୍ଯ୍ୟାଦା ପାଉଥିଲେ । ସେ ଇଂରାଜୀ ପଢ଼ାନ୍ତି । ଅନ୍ୟ ଶିକ୍ଷକମାନଙ୍କର ଶିକ୍ଷାଦାନର ମାନ ପରୀକ୍ଷା କରନ୍ତି । ମାଇନର ପରୀକ୍ଷା ପାଇ ପାଞ୍ଚଗୋଟିପତ୍ର । ପ୍ରତ୍ୟେକ ଶହେ ନମ୍ବର ମୋଟ ପାଞ୍ଚଶ । ଇଂରେଜୀ ଶହେ ସାହିତ୍ୟ ଶହେ, ଗଣିତ ଶୁଭଙ୍କରୀ (ତଳ ଶ୍ରେଣୀରେ ତାହା ଥାଏ ମାନସାଙ୍କ) ମିଶି ଶହେ, ଇତିହାସ ଭୂଗୋଳ ମିଶି ଶହେ ଓ ଶେଷରେ ଜ୍ୟାମିତି ସ୍ୱାସ୍ଥ୍ୟରକ୍ଷା ଓ ଡ୍ରଇଂ ମିଶି ୩୦+୪୦+୩୦ ହୋଇ ଶହେ । ମାନସାଙ୍କ ଶାସ୍ତ୍ରର ପ୍ରଣେତା ଶୁଭଙ୍କରୀ । ମାନସାଙ୍କ ପରେ ଏହା ସୁଧକଷା ଆଦି ଗଣିତରେ ସୀମିତ ହୁଏ । ପ୍ରଧାନ ଶିକ୍ଷକଙ୍କ ବାଦେ ଆଉ ୪ଜଣ ଶିକ୍ଷକ । ଆମ ଗାଁର ପୂର୍ଣ୍ଣଚନ୍ଦ୍ର କାନୁନଗୋ ଟ୍ରେନିଂପ୍ରାପ୍ତ ମାଟ୍ରିକ (ସେତେବେଳେ ପାଇ ନ ଥାନ୍ତି) ପଣ୍ଡିତ ନନ୍ଦକିଶୋର ସେନଗୁପ୍ତ ଓ ଭୋଳାନାଥ ଦାସ ଦୁଇଜଣଯାକ ନରମାଲ ଟ୍ରେନିଂ ସ୍କୁଲ କଟକରୁ ଉତ୍ତୀର୍ଣ୍ଣ ହୋଇଥାଆନ୍ତି । ଅଭିଜ୍ଞ ଦୁଇଜଣ ସାହିତ୍ୟ ପଢ଼ାନ୍ତି । ଅନ୍ୟ ବିଷୟ ଆବଶ୍ୟକ ସ୍ଥଳେ ପଢ଼ାନ୍ତି । ୨ୟ ଶିକ୍ଷକ ଇଂରାଜୀ ପଢ଼ାନ୍ତି । ଉପର ଶେଣୀରେ ଇତିହାସ ଓ ଭୂଗୋଳ ଖୁବ ସୁନ୍ଦର ଭାବେ ବାଖ୍ୟା କରି ମାନଚିତ୍ର

ଧରି ପଢ଼ାଇ ପିଲାମାନଙ୍କୁ ପରୀକ୍ଷାର ଯେକୌଣସି ପ୍ରଶ୍ନୋତ୍ତର ପାଇଁ ପ୍ରସ୍ତୁତ କରନ୍ତି । ୫ମ ଶିକ୍ଷକ ଶ୍ରୀଧର ସାହୁ । ଘର ନାଗପୁର । ୨ମାଇଲ ବାଟ । ସେ ସ୍ୱାସ୍ଥ୍ୟରକ୍ଷା ପଢ଼ାନ୍ତି । ଗଣିତରେ ଧୂରନ୍ଧର । ନିମ୍ନଶ୍ରେଣୀରେ ପଢ଼ାନ୍ତି । ସାପ୍ତାହିକ ଡ୍ରିଲ, ଖେଳ ଓ ବଗିଚା କାମ ସେଇ କରାନ୍ତି । ହେଡ୍‌ପଣ୍ଡିତ ମାହାଙ୍ଗାର ଲୋକ । ବାଲିସାହିରେ ବିଦ୍ୟାଳୟ ସାଂପାଦକଙ୍କ ଘରେ ରହନ୍ତି । ଗାଁ ପତିତପାବନ ମନ୍ଦିରର ପ୍ରସାଦ ପାଆନ୍ତି । ସେ ପ୍ରାୟ ୩୦ ବରଷ ସେଇଠି ଥିଲେ । ପରିଡ଼ା ସାହେବଙ୍କଠାରୁ ଆରମ୍ଭ କରି ବାଲିକୁଦା ଓ ଆଖ ପାଖର ଯେ କେହି କୃତବିଦ୍ୟ ତାଙ୍କର ଛାତ୍ର । ସେକେଣ୍ଡ ପଣ୍ଡିତ ବରଡ଼ା ମଧଶାସନର ଲୋକ । ଛାତ୍ରବାସରେ ରହନ୍ତି । ଗୋଟିଏ ମେସ ଚଳାନ୍ତି । ଛୁଟିଦିନ ଦେଖି ଘରକୁ ଯାଆନ୍ତି । ଦିଜଣ ପଣ୍ଡିତ ବ୍ୟାକରଣ ଏମିତି ପଢ଼ାନ୍ତି ଯେ ପରବର୍ତ୍ତୀକାଳରେ ସାହିତ୍ୟର ଶବ୍ଦ ଗଠନ, ଅନ୍ୱୟ, କାରକ, ବିଭକ୍ତି, ସନ୍ଧି ସମାସ ଉପସର୍ଗ ଆଦିରେ ଦଖଲ ଆସେ । ସାହିତ୍ୟ ପାଠରେ କୌଣସି ଅସୁବିଧା ଲାଗେ ନାହିଁ ବରଂ ଶ୍ରେଣୀ ପୁସ୍ତକ ବାଦେ ବାହାରେ ପୁସ୍ତକାଗାର ସାହିତ୍ୟ ପଢ଼ିବାକୁ ଆଗ୍ରହ ସୃଷ୍ଟି ହୁଏ । ଛାତ୍ରାବାସରେ ଦେୟ ଚାଉଳ ଡ଼ାଲି ଆକାରରେ । ତେଲଲୁଣ ଅନ୍ୟ ଖରଚ ଓ ମେସର ପୂଜାରି ପାଇ ଆଠ ଅଣା କି ସେମିତି କିଛି । ସଂନ୍ଧ୍ୟା ହେଲେ ଛାତ୍ରାବାସରେ ସମସ୍ତେ ଲଣ୍ଠନ ଜାଳି ପ୍ରାର୍ଥନା ଶେଷକରି ପଢ଼ନ୍ତି । କିରାସିନ୍ ଦୁଇ ପ୍ରକାର ମିଳେ କଳା ଓ ସଫା । ଲଣ୍ଠନରେ ସଫା କିରୋସିନ୍ ଜଳେ । ନଅଟାରେ ଖାଇବା ସରିଲେ ବିଶ୍ରାମ । କେହି ଯେପରି ବୃଥା ଗପ ନକରେ, ଘୁମାଇ ନପଡ଼େ ତାହା ଦେଖିବାକୁ ପ୍ରଧାନ ଶିକ୍ଷକ କି ତତ୍ତ୍ୱାବଧାରକ ପଣ୍ଡିତ ନଜର ରଖିଥାନ୍ତି । ସକାଳ ବେଳା ନଅଟା ସାଢ଼େ ନଅଟାବେଳକୁ ଖାଇ ସାରି ଶ୍ରେଣୀକୁ ଯାଇ ସାମୁହିକ ପ୍ରାର୍ଥନା ପରେ ବସିବା କଥା । ସକାଳେ ସିଧିଆ ମା ଗୁଡ଼ିଆଣି ମୁଢ଼ି ଲିଆ ମୁଆଁ ଆଣେ । ପଇସା ଦିପଇସାର ଖାଇଦେଲେ ଚଳେ । ଯେଉଁମାନେ ଦିବାଧୟୀ ଖେଳଛୁଟିରେ ତାଙ୍କ ପାଇ ବଜାରରେ ଦୁଇଟା ନାମଦାଦା ଗୁଡ଼ିଆ ଦୋକାନ ଥାଏ-ଗୋଟିଏ ବାଉରି ସାହୁଙ୍କର । ତାଙ୍କ ପୁଅ ଗନ୍ଧର୍ବ ଆମ ସାଙ୍ଗେ ପଢୁଥାଏ । ଆଉ ଗୋଟିଏ ଦୋକାନ । ତାଙ୍କ ପୁଅ ମଧୁ ଆମର ତଳ ଶ୍ରେଣୀରେ ପଢୁଥାଏ । ସେମାନେ ବରା ଗୁଲୁଗୁଲା ସହିତ ରସଗୋଲା, ଜଲପି, ଲଡୁ, ଗୋଲାପଜାମୁ କରନ୍ତି । ବେଳେବେଳେ ପୁରୀ ତରକାରୀ ମଧ ମିଳେ ।

କଲିକତାରୁ ଯେଉଁମାନେ ଚାକିରିରେ ଛୁଟିନେଇ ଘରକୁ ଆସନ୍ତି ବୋରିକିନା ମାଛଗାଁ ଦେଇ ଗାଁକୁ ଯାଆନ୍ତି ସେମାନେ ଏଇଠି ବିଶ୍ରାମ ନେଇ ଜଳଖିଆ କରନ୍ତି । ସ୍କୁଲ ପିଲାଏ ଖେଳଛୁଟିରେ ପଇସାକର ଛାଚି ଖଇ (ଚିନି ପାଗ ଲିଆ) ଓ ପଇସାକର ତେଲଛଣା ବୁଟଭଜା ହେଲେ ମହା ଆନନ୍ଦ । ଦିଜଣଙ୍କର ଏହା ଜଳଖିଆ ହୋଇଥାଏ ମାତ୍ର ପଇସା ଏମିତି ଦୁର୍ଲ୍ଲଭ ଯେ କ୍ୱଚିତ ପିଲା ମାସକେ ୨/୪ ଥର ସେ ସୁଯୋଗ ଉପଭୋଗ କରିପାରନ୍ତି । ଘନଶ୍ୟାମ ଦାସ (ଘନିଆନା) ଓଚିଦା ଘର । ଗଲାବେଳେ ସାଙ୍ଗ ହୋଇ ଯାଉ । ସେ ୧୯୩୩ରେ ମାଇନର ବୃତ୍ତି ପାଇଥିଲେ । ଶ୍ରୀରାମବାବୁ ୧୯୩୧ରେ ଓ ୧୯୩୨ ଆଉ ଜଣେ କିଏ ପାଇଥିଲେ । ସ୍କୁଲର ବୃତ୍ତି ପାଇବାରେ ସୁନାମଥାଏ । ଘନିଆନା IPS ହୋଇ ବଲାଙ୍ଗିରର ପୋଲିସ ସାହେବ । ମୁଁ ସବଡେ଼ପୁଟି । ଟିଟିଲାଗଡ଼ର ୧ମ ଶ୍ରେଣୀ ମାଜିଷ୍ଟ୍ରେଟ । ବଲାଙ୍ଗିର ଯାଇଥିଲି । ତାଙ୍କ ଘରେ ମଧ୍ୟାହ୍ନଭୋଜନ ନିମନ୍ତ୍ରଣରେ ଖାଉଛୁ ଘନିଆନା କହିଲେ ତୋର କଣ କେଜାଣି ମାତ୍ର ମୋର ସେ ବାଲିକୁଦା ବାଉରିସାହୁ ଦୋକାନରେ ଖେଳଛୁଟିରେ ପଇସାକର ଛାଚିଖଇ, ବୁଟଭଜାର ଆନନ୍ଦ ଏ କୌଣସି ଖାଦ୍ୟରେ ମିଳିବ ନାହିଁ । ମୋର ଉତ୍ତର ଥିଲା Hunger is the best sauce ଭୋକିଲା ଭିକାରି ତିଅଣ ନ ଜାଣେ । ଆମର ଦୁଃଖଦ ଅତୀତ ସ୍ମରଣ କରି ଦୁହେଁ ହସିଲୁ । ଘନିଆନା ୨୦୦୮ରେ ସ୍ୱର୍ଗବାସୀ ହେଲେ ପୁରୁଣା ଭୁବନେଶ୍ୱରରେ ରଥଦାଣ୍ଡର ବାସିନ୍ଦା ଭାବରେ । ବୟସ ହୋଇଥିଲା । ତାଙ୍କ ଜୀବନ ଓ କର୍ମ ଶିକ୍ଷଣୀୟ ଓ ମଜାଳିଆ । ତେଣୁ ଲେଖୁଛି । ବାଲିକୁଦାର ମାଇନର ବୃତ୍ତି ପାଇ କଲେଜିଏଟ ସ୍କୁଲରେ ପଢୁଥାନ୍ତି । ହଷ୍ଟେଲରେ ଥାଆନ୍ତି । ଦିନେ ବାଲିକୁଦାରେ ହେଡମାଷ୍ଟର ସମସ୍ତଙ୍କୁ ଶୁଣାଇଲେ ଘନଶ୍ୟାମ ଫେରାର ହୋଇଗଲା । ତେଣୁ ତାର ବୃତ୍ତି କଟିଗଲା । ଆମେ କାହିଁକି ଫେରାର ଜାଣିନଥାଉ । ପରେ ଜଣାଗଲା ଉତ୍ତର ଭାରତରୁ ଆସି କଟକରେ ରହିଥିବା ସ୍ୱେଚ୍ଛାସେବୀ ସଂସ୍ଥାରକ ଗୋଷ୍ଠୀର ଏକ ସାଧୁଦଳରେ ଯୋଗଦେଇ ସେ ହରିଦ୍ୱାର ଆଡେ ଚାଲିଗଲେ । ଆମେ କହିଲୁ ଘନିଆନାକୁ ବାବାଜି ଧରିନେଲେ । ୧୯୪୨ ମସିହା ଜାନୁଆରି କି ଡିସେମ୍ବର ହେବ । ଶୀତଦିନ । ରେଭେନ୍ସା କଲେଜ ହଲରେ ଓଡ଼ିଶା ଆସେମ୍ବ୍ଲି ବସେ । ଅସେମ୍ବ୍ଲି ନ ଥିବାରୁ ବିହାର, ଓଡ଼ିଶା ଓ ମଧ୍ୟ ପ୍ରଦେଶ ଯୁଗ୍ମ ଲୋକସେବା

ଆୟୋଗର ସେଠାରେ ସାକ୍ଷାତକାର ହେଉଥାଏ । ସବଡେପୁଟି ପାଇଁ ମୋର କଲେଜ ୨ୟ ବର୍ଷ । ହଲ ସାମନାରେ ବୁଲୁଛୁ । ସାଙ୍ଗମାନେ ଗପ କରୁଛୁ । ଆମ୍ଭେମାନେ ଏହି ପରୀକ୍ଷା ପାଇ ଆଉ ୩/୪ ବରଷ ପରେ ଏମିତି ଡକରା ପାଇଲେ ଭାଗ୍ୟବାନ ହେବୁ । ଓଡ଼ିଶା ପ୍ରଦେଶ ଗଠନ ପରେ ଜଣେ ଗ୍ରାଜୁଏଟ ପାଇ ସେଇଟା ସେତେବେଳେ ଲୋଭନୀୟ ଚାକିରି ଥାଏ । ହଠାତ୍ ମୋ କାନ୍ଧରେ ଜୋରରେ ଗୋଟାଏ ଚାପୁଡ଼ା ବାଜିଲା । ପଛକୁ ଅନେଇଲି । ଗୋରାତକ ଚେହେରା, ଯେମିତି ମୁହଁରୁ ରକତ ବାହାରୁଛି । ପୁରା ସୁଟ୍ ନେକ୍ ଟାଇ ପିନ୍ଧା ଦେଖି ମୁଁ ଚମକି ଗଲି । ଘାବରେଇ ଗଲି । ସେ କହିଲା କିରେ ବିଷ୍ଣୁ, ମତେ କଣ ତୁ ଚିହ୍ନିପାରୁ ନାହୁଁ । ମୁଁ ତଥାପି କଣ୍ଠ ପରିଚିତ, ମାତ୍ର ସ୍ୱରରେ ଓଡ଼ିଆ ଶବ୍ଦ ଅସ୍ପଷ୍ଟ ଅନୁଚ୍ଚାରିତ ଦେଖି ପରିଚୟ ଅନ୍ଦାଜ ମଧ କରି ପାରିଲି ନାହିଁ । ମୋର ଅବସ୍ଥା ଦେଖି ସେ କହିଲେ ମୁଁ ପରା ଘନିଆ ନନା । ଆହୁରି ଆଶ୍ଚର୍ଯ୍ୟ ହେଲା । କହିଲି ତମକୁ ବାବାଜିମାନେ ଧରି ନେଇଥିଲେ ପରା ? ଏମିତି କୁଆଡୁ ଆସିଲ । କହିଲେ ସେ କଥା ପରେ କହିବି । ଏବେ ସବଡେପୁଟି କଲେକ୍ଟର ନିଯୁକ୍ତି ପାଇ ମୁଲାକତ ଚାଲିଛି । ସେଥିପାଇଁ ଆସିଥିଲି । ମୁଁ ଲାହୋର ବିଶ୍ୱବିଦ୍ୟାଳୟରୁ ଗଣିତରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାସ କରିଛି । ମୋର ଓଡ଼ିଶାର ଶୁଭେଚ୍ଛୁ ଜଣେ ରାୟ ସାହେବ ଲୋକନାଥ ପଟ୍ଟନାୟକ ଡେପୁଟି କଲେକ୍ଟର । ସେ ଲେଖିବାରୁ ଦରଖାସ୍ତ କରି ସାକ୍ଷାତକୁ ଆସିଥିଲି । ତୋତେ ଦେଖି ଖୁସି ହେଲି । ଆଉ କେହି କଲେଜରେ ଆମ ବାଲିକୁଦା ପଢ଼ିବା ବେଳର ସାଙ୍ଗ ନ ଥିଲେ । ଗପ କରିବାକୁ ଲାଗିଲୁ । ତାଙ୍କର ଗୁରୁ ସନ୍ନ୍ୟାସୀ ସଙ୍ଘ ହିମାଚଳ ଉତ୍ତରଖଣ୍ଡ ଆଡେ ବୁଲିବା ଏସବୁ କହିଲେ ନାହିଁ । ତେବେ ପରେ ଜାଣିଲୁ ସେ ଜଣେ ବିଷୟୀ ହେବେ ଜାଣି ସଦ୍‌ଗୁରୁ ତାଙ୍କୁ ଗ୍ରହଣ କଲେ ନାହିଁ । ତାଙ୍କୁ ଘରେ ଛାଡିଦେଇ ଆସିବାକୁ ନିର୍ଦ୍ଦେଶ ଦେଲେ । ତାଙ୍କ ସାଥିମାନେ ପାଠରେ ଆଗେଇ ଯିବେଣି । ସେ ଗଲେ ପାଠ ପଢ଼ିପାରିବେ ନାହିଁ ବୋଲି ଆପତ୍ତି କଲେ । କାନ୍ଦିଲେ । ଦୟାନନ୍ଦ ଆଙ୍ଗଲୋ ବୈଦିକ ସଂସ୍କାର ସଭାପତି ଥାଆନ୍ତି ପଣ୍ଡିତ ମେହେରଚାନ୍ଦ ମହାଜନ ପରେ ସ୍ୱାଧୀନ ଭାରତର ସୁପ୍ରିମକୋର୍ଟ ବିଚାରପତି ସେ ରହନ୍ତି ଲାହୋରରେ । ତାଙ୍କ ପାଖକୁ ଚିଠି ଦେଇ ବାଳକଟିକୁ ପଠାଗଲା । ତାଙ୍କୁ ପରୀକ୍ଷା କରି ମାଟ୍ରିକରେ ନିଆଗଲା । ରହିବା

ପଢ଼ିବାର ସବୁ ସୁଯୋଗ ଯୋଗାଇ ଦିଆଗଲା । ସମୟର ଅତିକ୍ରାନ୍ତ ଓ ବିଶ୍ୱବିଦ୍ୟାଳୟ ପରିବର୍ତ୍ତନ ଫଳରେ ସେ ୧୯୩୮ ପରିବର୍ତ୍ତେ ବରଷକ ଆଗରୁ ପରୀକ୍ଷା ଦେବାକୁ ସକ୍ଷମ ହେଲେ ଓ ତାଙ୍କର କଲେଜିଏଟ ସ୍କୁଲ ସହପାଠୀ (ଓଡ଼ିଶାରେ ଅନେକ କୃତବିଦ୍ୟ ବ୍ୟକ୍ତି)ଙ୍କ ଠାରୁ ସେ ବରଷକ ଆଗରୁ ବିଏ ପାସ କଲେ । ୧୯୪୨ରେ ସବଡେପୁଟି ନିଯୁକ୍ତି ପାଇଲେ । ୧୯୪୬ରେ ମୁଁ କୋରାପୁଟରେ ଅବସ୍ଥାପିତ ହେଉଛି ଜାଣି ସେ ସବ୍‌ଡେପୁଟି ଥାଇ ମୁଁ ଯେପରି ସେଠାରେ ଯୋଗଦାନ କରିବାକୁ କୁଣ୍ଠା ନ କରେ ସେଥିପାଇଁ ଉତ୍ସାହିତ କରି ଗାଁ ଠିକଣାରେ ଚିଠି ଦେଲେ । ପ୍ରଦେଶ ଗଠନର ଦଶ ବରଷ ହୋଇନଥାଏ । ଆମର ଧାରଣା ଜୟପୁର, କୋରାପୁଟ ବଣ ଜଙ୍ଗଲ ବାଘ ଭାଲୁହାତୀ କଲାଜ୍ୱର ଓ ମେଲେରିଆର ଦେଶ । ଉପକୂଳଲୋକ ଗଲେ କ୍ୱଚିତ ନିରୋଗ ହୋଇ ଲେଉଟନ୍ତି । ମୋତେ ଯୋଗ ଦେବାକୁ ତାଙ୍କ ଚିଠି ଉତ୍ସାହିତ କଲା ।

ସବ୍‌ଡେପୁଟି ଥାଇ ୧୯୪୭ରେ IAS special recruitment ହେବା ବେଳେ ସେ ସାକ୍ଷାତକାର ଦେଇ IPS ହେଲେ । ଜିଲ୍ଲା ସୁପରିଟେଣ୍ଡ ଦୁର୍ନୀତିନିବାରଣ ବିଭାଗର ସୁପରିଟେଣ୍ଡ ସବ୍ ଡେପୁଟି ସେକ୍ରେଟାରୀ ହୋଇ ଶେଷରେ ଓଡ଼ିଶାର ପୋଲିସ ଆଇ.ଜି. ରୂପେ ଅବସର ନେଲେ । ସେତେବେଳେ ତାହା ବିଭାଗର ସର୍ବୋଚ୍ଚ ପଦବୀ ଥିଲା । ଡି.ଜି. ପଦବୀ ସୃଷ୍ଟି ହୋଇ ନଥାଏ । ନିରହଂକାରୀ ସହାନୁଭୂତିଶୀଳ ଉପରିସ୍ଥ କର୍ମକର୍ତ୍ତାଭାବେ ସୁନାମ ଥିଲା । ଶେଷ ପର୍ଯ୍ୟନ୍ତ ସେଇ ଗୁରୁଙ୍କ କରୁଣାପ୍ରାର୍ଥୀଥାଇ କାର୍ଯ୍ୟସମ୍ପାଦନ କରୁଥିଲେ ।

ପ୍ରଧାନ ଶିକ୍ଷକ ପରମ ବୈଷ୍ଣବ । ତେଣୁ ରନ୍ଧା ନିରାମିଷ । ପଣ୍ଡିତଙ୍କର ମେସରେ (ବେଶି ସେଠି ବ୍ରାହ୍ମଣ ଛାତ୍ର) ସମୟ ସମୟରେ ମାଛ ରନ୍ଧାଯାଏ । ଶନିବାର ଅଧା ଛୁଟିପରେ ବିଦ୍ୟାଳୟରେ ସାହିତ୍ୟ ସଭା ହୁଏ । ଉପର ଶ୍ରେଣୀ ଛାତ୍ର କେହି ସମୟ ସମୟରେ ଗୀତ, କୌତୁକ ପ୍ରଶ୍ନ ବା ଗପ କି ସେମିତି କିଛି ମଜାଳିଆ ଲେଖାଟିଏ ପଢ଼ନ୍ତି । ଦୁଆରି ଯାତ୍ରୀରେ ଶୁଣାଇଥିବା ମଜା କଥା ମଧ୍ୟ ପଢ଼ି ସମସ୍ତଙ୍କୁ ହସାନ୍ତି । ପ୍ରଧାନ ଶିକ୍ଷକ ଛାତ୍ରମାନଙ୍କୁ ଏ ସବୁଥିରେ ଉତ୍ସାହିତ କରନ୍ତି ।

ମାତ୍ର ବକ୍ତୃତା ଦେବାର ଛାତ୍ରମାନଙ୍କର ସୁଯୋଗ ନଥାଏ । ତେଣୁ ମୋ ପରି

ଅନେକ ସବୁକାଳେ ଲାଜକୁଳା ରହିଯା'ନ୍ତି । ସାଧାରଣ ସ୍ଥାନରେ ଦିପଦ କହିବାକୁ ପାଟି ଖନି ମାରେ । ବିଦ୍ୟାଳୟର ପ୍ରତି ଶ୍ରେଣୀରେ ରାଧାନାଥ ମଧୁସୂଦନ ବା ଅନ୍ୟ ଓଡ଼ିଆ ଲେଖକଙ୍କର ରଚନାରୁ ମହତବାଣୀ ଉଦ୍ଧୃତାଂଶ ପାଞ୍ଚଛଅଗୋଟି ଟଙ୍ଗା ଯାଇଥାଏ । ପ୍ରତିଦିନ ଆଖିରେ ପଡ଼ି ବରଷ ଶେଷକୁ ସେ ଗୁଡ଼ିକ ପ୍ରାୟ ମୁଖସ୍ଥ ହୋଇଯାଏ । ଶନିବାର ରାତିରେ ଛାତ୍ରବାସରେ ପଢ଼ାପଢ଼ି ମନା । ଭାଗବତ ଓ ଗୀତାର ଏକାଦଶ ଅଧ୍ୟାୟ ପଢ଼ାଯାଏ । ଜଣେ ବଡ଼ଚାଟ ପଢ଼େ । ଭାଗବତ ପଢ଼ା ସହଜ । ସଂସ୍କୃତ ଗୀତା ପଢ଼ିବା କଷ୍ଟ ପୁଣି ଖାଲି ଶ୍ଳୋକ ପଢ଼ାଯାଏ । କୁହାଯାଏ "ବୁଝ ବା ନ ବୁଝ ପଢ଼ ଗୀତା, ରୁଚ ବା ନ ରୁଚ, ଖାଆ ପିତା" । ମୁଁ ତ ଦିବାଧ୍ୟାୟୀ । ବୃତ୍ତି ମାସକୁ ୩ଟଙ୍କା ମିଳେ । ଡ଼ରାଇ ଦିଆଯାଇଥାଏ ଦିନୁଟିଏ ବିଦ୍ୟାଳୟରେ ଗରହାଜର ହେଲେ ବୃତ୍ତି କଟିଯିବ । ତେଣୁ ମୋର ସବୁଦିନେ ଉପସ୍ଥାନ ଥାଏ । ଚତୁର୍ଥ ଶ୍ରେଣୀରେ ପ୍ରଥମ ହେଲି । ବରଷକେ ଅର୍ଦ୍ଧବାର୍ଷିକ ଓ ବାର୍ଷିକ ଦୁଇଟା ପରୀକ୍ଷା ହୋଇ ଛାତ୍ରମାନଙ୍କର ମୂଲ୍ୟାୟନ କରାଯାଏ । ଦୁର୍ବଳର ପାଠ ପ୍ରତି ବିଶେଷ ଧ୍ୟାନ ଦିଆଯାଏ । ଦି ପରୀକ୍ଷାରେ ମୁଁ ପ୍ରଥମ ହେଲି । ମୋର ବଡ଼ ପ୍ରତିଦ୍ୱନ୍ଦୀ ସୂର୍ଯ୍ୟକାନ୍ତ ଦାସ । ଆମେ ୪ବରଷ ଏଇ ବିଦ୍ୟାଳୟରେ ପରେ ବିଏ ପର୍ଯ୍ୟନ୍ତ ଚାରି ବରଷ ରେଭେନ୍ସା କଲେଜରେ ଏକାଠି ପଢ଼ିଛୁ । ଭଗ୍ନସ୍ୱାସ୍ଥ୍ୟ ଯୋଗୁ ମାଇନର ସ୍କୁଲରେ ସେ ମୋର ପ୍ରତିଦ୍ୱନ୍ଦୀ ଥିଲେ ମଧ୍ୟ ମୁଁ ଅଧିକାଂଶ ସମୟରେ ଚାରି ଶ୍ରେଣୀରେ ପ୍ରଥମ ହୋଇଥାଏ । ତାଙ୍କର ମୁକ୍ତାନିନ୍ଦୀ ଅକ୍ଷରମାନ ଶିକ୍ଷକମାନଙ୍କୁ ମୁଗ୍ଧକରେ । ସାହିତ୍ୟରେ ମଧ୍ୟ ଶବ୍ଦ ସଂଯୋଗ ତାଙ୍କର ମୋଠାରୁ ଉତ୍ତମ । ମାତ୍ର ସେ ବେଶି ସମୟ ଶ୍ରେଣୀରେ ଗରହାଜର । ଏମିତି ଭାବରେ ୧୯୩୫ ବେଳକୁ ସପ୍ତମଶ୍ରେଣୀରେ ପରୀକ୍ଷା ଦେବା ପାଇ ପ୍ରସ୍ତୁତ ।

ଏତେ କହିବା ମଧ୍ୟରେ ସବୁଠାରୁ ଉଲ୍ଲେଖଯୋଗ୍ୟ ୨ୟ ବ୍ୟକ୍ତି ଯାହାଙ୍କ ପାଖରେ ମୁଁ ଜୀବନରେ ଋଣି ସେ ହେଲେ ସେକେଣ୍ଡ ମାଷ୍ଟର ପୂର୍ଣ୍ଣଚନ୍ଦ୍ର କାନୁନଗୋ । ଆମର କୁଟୁମ୍ବିକ । ମୋର ପୁତୁରା ସ୍ଥାନୀୟ ମାତ୍ର ମୋର ସେ ଶିକ୍ଷାଦାତାଥିବାରୁ ତାଙ୍କ ବାପା (ସେ ଗାଁର ଜମିଦାର ମୁଖିଆ ଜାଣିବାର ଲୋକ ଓ ଆଖପାଖରେ ତାଙ୍କର ଖାତିର ଥାଏ) ମୁଁ ତାଙ୍କୁ କେବଳ ନମସ୍କାର କରିବା ଓ ତାଙ୍କ ବୃହତ ପରିବାରରେ ଆଉ



ଶିକ୍ଷକ ପୂର୍ଣ୍ଣଚନ୍ଦ୍ର କାନୁନ୍‌ଗୋ

କାହାକୁ ମାନ୍ୟ ନ ଦେବାକୁ ନିର୍ଦ୍ଦେଶ ଦେଲେ । ମୁଁ ଆଜୀବନ ତାହା ପାଳନ କରିଛି । ଆମ ଗାଁର ସେ ୨ୟ ମାଟ୍ରିକ ପାସ । ପ୍ରଥମ ବାମନ କାନୁନଗୋ ପ୍ରାୟ ପଚିଶ ବରଷ ଆଗରୁ । ନିଜର ଜମିବାଡ଼ି ଓ ଜମିଦାରିର ସୁପରିଚାଳନା ପାଇ ଅନ୍ୟତ୍ର ନଯାଇ ଶିକ୍ଷକ ହେଲେ । ତାଙ୍କର ଘର ଆଗରେ କନ୍ଦରପୁର ମାଛଗାଁ ରାସ୍ତା । ତାର ଉତ୍ତରରେ ତାଙ୍କର ନିଜର ଗୋଟିଏ ବୈଠକ ଘର ଥାଏ । ଚାଳ ଛପର ଲମ୍ବାଚଉଡ଼ା ଘରଟିଏ । ଗାଁରେ ୧୯୩୨ ମସିହାରେ ଉତ୍ସାହୀ ଯୁବକମାନଙ୍କୁ ନେଇ ଗୋଟିଏ କ୍ଲବ ହେଲା । ଅଳକା କ୍ଲବ । ସେ ତାର ସଂପାଦକ ଥାଆନ୍ତି । ଦୈନିକ ସମାଜ ଖଣ୍ଡେ ଡାକରେ ଆସେ । ନହେଲେ ସାପ୍ତାହିକ । ତାକୁ ଗାଁର ସମସ୍ତେ ମାଗିନେଇ ପଢ଼ନ୍ତି । ତାଙ୍କର ନିଜର ପୁସ୍ତକାଗାର ଥାଏ ଓଡ଼ିଆ ଇଂରାଜୀ । ସବୁ ଆଲମାରିରେ ଥାଏ । ଓଡ଼ିଆ ଗଳ୍ପ ଉପନ୍ୟାସ ଗ୍ରନ୍ଥାବଳୀ ପୁରାଣ ଆଦି ଥାଏ । ତାଙ୍କ ଅନୁମତି ନେଇ ଯେ କେହି ପଢ଼େ । ସେଥିରେ ବହି ପ୍ରତିବର୍ଷ ମିଶୁଥାଏ । ଯୁବକସଂଘ ଆନୁକୂଲ୍ୟରେ ଦଶରାବେଳକୁ ଗୋଟିଏ ନାଟକ ପ୍ରଦର୍ଶନ ହୁଏ । ଗାଁର ଚାକିରିଆମାନେ ସେତିକିବେଳେ ବିଦେଶରୁ ଆସନ୍ତି । ଛୁଟି ପ୍ରାୟ ୨ସପ୍ତାହଯାଏ ଲମ୍ବିଥାଏ । ଦରକାର ହେଲେ ଅଧିକା ଛୁଟି ନେଇ ଏଥିପାଇଁ ମଧ୍ୟ କେତେକ ରହିଯାନ୍ତି । ଆମ ଗାଁର ବଦନାମ ଥାଏ ବହୁତ ଛାତ୍ର ୪ର୍ଥ ଶ୍ରେଣୀରେ ନାମ ଲେଖନ୍ତି । କଷ୍ଟେ ମଷ୍ଟେ ପ୍ରମୋସନ ପାଇ ୭ମ ଶ୍ରେଣୀଯାଏ ଯାଆନ୍ତି । ମାତ୍ର ୭ମ ଶ୍ରେଣୀ ବନ୍ଧା ବଛି ବା ବୋର୍ଡ଼ ପରୀକ୍ଷାରେ ଟଳି ପଡ଼ନ୍ତି । ଅଣ୍ଡର ମାଟ୍ରିକ କହିଲା ପରି ବିବାହ ବଜାରରେ ସେମାନଙ୍କର ଶିକ୍ଷାଗତ ଯୋଗ୍ୟତା ପ୍ରକାଶ କରାଯାଏ ଅଣ୍ଡର ମାଇନର Under ME କହି । ଆମେ ଦିଜଣ ଆମ ସାହିର ଚକ୍ରଧର (ଗନ) ଓ ମୁଁ ୧୯୩୨ରେ ୪ର୍ଥରେ ନାମ ଲେଖାଇଲୁ । ପରବର୍ଷ ବଡ଼ମାଷ୍ଟଙ୍କ ପୁଅ ବଟ ନାମ ଲେଖାଇଲା । ସେ ଟିକେ ପଛରେ ପଡ଼ିଗଲା ମାତ୍ର ଆମେ ତିନିଜଣ ପ୍ରାୟ ଏକା ବୟସର । ଏକା ସମୟରେ କେଇ ମାସ ସାନ ବଡ଼ ହୋଇ ଆମେ ଜନ୍ମ ହୋଇଥିଲୁ । ଗାଁର ଅନ୍ୟ ସାହିରୁ ମଧ୍ୟ ଆଠ ଦଶଜଣ ପଢୁଥାଆନ୍ତି । ଆମେ ଏକାଠି ପଢୁ ଗନ, ବଟ, ମୁଁ ବୈରାଗୀ, ଗୋପାଳ, ବଟକିଶୋର (ନଟଭାଇଙ୍କ ସାନଭାଇ) ଦାମ, ବେଣୁଧର, ପହଲି, ଗଉଭାଇଙ୍କ ଦିଭାଇ ଅଦେଇ ଓ ଚୁଆଁ (ଗଦାଧର), କପିଳ ପରିଡାଙ୍କର ପୁଅ ବୈଷ୍ଣବ ଓ ଫକୀର ମହାନ୍ତିଙ୍କ ପୁଅ

ସତ୍ୟାନନ୍ଦ (ଦୁହେଁ ଅକାଳରେ ଛାତ୍ର ଥାଇ ଚାଲିଗଲେ), ମକଦମ ଘର ବଂଶୀଧର, ପୂର୍ଣ୍ଣ, ବାଇଧର ଏମିତି କେତେ । କୁଳିଆ ଗାଁର ନଟବର ସ୍ୱାଇଁ ଓ ପରଶୁରାମ ବାବାଜି ବୈଷ୍ଣବ ଘରର ବେଳେ ବେଳେ ଆସି ମିଶି ଆମଠାରୁ ପାଠ ବୁଝି ଯାଆନ୍ତି । ବାଲିସାହିର ଜମିଦାର ଲକ୍ଷ୍ମୀଧର ଦାସଙ୍କ ପୁଅ ବିପିନ (ପରେ ବିଧାୟକ) ଆମର ବରଷେ ଉପରେ । ସମୟେ ସମୟେ ଆସି ପୂର୍ଣ୍ଣବାବୁଙ୍କଠାରୁ ଇଂରାଜୀ ବୁଝିଯାଆନ୍ତି । ପରିକ୍ଷିତ ଦାସ ୧୮୮୫ରେ ମାଇନର ସ୍କୁଲ ପ୍ରତିଷ୍ଠା କରିଥିଲେ । ମାତ୍ର ବିପିନଙ୍କ ଆଗରୁ ତାଙ୍କ ବଂଶର କେହି ଏହି ସ୍କୁଲର ୭ମ ଶ୍ରେଣୀ ବୋର୍ଡ ପରୀକ୍ଷାରେ କୃତକାର୍ଯ୍ୟ ହୋଇନଥିଲେ । ଆମର ୨ ବରଷ ଉପର, ଋଷ ଭାଇ (ଋଷିନାଥ ମହାନ୍ତି), ବିକଭାଇ (ଘନଶ୍ୟାମ ମହାନ୍ତି), ବାଳକୃଷ୍ଣ ସ୍ୱାଇଁ (ସ୍ୱନାମଧନ୍ୟ ଚିକିତ୍ସକ ଓ ଲୋକପ୍ରିୟ ବିଜ୍ଞାନ ଲେଖକ, ଅଧ୍ୟାପକ ଡକ୍ଟର ନିତ୍ୟାନନ୍ଦ ସ୍ୱାଇଁଙ୍କର ପିତା) ଆସି ସେଇଠି ପଢ଼ନ୍ତି । ବାଳିଭାଇଙ୍କ ଜଣେ ଭାଇ ହରେକୃଷ୍ଣ ଆଗରୁ ମାଇନର ପାସ କରି ଇ.ଟି. Elementary Training ଏକ ବର୍ଷ ପାଇ ପ୍ରାଥମିକ ଶିକ୍ଷକ ଭାବେ ସୁନାମ ଅର୍ଜନ କରିଥାଆନ୍ତି । ତାଙ୍କ ସନ୍ତାନମାନେ ସୁପ୍ରତିଷ୍ଠିତ । ଅନେକ କୃତୀଛାତ୍ର ତାଙ୍କର ଥିଲେ । ଋଷଭାଇ ବୋଧହୁଏ ତାଙ୍କ ଅନୁକରଣରେ ଜଗତସିଂହପୁରରୁ ବରଷେ E.T School ଟ୍ରେନିଂପାଇ ପ୍ରାଥମିକ ଶିକ୍ଷକ ହେଲେ । ଗାଁର ମୁରବୀମାନେ ପୂର୍ଣ୍ଣବାବୁଙ୍କୁ ଅନୁରୋଧ କଲେ ତାଙ୍କ ବୈଠକ ଖାନାରେ ସ୍କୁଲରେ ପଢୁଥିବା ପିଲାଏ ପଢ଼ନ୍ତୁ । ତାହାହେଲେ ସେମାନେ ନିଜ ନିଜ ମଧ୍ୟରେ ଭାବର ଆଦାନ ପ୍ରଦାନ କରିବେ । କିଏ ନବୁଝୁଥିଲେ ଅନ୍ୟଠାରୁ ବୁଝିବ । ସର୍ବୋପରି ଡ଼ରଥିବ କାଳେ ମାଷ୍ଟର କି ମୁରବୀ କେହି ସେ ଘରେ ପଶି ପାଠ ପରୀକ୍ଷା ନେବେ । ସେ ଆନନ୍ଦରେ ରାଜି ହେଲେ । କଣିଆର ଶିକ୍ଷାଗ୍ରାଫ ମୁଁ ତିଆରି କଲେ ଏହି ଅନୁମତିକୁ ଏକ ବିଭାଜିକା ବୋଲି ଧରେ । ଗାଁର ମାଇନର ସ୍କୁଲରେ ପଢୁଥିବା ୧୦/୧୫ ଜଣ ପିଲା ସମସ୍ତେ ଏଇଠି ବସି ନିଜ ଶ୍ରେଣୀ ଅନୁସାରେ ପଢ଼ନ୍ତି । ବହିପତ୍ର ଅଦଳ ବଦଳ କରନ୍ତି । ପାଠ ପଚରା ପଚରି ହୁଅନ୍ତି । ବସିବାକୁ ନିଜେ ନଡ଼ିଆପତର ଚାଞ୍ଚରା ବୁଣିଥାଆନ୍ତି । ଗୋଟାକରେ ୩/୪ ଜଣ ବସିହୁଏ । ଗୋଟିଏ ଟେବୁଲ ଓ ଚଉକି ଥାଏ । ପୂର୍ଣ୍ଣବାବୁ ସେଥିରେ କାମ ଥିଲେ ବସନ୍ତି । ପଢ଼ାପଢ଼ି କରନ୍ତି । ଖାତା ଦେଖନ୍ତି । ସକାଳେ ମଞ୍ଜେ ସମସ୍ତେ ବସନ୍ତି ।

ଘରେ ଯେପରି ମନ ହେଲେ ପଢ଼ିଲି ନ ହେଲେ ନାହିଁ ଏଇଠି ତାହା ନାହିଁ । ମାଷ୍ଟରମାନେ ଘରେ କରିବାକୁ ଅଙ୍କ ରଚନା ସାହିତ୍ୟ ବ୍ୟାକରଣରୁ ପାଠ ଦେଉଥା'ନ୍ତି । ଉତ୍ତର ପ୍ରସ୍ତୁତ କରି ଘରୁ ଏ ପାଠ ନ ନେଇଥିଲେ ଛୁଟି ଉତ୍ତାରେ ଡ଼ିଟେନସନ କ୍ଲାସରେ ବସିଏହା ଶେଷକରି ସଂପୃକ୍ତ ଶିକ୍ଷକଙ୍କୁ ଦେବାକୁ ହୁଏ । ସମୂହ ଆଲୋଚନା ଯୋଗୁ ପ୍ରାୟ କେହି ତାହା ନ କରି ପ୍ରସ୍ତୁତ ନହୋଇ ଶ୍ରେଣୀକୁ ଯାଇ ନ ଥାନ୍ତି । ଆମର ବିଶେଷ କୃତଜ୍ଞତା ଏଥିପାଇଁ । ଏହା ଫଳରେ ଗାଁରୁ ପରୀକ୍ଷା ଦେଉଥିବା ଛାତ୍ରମାନେ ୭ମ କଟକ ବୋର୍ଡ଼ ପରୀକ୍ଷାରେ ପାସ କରି 'ସମାଜ'ରେ ନିଜ ନାମ ଦେଖିବାର ଗୌରବ ପାଇଲେ । ଆମ ଗାଁର ଦୁର୍ନାମ ହଟିଗଲା । ପ୍ରତିବର୍ଷ ଜଣେ ଦୁଇଜଣ ପାସକଲେ । ଏହି ଶୃଙ୍ଖଳିତ ପାଠପଢ଼ା ସମସ୍ତଙ୍କୁ ଭବିଷ୍ୟତ କର୍ମସଂସ୍ଥାନରେ ସହାୟକ ଥିଲା । ମୋର ଆର୍ଥିକ ଦୂରବସ୍ଥା କହିଛି । ମାସକୁ ବିଦ୍ୟାଳୟ ଦରମା ପଚାଶ ପରେ ପଞ୍ଚସ୍ତରୀ ପଇସା ଛାଡ଼ । ମୋର ୨ବରଷ ପାଇ ବୃତ୍ତି ମାସିକ ତିନିଟଙ୍କା । ବାପାଙ୍କର ଅଭାବବେଳେ ସେ ପୁନବାବୁଙ୍କଠାରୁ ହାତ ଉଧାର କରିଥାଆନ୍ତି । ମୋର ବୃତ୍ତି ଟଙ୍କାରୁ ସୁଝିଦିଅନ୍ତି । ଆଗେତ ଏକସରସାଇଜ ଖାତା ମିଳୁନଥିଲା । ଆମେ ମାଟିଆ ବାଦାମୀ ମୋଟା ବାଲି କାଗଜ କିଣି ତାକୁ ଫୋଡ଼ଣିରେ ଗୁନ୍ଥି ସେଇ ଖାତାରେ ଶ୍ରେଣୀର ଘରପାଠ ଲେଖୁ । ଶିକ୍ଷକ କଣ ନୋଟ ବୋର୍ଡ଼ରେ ଲେଖିଲେ ତହିଁରେ ଉତ୍ତାରି ଆଣୁ । ବହି କିଣିବାକୁ ମୋର ପଇସାର ଅଭାବ ମାତ୍ର ସମସ୍ତେ ଏକାଠି ପଢୁଥିବାରୁ ଏ ବହି ଅଭାବ ଜଣାଯାଏ ନାହିଁ । ୪ର୍ଥ ଶ୍ରେଣୀରେ ପୁରୁଣାବହି କେତେଖଣ୍ଡ ଯାହା କିଣା ଯାଇଥିଲା ମାତ୍ର ଜୀବନରେ ତାପରେ ମାଟ୍ରିକ, ଆଇଏ, ବିଏ ପଢ଼ିବାବେଳେ ଠାକୁରେ ମୋତେ କେବେ ନିଜର ନୂଆ ବହି କିଣି ବିଦ୍ୟାପ୍ରସ୍ତୁତିର ସୁଯୋଗ ଦେଇନାହାନ୍ତି । ୬ଷ୍ଠ ଶ୍ରେଣୀବେଳକୁ ବୃତ୍ତି ନଥିଲେ ମଧ୍ୟ ମୋର ଦରମା ଛାଡ଼ ହୋଇଗଲା ପାଠ ଶେଷଯାଏ ।

ପୁନବାବୁଙ୍କ ଆମ ଗାଁର କୃତୀ ଛାତ୍ରମାନଙ୍କର କୃତଜ୍ଞତାର ଅନ୍ୟ ଏକ କାରଣ ତାଙ୍କ ପୁସ୍ତକାଗାର । ନାନା ପ୍ରକାରର ବହିଥାଏ । ପଢ଼ାସରିଗଲେ ସେଥିରୁ ବହିନେଇ ସମସ୍ତେ ପଢ଼ନ୍ତି । ବିଦ୍ୟାଳୟର ବର୍ଷେ ଦିବର୍ଷରେ ପୁରସ୍କାର ବିତରଣୀ ସଭା ହୁଏ । ମୋର ପଢ଼ିବାସମୟ ୧୯୩୨-୩୫ ମଧ୍ୟରେ ଦୁଇଥର ହୋଇଥିଲା । ପ୍ରଥମଥର

ସଭାପତି ରାମକୃଷ୍ଣମିଶନର ବାଲିକୁଦା ଥାନାରେ ବଢ଼ିଯୋଗୁ ରିଲିଫ କାମ କରୁଥିବା ସନ୍ନ୍ୟାସୀ ମହାରାଜ । ୨ୟଥର ନରିଲୋର ବାସୁଦେବ କାନୁନଗୋ । ସେ କେନ୍ଦୁଝର ଗଡ଼ଜାତରେ ମ୍ୟାନେଜର ଥିଲେ । ପ୍ରଶାସକଭାବରେ ଖୁବ ଜଣାଶୁଣାଥିଲେ । ଶ୍ରେଣୀ ପ୍ରତିଯୋଗିତା ବ୍ୟତୀତ ଖେଳକୁଦ, ଅଭିନୟ, ସଂଗୀତ ପ୍ରତିଯୋଗିତା ହୋଇ ପୁରସ୍କାର ଦିଆଯାଉଥାଏ । ଆମ ଗାଁର ପ୍ରାୟ ପ୍ରତ୍ୟେକ ଛାତ୍ର ଶ୍ରେଣୀ ପାଠରେ ବ୍ୟୁତ୍ପତ୍ତି ବ୍ୟତୀତ ଅନ୍ୟ ବିଷୟମାନଙ୍କରେ କିଛି ନା କିଛି ପୁରସ୍କାର ପାଇଥା'ନ୍ତି । ଅଭିନୟ (Recitation) ଆବୃତ୍ତି କରିଆରେ କୌଣସି ନାଟକର ଏକ ଦୃଶ୍ୟ ବିନା ପୋଷାକ ଓ ରଙ୍ଗରେ ଶୁଣାଇ ଦିଆଯାଏ । ଇଂରେଜରେ ମଧ୍ୟ ଗଦ୍ୟପଦ୍ୟ ଆବୃତ୍ତି କରାଯାଇ ପୁରସ୍କାର ଦିଆଯାଏ । ମୁଁ ଥରେ Alexander and Robber ରେ ଅଭିନୟ କରିଥିଲି । ଏଥିପାଇଁ ପାଣ୍ଠି ବିଦ୍ୟାଳୟରେ ପ୍ରତି ଛାତ୍ରଠାରୁ ବାର୍ଷିକ କିଛି ଅସୁଲ ହୁଏ । କେତେକ ବିଦ୍ୟାପ୍ରେମୀ ସହୃଦୟ ସ୍ଥାନୀୟଲୋକ ମଧ୍ୟ ପୁରସ୍କାର ଦିଅନ୍ତି । ଆମ ଗାଁର ଗୋପାଳ ସଂଗୀତରେ ପ୍ରତିବର୍ଷ ପ୍ରାୟ ଭକ୍ତକବି ମଧୁସୂଦନଙ୍କର ଜନ୍ମଭୂମି ରାଗ ଚୋଖିରେ –

ତୁହି ମା ଜନମଭୂମି ପବିତ୍ର ଭାରତଭୂମି
ତୋହାର ସନ୍ତାନ ଆମ୍ଭେ ଅଟୁ ସରବେ
ତୋର ଶ୍ରୀଚରଣ ସେବା ପାଇଁ ମନପ୍ରାଣଦେବା
ଗାଇବା ତୋହର ନାମ ଆନନ୍ଦରବେ
ତୋ ଆନନ୍ଦେ ହୋଇବା ସୁଖୀ
କାନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ ।
ଜନମିଲେ ତୋ କୋଳରେ କେତେ ଶୂର ବୀରନରେ
ରାମଚନ୍ଦ୍ର, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଅର୍ଜୁନ
ମହାକବି ବେଦବ୍ୟାସ ବାଲମୀକି କାଳିଦାସ
ଗାଇଲେ ପବିତ୍ର କଣ୍ଠେ ତୋହରି ଗୁଣ
ଚୈତନ୍ୟାଦି ମହାତ୍ମା ଜନେ
ପ୍ରଚାରିଲେ ବିଭୁନାମ ଆନନ୍ଦମନେ ।

୬ ଉତ୍କଳବନ୍ଦନା

ଜୟମା ଜନମଭୂମି ଉଦାର ଉତ୍କଳଭୂମି
ତୋର ସ୍ନେହ କୋଳେ ମାଗୋ ଜନ୍ମ ଆମ୍ଭର
କୋଟି ସୁତ ଘେନି କୋଳେ ପାଳୁଅଛୁ ସ୍ନେହଭୋଳେ
ତୁହିମା କରୁଣାମୟୀ କରି ଆଦର
ତୋବକ୍ଷର ଅମୃତରସ
ସୁଖି କରୁଛି ମା କୋଟି କୋଟି ମାନସ ।

ବ୍ୟତୀତ କୌଣସି ଛାନ୍ଦ ବା ରାଗର ଗୀତ ବୋଲି ଏକାଧିକ ପୁରସ୍କାର ପାଇ ଥାଏ । ପୁରସ୍କାର ପାଇବା ବହି (କେବଳ ବହି ଆକାରରେ ଦିଆଯିବା ମନେ ପଡୁଛି) ମଧ୍ୟରେ ଥାଏ ପଣ୍ଡିତ ନୀଳକଣ୍ଠଙ୍କ ବାଳ ରାମାୟଣ, ବାଳ ମହାଭାରତ, ପଣ୍ଡିତ ଗୋଦାବରୀଶଙ୍କର ପଞ୍ଚବୀର ଓ ଅନ୍ୟ ଗଳ୍ପ ବହି, କଟକ ମଧୁପୁରର ମଧ୍ୟ ବିଦ୍ୟାଳୟରୁ ବାହାରୁଥାଏ ଅଣିକିଆ ସଂସ୍କରଣ, ଟ୍ରେଡିଂ କଂପାନିର ପ୍ରକାଶିତ ସର୍ପଯଜ୍ଞ, ନାରଦ ଚ୍ୟବନ, ବାଳଭକ୍ତ ଧ୍ରୁବ ପ୍ରହଲ୍ଲାଦ ପୁରାଣ କଥା ଗଳ୍ପ ଆଦି । ଏ ଗୁଡ଼ିକ ଖୁବ ଶସ୍ତା ଥାଏ । ତେଣୁ ଅନେକ ବହି କିଣା ହୋଇ ପୁରସ୍କାର ପାଇ ଆସେ । ଆମେ ଗାଁ ପିଲାମାନେ ଯେଉଁ ବହିସବୁ ପାଉ ଓଡ଼ିଆ ଇଂରେଜୀ Jack + Jill ଭଳିଆ ଚକଚକିଆ ବହି ସେ ସବୁ ପୁସ୍ତକାଗାରରେ ରଖାଯାଏ । ସମସ୍ତେ ନେଇ ତାକୁ ପଢୁ । ଭଲ ଲାଗିଲେ ବାରମ୍ବାର ପଢୁ । ଏହା ସମସ୍ତଙ୍କର ପଢ଼ାବହି ବ୍ୟତୀତ ଅନ୍ୟ ଗପବହି ପଢ଼ିବାରେ ଆଗ୍ରହ ସୃଷ୍ଟିକରେ । ପୁଣି ସ୍କୁଲକୁ ଯିବାବେଳେ ବାଟରେ ସବୁ ମଜା କଥା ଆଲୋଚନା କରି ଯାଉଥାଉ । ପୁରସ୍କାର ବିତରଣୀ ସଭାରେ ସଭାପତି ପିଲାମାନଙ୍କୁ ନାନା ପ୍ରକାର ଉପଦେଶ ଦିଅନ୍ତି । ନିଜ ତରଫରୁ ମଧ୍ୟ କିଛି ପୁରସ୍କାର ଦେଇଥା'ନ୍ତି । ତା'ପରଦିନ ସ୍କୁଲ ଛୁଟି ହୋଇଯାଏ । ନିମନ୍ତ୍ରଣ ପାଇ ଆଖପାଖ ଗାଁରୁ ଅଭିଭାବକ ଓ ବିଶିଷ୍ଟ ବ୍ୟକ୍ତିମାନେ ଆସି ସଭାରେ ଯୋଗଦିଅନ୍ତି । ସେମାନଙ୍କ ମଧ୍ୟରୁ କେହି କେହି ପୁରସ୍କାର ମଧ୍ୟ ଘୋଷଣା କରନ୍ତି । ପ୍ରଧାନ ଶିକ୍ଷକ ସେଥିପାଇ ଆଗରୁ କେତେ ବହି ପ୍ରକାଶକଙ୍କଠାରୁ ବିକ୍ରୟ ପାଇ ଆଣି ମହଜୁଦ ରଖିଥା'ନ୍ତି ।

ପୁରସ୍କାର ବିତରଣୀ ସଭାଛଡ଼ା ବିଦ୍ୟାଳୟରେ ଗଣେଶ ଓ ସରସ୍ୱତୀ ପୂଜା ଦୁଇଟି ବଡ଼ ଉତ୍ସବ । ଛାତ୍ରମାନେ ଏଥିପାଇଁ ଚାନ୍ଦା ଦିଅନ୍ତି । ପ୍ରଧାନ ଶିକ୍ଷକ ପରମ ବୈଷ୍ଣବ । ତେଣୁ ସେ ସେହି ଉପଲକ୍ଷେ ବିଦ୍ୟାଳୟରେ ଚତୁର୍ଥ ପ୍ରହରୀ ଓ ଅଷ୍ଟପ୍ରହରୀ କରନ୍ତି । ଗଣେଶ ଚତୁର୍ଥୀ ବରଷା ଦିନରେ । ତେଣୁ ସେତେବେଳେ ଉଦୟାସ୍ତ କୀର୍ତ୍ତନ ଚତୁର୍ଥ ପ୍ରହରୀ ଜାକ ଜମକରେ ହୁଏ । ପିଲାମାନେ ନାମ ସକୀର୍ତ୍ତନ କରନ୍ତି । ତାହା ବ୍ୟତୀତ ଆଖପାଖ ଗାଁରୁ ପ୍ରଧାନଶିକ୍ଷକଙ୍କର ପୁରାତନ ଛାତ୍ରମାନଙ୍କର ଉଦ୍ୟମରେ ସଂକୀର୍ତ୍ତନ ଦଳ ଆସି ଏଥିରେ ଭାଗ ନିଅନ୍ତି । ପ୍ରସାଦ ପାଇବା ବ୍ୟତୀତ ସେମାନେ ଅନ୍ୟ କୌଣସି ପାରିଶ୍ରମିକ ପାଆନ୍ତି ନାହିଁ । ଛାତ୍ରମାନେ ଆନନ୍ଦରେ କୀର୍ତ୍ତନରେ ନାଚନ୍ତି । ଗିନିଧରି ଗୀତ ବୋଲନ୍ତି । ବଡ଼ ପିଲା କେହି ଖୋଳ (ମୃଦଙ୍ଗ) ବଜାନ୍ତି । ପାଖ ଗାଁମାନଙ୍କରେ ବିଶିଷ୍ଟବ୍ୟକ୍ତିମାନେ ମଧ୍ୟ ପ୍ରସାଦ ସେବନରେ ଭାଗ ନିଅନ୍ତି । ପ୍ରସାଦରେ ଥାଏ ଚୂଡ଼ା କୋଦମା (ଚୂଡ଼ା ପାଣିରେ ବତୁରାଇ ଛାଣି) ଚୂଡ଼ା ଘଷା ନଡ଼ିଆରାଇ, ଅମୃତକୁଣ୍ଡ (ପାଚିଲାକଦଳି ଚକଟାରେ ଗୁଡ଼ ଚିନି ଗୋଲ ମରିଚ କର୍ପୂର) ତରକାରି ଓ କ୍ଷୀରି । ବଜାରଦର ଓ ଚାନ୍ଦା ଅଦାୟ ପରିମାଣ ଅନୁସାରେ ଏହା କାଣ୍ଡଛାଣ୍ଡ ହୋଇଥାଏ । ଅଷ୍ଟପ୍ରହରୀରେ ଦୁଇଥର ପ୍ରସାଦ ଦେବା ହେଲେ ଥରେ ଚୂଡ଼ା କୋଦମା ଥରେ ଭାତ ଡ଼ାଲିର ବ୍ୟବସ୍ଥା ଥାଏ । ବିଶିଷ୍ଟ ବ୍ୟକ୍ତିମାନେ ସନ୍ଧ୍ୟାରେ ସଂଗୀତ ଚର୍ଚ୍ଚା କରନ୍ତି । ମଙ୍ଗରାଜପୁରର ମୁଷି ଅବଧାନ (ଭୁବନାନନ୍ଦ ନାୟକ) ଜଣେ ଅଣଇଂରେଜ ପଢୁଆ ନେଟିଭ ଡ଼ାକ୍ତର Vernacular LMP ସରକାରୀ ସ୍ୱୀକୃତ ଓ ଅବସରପ୍ରାପ୍ତ କର୍ମଚାରୀ । ସେ ଘଣ୍ଟା ଘଣ୍ଟା ଧରି ବେହେଲା ବଜାଉଥିବେ । ଅନ୍ୟମାନେ ତୁବି ତାବଲା ଧରି ଭାଗ ନେଉଥିବେ ଓ ତାଳର ବୋଲମାନ କହୁଥିବେ ଯାହା ଆମ ଛାତ୍ରମାନଙ୍କୁ ବିରକ୍ତିକର ଲାଗେ ମାତ୍ର ସଂଗୀତା ମୋଦୀମାନେ ସେହି Classical ଯାନ୍ତ୍ରିକ ଓ ସ୍ୱରଗତସାଧାନାରେ ମଜ୍ଜିଯାଆନ୍ତି । ଖାଇବାକଥା ଭୁଲିଯାଆନ୍ତି । ବାରମ୍ବାର ମନେ ପକାଇଦେବାକୁ ପଡ଼େ ।

ବିଦ୍ୟାଳୟରେ ବଗିଚାକାମ ଶ୍ରୀଧର ମାଷ୍ଟ୍ରେ କରାନ୍ତି । ବଗିଚାରେ ଅନେକ ପ୍ରକାର ଫୁଲଗଛ ଥାଏ । ଶୀତଦିନେ ରତୁର ପନିପରିବା କରାଯାଏ । ଛାତ୍ରମାନେ ପାଣି ଦିଅନ୍ତି ଗଛ ଚିହ୍ନନ୍ତି । ପାଣି ପୋଖରିରୁ ଆଣିବାକୁ ହୁଏ । ଅନେକ ଓଷଦ

ଜାତୀୟ ଗଛଥାଏ । ଶିକ୍ଷକଙ୍କର ପ୍ରରୋଚନାରେ ଛାତ୍ରମାନେ ପ୍ରକୃତି ପର୍ଯ୍ୟବେକ୍ଷଣ ସହିତ ନିଜେ ଗଛଲଗାଇବା ତାର ରକ୍ଷଣାବେକ୍ଷଣର ଉପାୟ ଶିଖନ୍ତି । ରାସାୟନିକ ସାର ସେତେବେଳେ ଶୁଣା ନ ଥାଏ । ଆମ ଗାଁରୁ ଓ ସେଇ ଦିଗରେ ବୋରିବିନା ମାଛଗାଁ ଆଡୁ ଆସିବା ପିଲାଙ୍କର ସିଧାସଳଖ ଉଚ୍ଚ ରାସ୍ତା । ନଦୀନାଳ କିଛିନାହିଁ । ମାତ୍ର ଉତ୍ତରଦିଗରୁ ଶ୍ରୀଧର ମାଷ୍ଟ୍ରଙ୍କ ଗାଁ ନାଗପୁର ଆଡୁ ଆସିବା ପିଲାଙ୍କର କଚା ରାସ୍ତା । ବରଷା ଦିନେ ନାଳସବୁରେ ପାଣି । ପୁଣି ବିଦ୍ୟାଳୟର ଅଳ୍ପଦୂରରେ ଗୋଟିଏ ଜୋର । ସବୁ ପିଲାମାନଙ୍କୁ ନିରାପଦରେ ନେବା ଆଣିବା ଦାୟିତ୍ୱ ସେ ସ୍ୱତଃ ପ୍ରବୃତ୍ତ ହୋଇ ବହନ କରିଥା'ନ୍ତି ଯେପରି କେବେ କୌଣସି ଅଘଟଣ ନ ଘଟେ । ବାଲିକୁଦାରେ ଜିଲ୍ଲାବୋର୍ଡ଼ ପରିଚାଳିତ ଗୋଟିଏ ଡ଼ାକ୍ତରଖାନା ଥାଏ । ଜଣେ L.M.P· ପାସ ଡ଼ାକ୍ତର ତା ଦାୟିତ୍ୱରେ ଥାଆନ୍ତି । ସମଗ୍ର ଥାନାରେ ସେହି ଗୋଟିଏ ଏଲୋପାଥିକ ଡ଼ାକ୍ତରଖାନା । ଚାରିଆଡୁ ରୋଗୀ ଚିକିତ୍ସା ଓ ପରାମର୍ଶପାଇ ଆସନ୍ତି । ଛାତ୍ରମାନେ ଭାରପ୍ରାପ୍ତ ଡ଼ାକ୍ତରଙ୍କର ଆଗ୍ରହ ଓ ଶ୍ରଦ୍ଧା ଫଳରେ ସେଠାରେ ଔଷଧ ମାଗଣାରେ ପାଆନ୍ତି । ପରାମର୍ଶ ମଧ । ବରଷକୁ ଥରେ କଟକରୁ ବିଦ୍ୟାଳୟ ସମୂହର ମେଡ଼ିକାଲ ଅଫିସର ଆସନ୍ତି (School Medical Officer) ଚାରିଶ୍ରେଣୀର ପିଲାମାନଙ୍କର ସେ ସ୍ୱାସ୍ଥ୍ୟଯାଞ୍ଚ କରନ୍ତି । କୌଣସି ରୋଗ ଥିଲେ ତାହା ପିଲାମାନଙ୍କୁ ଦିଆଯାଉଥିବା କାର୍ଡ଼ରେ ଉଲ୍ଲେଖ କରନ୍ତି । ବଡ଼ ଧରଣର କୌଣସି ବ୍ୟାଧି ଥିଲେ ଚିକିତ୍ସା ପାଇ କଣ କରାଯାଇପାରିବ ତାହା ମଧ ଛାତ୍ରର ଅଭିଭାବକଙ୍କୁ ଏହି କାର୍ଡ଼ରେ ପରାମର୍ଶ ଦିଆଯାଉଥାଏ । ବେଶି ଛାତ୍ର ଚର୍ମରୋଗ, କାଛୁ, କୁଣ୍ଡିଆ, ଯାଦୁ, ପୁଷ୍ଟିହୀନତା ଓ ବାରମ୍ବାର ମେଲେରିଆ ଭୋଗି ପ୍ଲିହା ବୃଦ୍ଧିଥିବାର ଜଣାଯାଏ । ବାରମ୍ବାର ଖରଦି ଥଣ୍ଡା କାଶ ହେବା ଶୀଘ୍ର ନ ଛାଡ଼ିବା ଦେଖିଲେ ଔଷଧ ସ୍ଥାନୀୟ ଡ଼ାକ୍ତରଖାନାରୁ ଆଣିବାକୁ କୁହାଯାଏ । କେବେ କେବେ ଯକ୍ଷ୍ମା ଓ ଯକୃତର ବ୍ୟାଧି ଜଣାପଡ଼େ ।

୧୯୩୨ ରୁ ୧୯୩୫ ହେଲା । ୧୯୩୫ରେ ଭାରତ ସମ୍ରାଟ ପଞ୍ଚମଜର୍ଜଙ୍କ ସିଂହାସନ ଆରୋହଣର ପଚିଶ ବରଷ ପୂରିଗଲା । ଏହି ଉପଲକ୍ଷେ ତାଙ୍କର ରୌପ୍ୟ ଜୁବୁଲି ମହାସମାରୋହରେ ଭାରତ ସହିତ ସମଗ୍ର ବ୍ରିଟିଶଶାସିତ ଅଞ୍ଚଳରେ ପାଳିତ ହେଲା । ଇଂରେଜ ସାମ୍ରାଜ୍ୟର ବର୍ଣ୍ଣନା ଆମେ ମହାରାଣୀ ଭିକ୍ଟୋରିଆ ପଦ୍ୟରେ

ସାହିତ୍ୟ ପ୍ରସଙ୍ଗରେ ସେଇ ବରଷ ୭ମ ଶ୍ରେଣୀରେ ପଢୁଥାଉ । "ଯାର ରାଜ୍ୟେ କେବେ ନୁହେଁ ଅସ୍ତମିତ ଦିନମଣି ତେଜୋଧାମ" । ତାଙ୍କ ବାପା ସପ୍ତମ ଏଡ୍‌ୱାର୍ଡ଼ ମାତ୍ର ଦଶବରଷ ୧୯୦୧-୧୯୧୦ ରାଜା ହୋଇଥିଲେ । ମାତ୍ର ତାଙ୍କ ଜେଜେମା ମହାରାଣୀ ଭିକ୍ଟୋରିଆଙ୍କର ସୁବର୍ଣ୍ଣ ଓ ହୀରକ ଜୁବୁଲି ପାଳିତ ହୋଇଥିଲା । ଦେଶରେ ରାଜଭକ୍ତ ରାଜା ଜମିଦାର ରାଜକର୍ମଚାରୀମାନଙ୍କର କ୍ଷମତା ଓ ପ୍ରଭାବ ଅଖଣ୍ଡ । ତେଣୁ ସମ୍ରାଟଙ୍କ ଜନ୍ମଦିନ ପାଇ ଚାନ୍ଦା ସଂଗ୍ରହ କରାଯାଇ ନାନାପ୍ରକାର ଉତ୍ସବ ପାଳନ କରାଗଲା । ଯାତ୍ରା ପାଲା ଆଦି ହେଲା । ବିଦ୍ୟାଳୟରେ ମିଷ୍ଟାନ୍ନ ବଣ୍ଟନ ହେଲା । ବାଲିକୁଦାରେ ଥାନାର ବଡ଼ ବଡ଼ ଜମିଦାର, ସ୍ଥାନୀୟ ଜମିଦାର, ଡ଼ାକ୍ତର, ବିଦ୍ୟାଳୟ ସବଇନ୍‌ସପେକ୍ଟର ଥାନା ମୁନସି ଆଦି ସରକାରୀ କର୍ମଚାରୀ ଏ କାର୍ଯ୍ୟରେ ବିଶେଷ ଭାଗ ନେଉଥା'ନ୍ତି । କେହି ପଦେ ପ୍ରତିବାଦ କରିବା ସୁଯୋଗ ନ ଥାଏ । ସବୁରି ଡ଼ର ଏପରି ଆପତ୍ତିକଲେ ଅସହଯୋଗୀ ଗାନ୍ଧିଭକ୍ତ ବୋଲି ଧରିନିଆଯାଇ ନାନା ପ୍ରକାର ମିଛମକଦମାରେ ପକାଇ ହଇରାଣ କରାଯିବ । ଆମେ ସ୍କୁଲର ଛାତ୍ରମାନେ (କେହି ଛାତ୍ରୀ ବିଦ୍ୟାଳୟରେ ନ'ଥାନ୍ତି) । ବାଲିକୁଦା, ବାଲିସାହିର ସାହି ସାହି ବୁଲିଲୁ । ହାତରେ ପ୍ଲାକାର୍ଡ଼ ଲେଖାଥାଏ ଓ ଆମ୍ଭେମାନେ ସମ୍ରାଟ ପଞ୍ଚମ ଜର୍ଜଙ୍କର ଜୟ ତାଙ୍କର ଦୀର୍ଘଜୀବନ ହେଉ ଧ୍ୱନି ଦେଉ । ସେ ଦିନ ବିଦ୍ୟାଳୟ ଛୁଟି କଟେଇଲୁ । ବଡ଼ଲୋକମାନଙ୍କର ମଧ ଥାନାରେ ଭୋଜିଭାତ ହେଲା । କିଏ ପୋଖରୀରୁ ମାଛ ଦେଲା ତ କିଏ ଖାସି ଦେଲା । ଖାନାପିନା ଏକାଧିକ ଦିନ ଧରିଚାଲିଥିଲା । ମୋର ୭ମ ଶ୍ରେଣୀ ବୋର୍ଡ଼ ପରୀକ୍ଷା ଦେବାକଥା । ପ୍ରତି ଜିଲ୍ଲାରୁ କେତେଜଣ ଏଥିରେ ବୃତ୍ତି ପାଇବାର ଥାଏ । ବୋର୍ଡ଼ ଏହି ପରୀକ୍ଷା କରେ ଓ ବୃତ୍ତିଧାରୀମାନଙ୍କୁ ବାଛେ । ଛାତ୍ରାବାସରେ ରହିଲେ ପାଠପଢ଼ାରେ ବେଶି ସୁବିଧା ହେବ ଏହି ଧାରଣାରେ ପ୍ରାୟ ସମସ୍ତ ପରୀକ୍ଷାର୍ଥୀ ସେଠାରେ ରହନ୍ତି । ସେମାନଙ୍କୁ ପାଞ୍ଚଛଅଗୋଟି ଗ୍ରୁପରେ ରଖାଯାଇ ବିଶେଷ ଧାନ ଦିଆଯାଏ । ପରୀକ୍ଷା ନଭେମ୍ବର ମାସରେ ପ୍ରାୟ ହୁଏ । ସେ ବର୍ଷ ବିହାର ଭୂମିକମ୍ପ । ପରୀକ୍ଷା ଟିକେ ପଛେଇ ଯାଇଥିଲା । ମୋର ଛାତ୍ରବାସରେ ରହିବାର ଆର୍ଥିକ ଅକ୍ଷମତା ବାପା ପ୍ରଧାନଶିକ୍ଷକଙ୍କ ଦୃଷ୍ଟିକୁ ଆଣିବା ସଙ୍ଗେ ସଙ୍ଗେ ସେ ମୋ ପାଇଁ ପ୍ରାୟ ଛଅମାସ ନିଃଶୁଳ୍କ ରହିବାର



ପ୍ରଧାନ ଶିକ୍ଷକ ରାଜକିଶୋର କାନୁନ୍‌ଗୋ

ବ୍ୟବସ୍ଥା କଲେ । ମୋର ଦୂରାବସ୍ଥା ମୋର ଖଣ୍ଡେ କଂସା ଥାଳି ଗିନା ନ ଥିବା ଓ ପିତଳ ଥାଳି ଓ ଗୋଟିଏ ବଡ଼ କାଠବାକ୍ସ ନେଇ ଛାତ୍ରାବାସରେ ରହିବାରୁ ପ୍ରମାଣିତ ହେବ । ପ୍ରଧାନ ଶିକ୍ଷକ ରାଜକିଶୋର କାନୁନଗୋ ଏଥିପାଇଁ ୩ୟ ବ୍ୟକ୍ତି ଯାହାଙ୍କଠାରେ ମୁଁ ଆଦ୍ୟଜୀବନରେ ଋଣୀହେଲି ।

ବୋର୍ଡ଼ ପରୀକ୍ଷା କଟକରେ ହୁଏ । ସମଗ୍ର ସଦର କଟକ ସବଡ଼ିଭିଜନରେ ଥିବା ମାଇନର ସ୍କୁଲର ଛାତ୍ରମାନେ ନିଜ ପ୍ରଧାନଶିକ୍ଷକ ଓ ଅନ୍ୟ ଜଣେ ଶକ୍ଷକଙ୍କ ସହିତ ଆସି କଟକରେ ରହନ୍ତି । ପରୀକ୍ଷା ସାଧାରଣତଃ ଦିନକୁ ୨ଟି ପତ୍ର ଭାବେ ୩ ଦିନ ହୁଏ । ଦିନକ ଆଗରୁ ବସିବା ଜାଗା ଓ କେନ୍ଦ୍ର ବିଦ୍ୟାଳୟ ଚିହ୍ନଟ ହୋଇଥାଏ । ପରୀକ୍ଷା ପରେ ଦିନୁଟାଏ ଶିକ୍ଷକମାନେ ଛାତ୍ରମାନଙ୍କୁ କଟକର ଐତିହାସିକ ଦୁର୍ଗ, ବାରବାଟି, ମରକତକେଶରୀଙ୍କ କାଠଯୋଡ଼ି ପଥରବନ୍ଧ, ମହାନଦୀ ପଥର ବନ୍ଧ, କାଳୀ ମନ୍ଦିର, ଚଣ୍ଡୀ ମନ୍ଦିର, ଗୋପାଳଙ୍କି ମଠ ସହିତ ବଡ଼ ବଡ଼ ବଜାର ଚଉଧୁରୀବଜାର ବାଲୁବଜାର ବକ୍ସିବଜାର ବୁଲାଇ ଦେଖାନ୍ତି । ଏସବୁର ଗୁରୁତ୍ୱ ମଧ୍ୟ ସୂଚାଇଦେଇଥା'ନ୍ତି । ଗୋଟିଏ ସିନେମା ହଲ୍ ହଲମୁକ (ହଲମୁକ ହାଲଦାର ଓ ମୁଖର୍ଜି ଯୋଡ଼ି) ଥିଲେ ମଧ୍ୟ ପ୍ରଧାନ ଶିକ୍ଷକ ଏହାର ବିରୋଧରେ ଥିବାରୁ ନିଅନ୍ତି ନାହିଁ । କେହି କେହି ଲୁଚିଛପି ତାହା ଦେଖନ୍ତି । ଖାଇବା ପିଇବା ସକାଶେ ସାଙ୍ଗରେ ଚାଉଳ ଡ଼ାଲି ପରିବାପତ୍ର ଆଦି ଯାଇଥାଏ । ମାଛ ମାଂସ ମଇଦା ଅଟା ଘିଅ ତେଲ ସେଠାରେ କିଣାଯାଏ । ଛାତ୍ରମାନେ ଉତ୍ତମ ଭୋଜନରେ ସାତଦିନ ଯାକ ଆପ୍ୟାୟିତ ହୁଅନ୍ତି । ପରୀକ୍ଷା ଯିବା ଆସିବା ସବୁ ପ୍ରାୟ ସାତଦିନ ଲାଗେ । ଶୀତଦିନ ହେତୁ ମଟରବସ ଗୋଟିଏ ରିଜର୍ଭ କରାଯାଇଥାଏ । ପାଗ ଅନୁସାରେ ଚାଲିକରି ଆସି ଏଥିରେ ଢ଼ିଅସାହି (କାଦୁଅ ପଡ଼ା) ବା ଜଗତସିଂହପୁରରେ ବସିବାକୁ ହୁଏ । ସହର ମଧ୍ୟକୁ ପ୍ରବେଶବେଳକୁ ଚାଉଳିଆଗଞ୍ଜ ରେଳଷ୍ଟେସନ ଲେଭଲ କ୍ରସିଂଠାରେ ଅଟକିଗଲେ ଗୋଟିଏ ଟ୍ରେନ ଯିବା ଆସିବା ଦେଖିବାକୁ ମିଳେ । ମୋର ଜୀବନରେ ଏହା ପ୍ରଥମ ରେଳଦର୍ଶନ । କଟକ ଯିବା ଆସିବା ସାତଦିନ ରହିବା ବୁଲାବୁଲି ଆଦି ଖରଚ ସାପେକ୍ଷ । ବାପା ବୋଧହୁଏ ମୋ ପାଇଁ ଆଂଶିକ ବ୍ୟୟ ବହନ କରିଥିଲେ । ମୋର ଜଣେ ଶୁଭେଚ୍ଛୁ ଭାରିଗଦା ଗାଁ ସଂପର୍କରୁ ବାପାଙ୍କ ପିଉସି ଓ ପୁନବାବୁଙ୍କ ବୋଉ ମୁଁ କଟକରେ ଖରଚ କରିବି ବୋଲି

୬୪ ଗୋଟି ତମ୍ବା ପଇସା ମୋତେ ଦେଇଥିଲେ । ମୁଁ ସେଥିରୁ ପନ୍ଦର କୋଡ଼ିଏଟି ଖରଚ କରିଥିବି । ଖାଇବା ଛଡ଼ା ଅନ୍ୟ କେଉଁଠି କିପରି ଖରଚ ହେବ ମତେ ଜଣା ନଥାଏ ।

ଅବଶ୍ୟ ଆମକୁ କୌଣସି ବହି ଦୋକାନ ବା ମନୋହରି ଷ୍ଟୋରକୁ ନିଆଯାଇ ନଥିଲା । ମୋ ସାନଭଉଣୀ ମଞ୍ଜୁପାଇଁ (ମୋ ଠାରୁ ୧୪ ବରଷ ସାନ) ଗୋଟିଏ ଗାଟାପରଚା କଣ୍ଢେଇ ଆଣିଥିଲି । ପରୀକ୍ଷା ଦେଇ ଗାଁକୁ ଆସି ମାସେ ଖଣ୍ଡେ ଫଳ ଅପେକ୍ଷାରେ ରହିଲୁ । ମୋ ସହପାଠୀ ଗନ· (ଚକ୍ରଧର) ଗଣିତ ପ୍ରଶ୍ନ ଭଲଭାବେ ନ ପଢ଼ି ଗ୍ରୁପ ଏର ଯାହା ବାଳିକାମାନଙ୍କପାଇ ଉଦ୍ଦିଷ୍ଟ ଥିଲା ତାହା ସହଜ ଦେଖି ସବୁ ଅଙ୍କ କରିଦେଲା । ପୁଣି ଅନ୍ୟ ଗ୍ରୁପରୁ ଉତ୍ତର ଦେଲା ନାହିଁ । ଫଳରେ ସେ ବର୍ଷ ସେ ଫେଲ ହେଲା । ଶିକ୍ଷା ମିଳିଲା ଉତ୍ତର ଲେଖିବା ଆଗରୁ ପ୍ରଶ୍ନପତ୍ର ଟିକିନିଖି ଭାବରେ ପଢ଼ । ମୁଁ ପାସକରି ଅନର୍ସ ଓ ୩ଟା ପତ୍ରରେ ଡ଼ିସଟିଙ୍କସନ୍ ପାଇଲି । ବୃତ୍ତି ପାଇବା ଫଳ ପ୍ରକାଶ ପାଇ ନଥାଏ । ଖବର ମିଳିଲା ମୁଁ ବୃତ୍ତି ପାଇଛି ମାତ୍ର ମାସିକ ୭ଟଙ୍କା । ଉଚ୍ଚଶିକ୍ଷାକୁ ଏହା ଯଥେଷ୍ଟ ନୁହେଁ । ସମଗ୍ର କଟକ ଜିଲ୍ଲାରେ ୧୯୩୬ ମସିହାରେ କଟକ ସହରରେ ପାଞ୍ଚଗୋଟି ହାଇସ୍କୁଲ (ରେଭେନ୍ସା କଲେଜିଏଟ ସ୍କୁଲ, ପ୍ୟାରୀମୋହନ ଏକାଡ଼େମୀ, ଟାଉନଭିକ୍ଟୋରିଆ, ହାଇସ୍କୁଲ, ମିସନ ସ୍କୁଲ ଓ ମୁସଲିମ ସେମିନାରୀ) ସେତେବେଳେ ଲୋକେ କହୁଥିଲେ -

"ଏକାଡ଼େମୀ, ପାଠପଢ଼ା ଘୋଡ଼ାଡ଼ିମ,
ସେମିନାରି, ଭଙ୍ଗାଟୁଟା ଆଲମାରି,
ମିସନ, ଫୁଲ ଅଫ ଫେସନ
ଭିକ୍ଟୋରିଆ ଫୁଲ ଅଫ ବଜାରିଆ (ସାହିବାସିନ୍ଦା)

କେବଳ ସରକାରୀ ହାଇସ୍କୁଲ କଲେଜିଏଟର ପାଠପଢ଼ାରେ ଦକ୍ଷତା ଶିକ୍ଷକ, ପୁସ୍ତକାଗାର ଖେଳପଡ଼ିଆ ଓ ପରିଚାଳନା ନିମିତ୍ତ ସୁଖ୍ୟାତି ଥାଏ । ସୌଭାଗ୍ୟ ଥିଲେ ଏଠାରେ ସ୍ଥାନ ମିଳିଥାଏ । ତତ୍କାଳିନ ପ୍ରଧାନ ଶିକ୍ଷକ ରାୟସାହେବ ବିଶ୍ୱମ୍ଭର ମିଶ୍ର ଓଡ଼ିଶାର ଜଣେ ବିଶିଷ୍ଟ ଶିକ୍ଷାବିଦ୍ଦ ଥିଲେ । ଆମ ଗାଁରୁ ଦୁଇଜଣ ଗଉଭାଇ (ଗୌରଚରଣ ପିତା ମଧୁମହାନ୍ତି) ଓ ବଂଶୀଭାଇ (ପିତା କାହ୍ନୁଚରଣ) ସେମିନାରିରେ ପଢୁଥାଆନ୍ତି ।

ଗଉଡ଼ଭାଇଙ୍କର ଗପ ତାଙ୍କର ବିଦ୍ୟାଳୟର ମେଗାଜିନରେ ପ୍ରକାଶ ପାଉଥାଏ । ବିଦ୍ୟାଳୟରେ ପାଠପଢ଼ା ତ୍ରୁଟି ଯୋଗୁ ହେଉ ବା ଅନ୍ୟ କାରଣରୁ ହେଉ ଦୁହେଁ କେହି ମାଟ୍ରିକ ପାସ କରି ପାରିଲେନାହିଁ । ଗଉଡ଼ଭାଇ ପରେ ଟାଇପ ଶିଖି ନୂଆ ଓଡ଼ିଶା ସେକ୍ରେଟେରିଏଟରେ ପ୍ରବେଶ କରି ଘରୋଇ ବିଭାଗର ସୁପରିଟେଣ୍ଡ ଭାବରେ ଅବସର ନେଲେ । ଅକାଳରେ ଚାଲିଗଲେ । ବଡ ସାହିତ୍ୟ ପ୍ରେମୀ ଓ ସମାଜ ସେବକ ଭାବରେ ପରିଚିତ ଥିଲେ । ବଂଶୀଭାଇ ଘରୋଇ ଚାକିରି କଣ କଲେ । ଅଳ୍ପ ବୟସରେ ମରିଗଲେ । ଗଉଡ଼ବାବୁ ଭାବରେବେଶି ଜଣା ଗୌରଚରଣ ଆମ ଗାଁରୁ ସଚିବାଳୟ ଚାକିରି କରିବାରେ ପ୍ରଥମ । ସମସ୍ତଙ୍କୁ ନାନା ପ୍ରକାର ସାହାଯ୍ୟ କରିବାକୁ ଭଗ୍ନସ୍ୱାସ୍ଥ୍ୟ ସତ୍ତ୍ୱେ ମରିବା ପର୍ଯ୍ୟନ୍ତ ସେ ଉଦ୍ୟମଶୀଳ ଥିଲେ । କୁଜଙ୍ଗରେ କୁଜଙ୍ଗ ଜମିଦାର ବର୍ଦ୍ଧମାନର ମହାରାଜା ପରିଚାଳିତ ବନବିହାରୀ ହାଇସ୍କୁଲ । ଜଗତସିଂହପୁରରେ ଥରେ ହାଇସ୍କୁଲ ଆରମ୍ଭ ହୋଇ ଭାଙ୍ଗିଯାଇଥିଲା । ୧୯୩୫ରେ ଅବସର ପ୍ରାପ୍ତ ପୁଲିଶ ସୁପରିଟେଣ୍ଡ ଚାଟରାର ଦେୱାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ର ଜଣେ ରାଜଭକ୍ତ କର୍ମଚାରୀ ଭାବରେ ସମ୍ରାଟ ପଞ୍ଚମ ଜର୍ଜଙ୍କର ରୌପ୍ୟ ଜୁବୁଲି (୨୫ ବରଷ ପୂର୍ତ୍ତି) ଉପଲକ୍ଷେ ନିଜ ଉଦ୍ୟମରେ ଗୋଟିଏ ହାଇସ୍କୁଲ ନୂଆକରି ଆରମ୍ଭ କରିଥାନ୍ତି । ୮ମ ଶ୍ରେଣୀ ଥିଲା । ୧୯୩୬ ଜାନୁଆରିରେ ନବମଶ୍ରେଣୀ ଖୋଲାଗଲା । କଟକ ସହର ବିଦ୍ୟାଳୟରେ ୭ ଟଙ୍କା ବୃତ୍ତି ମିଳିଲେ ମଧ୍ୟ ଅନ୍ୟ ସୂତ୍ରରୁ ଅର୍ଥ ନ ମିଳିଲେ ଚଳିବା ଅସଂଭବ । କୁଜଙ୍ଗ ଦୂରଜାଗା । ଗମନାଗମନ କଷ୍ଟକର । ନୂଆ ହାଇସ୍କୁଲ ରହିବ କି ନା ତାହା ଅସ୍ପଷ୍ଟ । ଏ ସବୁ ଚିନ୍ତାକର ମୋର ଶୁଭାକାଂକ୍ଷୀ ରଘୁନାଥ କାନୁନଗୋ ମୋତେ କଟକ ଆଣିଲେ । ସେ ସେତେବେଳକୁ କଟକ କିଲଟରୀରେ ଦଶ ଆଇନ ଅମଲା । ଖମ୍ବାକୁଳ ଆନନ୍ଦ ମହାନ୍ତିଙ୍କ ତଳତେଲେଙ୍ଗା ବଜାରର ଗୋଟିଏ ଘରେ ସେମାନେ କେତେଜଣ ମେସ କରି ରହୁଥାନ୍ତି । ମୁଁ ମଧ୍ୟ ସେଇଠି ରହିଲି ।

ଜିଲ୍ଲା ସ୍କୁଲ ଇନ୍ସିପେକ୍ଟର ଅଫିସ କିଲଟରୀ ପାଖରେ । ସେଠାରୁ ଜଣାପଡ଼ିଲା ବାଲିକୁଦାରୁ କେହି ୭ମ ଶ୍ରେଣୀ ବୃତ୍ତି ପାଇନାହାନ୍ତି । ସେ ମୋତେ ଆଉ କେତେଜଣ ବଦାନ୍ୟ ବ୍ୟକ୍ତିଙ୍କ ପାଖକୁ ନେଲେ । ମୋର କୃତୀତ୍ୱ ଓ ଆର୍ଥିକ ଦୁରାବସ୍ଥା ବୁଝାଇ

ହାଇସ୍କୁଲରେ ନାମ ଲେଖାଇବାର ବ୍ୟବସ୍ଥା ନିମନ୍ତେ ସାହାଯ୍ୟ ଲୋଡ଼ିଲେ । ତାହା ନିଷ୍ଫଳ ହେଲା । ପ୍ରାୟ ସପ୍ତାହେ ମୁଁ ତାଙ୍କ ମେସରେ ଥାଏ । ତାଙ୍କ ସାଙ୍ଗେ କଚେରୀଯାଏ । ସବୁ ସେକସନ ମାନ ବୁଲି ଦେଖେ । ହାକିମମାନେ ବସିବା ମିସଲ ଦେଖେ । ସେମାନଙ୍କର ନାମ ଲେଖା ବୋର୍ଡ଼ ଦେଖେ । କଲେକ୍ଟର ଗୋରାସାହେବ R P Ward ICS । ପରେ ରେଭିନ୍ୟୁ କମିସନଂର ଥିବାବେଳେ ପୂଜା ଛୁଟିରେ ଫାଇଲ ଧରି ଡ଼ଙ୍ଗାରେ ମହାନଦୀବିହାର ସହିତ ଫାଇଲ କାମ କରୁଥିବା ବେଳେ ଡ଼ଙ୍ଗା ଓଲଟି ପଡ଼ିବାରୁ ମୃତ୍ୟୁବରଣ କଲେ । ତାଙ୍କର କଚେରୀ ଆସିବା ମାତ୍ରେ ବିଗୁଲ ବାଜିବା ଗାର୍ଡ଼ ସାଲ୍ୟୁଟ ଦେବା ଓ ସେ ନିଜ ଇଜଲାସରେ ଯାଇ ବସିବା ଦେଖେ । ଅନ୍ୟ ହାକିମ ଡେପୁଟି ଓ ସବଡେପୁଟି ୧ମ ଓ ୨ୟ ଶ୍ରେଣୀ ମାଜିଷ୍ଟ୍ରେଟ। ଏମାନଙ୍କର ମକଦମା ବିଚାର ଦେଖେ । କଳାପୋଷାକ ପିନ୍ଧା ଓକିଲ ମୁକ୍ତ୍ୟାରମାନଙ୍କୁ ଦେଖେ । କଚେରୀ ବରଗଛ ମୂଳେ ନାନାପ୍ରକାରର ଔଷଧ, ଚେରମୂଳ, ଲୁଗାପଟା, ବହି ବିକ୍ରିହେବା ଦେଖେ । ମନରେ ଚିନ୍ତା ଆସେ ଗୋଟିଏ ହାକିମ କେମିତି ହୁଅନ୍ତି । ଏମିତି ମକଦମା ବିଚାର କରନ୍ତି । ଦିପାଖେ ଦିଜଣ କଳା ପୋଷାକ ପିନ୍ଧା ଓକିଲ ହାତହଲାଇ କଥାକହୁଥିବେ ! ସେ ତାଙ୍କୁ ମଝିରେ ମଝିରେ ତାଗିଦ କରୁଥିବେ । ମୁଁ ଏମିତି କରନ୍ତି । ପରବର୍ତ୍ତୀ ମୁହୂର୍ତ୍ତରେ ମନେପଡ଼େ ପାଠରେ ଏଇଠି ଡ଼ୋରି ବନ୍ଧା ହେଲାପରି ଲାଗୁଛି ଆଉ ଏସବୁ ଅଲିକ କଳ୍ପନା କାହିଁକି ? ବାପା ପାଠପଢ଼ା ନ ହେବା ଜାଣି ମତେ ନେବାକୁ ଗାଁରୁ ଆସିଲେ । ମୋର ମନଦୁଃଖ ଦେଖି ସେ କେତେଜଣ ବିଶିଷ୍ଟ ତାଙ୍କ ଚିହ୍ନାଲୋକଙ୍କ ଘରକୁ ନେଇଗଲେ । ସେଇଠି ମୋର ରହିବାର ବା ମତେ କିଛି ମାସିକ ସାହାଯ୍ୟ ଦେଲେ ନାମଲେଖାଇ କରଣ ସାମନ୍ତ ହଷ୍ଟେଲରେ ରହି ଟ୍ୟୁସନକରି ପାଠ ପଢ଼ିବାକୁ ମୋର ଦୁରାଶା ସେମାନଙ୍କୁ ଶୁଣାଇଲେ ।

ସେମାନେ ସମସ୍ତେ ଖୁବ୍ ସ୍ୱଚ୍ଛଳ । ନିଜର ଘର ଥାଏ ସହରରେ । ଗାଁରୁ ଧାନ ଚାଉଳ, ଚୂଡ଼ା, ନଡ଼ିଆ, ଗୁଡ଼ଘିଅ, ପୂଜାରି ଚାକର ଆସି ଥାଆନ୍ତି । ମୋର ରହଣି ସେମାନଙ୍କୁ ସାମାନ୍ୟ ବ୍ୟୟଭାର ହୋଇ ନଥା'ନ୍ତା । ମାତ୍ର ସମସ୍ତେ ନିରାଶା ବାଣୀ ଶୁଣାଇଲେ । ବାପା ଶେଷକୁ ମୋତେ ଘରକୁ ଧରି ଫେରିଲେ । ତେଣୁ ମୋର ଚତୁର୍ଥ ଋଣଦାତା ଏଇ ବିଦ୍ୟାପ୍ରେମୀ ରଘୁନାଥ କାନୁନଗୋ । ତାଙ୍କର ଅନେକ ସନ୍ତାନସନ୍ତତି

ମଧ୍ୟରୁ ଶେଷକୁ ଦୁଇ ପୁଅ ଓ ଗୋଟିଏ ଝିଅ ବଞ୍ଚିଥିଲେ । ବଡ ହରିହର । ବାଙ୍କିରେ ମାଟ୍ରିକ ଯାଏ ପଢ଼ିଥିଲେ । କଟକରେ ହୋମିଓପାଥି ଶିଖିଥିଲେ । କଳା ସାହିତ୍ୟ ଓ ସଂଗୀତରେ ରଚି। ନାନା ପ୍ରକାର ବାଦ୍ୟଯନ୍ତ୍ର ବଜାଇ ପାରୁଥିଲେ । ସେ ଅଳକା ନଦୀ ବା କେନାଲ କୂଳରେ ଅନୁସରିତ ପ୍ରଭୁ ବା ଅନ୍ୟ ଭଜନ କି ଜଣାଣ ବୋଲିଲେ ବହୁଦୂର ଗାଁ କମ୍ପିଯାଉଥିଲା । ବ୍ୟବସାୟ ମଧ୍ୟ କିଛିଦିନ କଲେ । ଗାଁରେ ଗୋଟିଏ ବଡ ଗୋଦାମ କରିଥିଲେ । ମାତ୍ର ଅବ୍ୟବସ୍ଥିତ ଚିତ୍ତ ହେତୁ କେଉଁଥିରେ କୃତକାର୍ଯ୍ୟ ନ ହୋଇ ଚାଷକାମ ଦେଖିଲେ । ଅନ୍ୟ ପୁତ୍ର ଗୌରାଙ୍ଗ ତିତିରା ମାମୁଁ ଘରକୁ ପୁଅ ହୋଇ ଯାଇଥିଲେ । ଭୂମ୍ୟାଧିକାରୀ ଓ ସମାଜସେବୀ ଭାବେ ସୁନାମ ଅର୍ଜନ କରିଥିଲେ । କନ୍ୟା ବୁଲ ଖମ୍ଭାକୁଳର ଜମିଦାର ଓ ସରକାରୀ କର୍ମଚାରୀ ରାଜକିଶୋରଙ୍କୁ ବିବାହ କରିଥିଲେ । ତାଙ୍କର ଏକ ସୁଖୀ ସମୃଦ୍ଧ ପରିବାର ଥିଲା । ଅବସର ନେଇ ସେ ଗାଁରେ ୧୯୫୬ ମସିହାରେ ପ୍ରାଣତ୍ୟାଗ କଲେ । ମୁଁ ଗାଁରେ ଥାଏ । ସାଙ୍ଗମାନଙ୍କ ମଧ୍ୟରୁ ଚନ (ଚକ୍ରଧର) ଫେଲ ହୋଇ ପୁଣି ସ୍କୁଲକୁ ଯାଉଥାଏ । ମୋର ପାସ କରିବାଟା ଯେମିତି ମୋର ଦୁର୍ଭାଗ୍ୟ ଓ କର୍ମଶୂନ୍ୟତା ପାଇଁ ଦାୟୀ ଏହା ଭାବୁଥାଏ । ଏମିତି ଜାନୁଆରି ମାସ ଶେଷ ହେବାକୁ ବସିଲା । ବାପାଙ୍କ ଦମ୍ଭ ମୁଁ ତ ପାଠ ପଢ଼ିଛି, ଟିକେ ଆଖିଦୃଶିଆ ଭଳିଆ ମୋଟାସୋଟା ହୋଇଗଲେ ତାଙ୍କ ଜଣାଶୁଣା ହାକିମ କାହାକୁ କହି ମତେ କେଉଁଥିରେ ଗୋଟାଏ ଭରତି କରିଦେବେ । ମୁଁ ନଗଦ ରୋଜଗାର କରିବି । ମନରେ ଦୁଃଖ କରିବାର ନାହିଁ ।

ଦେଶସ୍ୱାଧୀନ ହେବାର ଦଶ ବରଷ ପରେ ଆମରି ରାଜାମାର୍କା ପୁରୁଣା ମୁଦ୍ରା ଉଠିଗଲା । ନୂଆ ଟଙ୍କା ପଇସା ଚାଲିଲା । ସେତେବେଳର ପାହୁଲା, ଅଧଲା, ପଇସା ଅଣି, ଦୋଅଣି, ସୁଉକି, ଆଠଣି ବିଷୟରେ ଆମ ପିଲାମାନେ ଅନଭିଜ୍ଞ । ଏହାର କ୍ରୟକ୍ଷମତା ମଧ୍ୟ ସେମାନଙ୍କର କଳ୍ପନାଅତୀତ । ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ଶିଶୁସାହିତ୍ୟିକ ଗୋଟିଏ କବିତାରେ ଏହା ବୁଝାଇଛନ୍ତି । ତାହା ଲେଖୁଛି-

**ମୁଦ୍ରାପରିମାଣ**

୧) ତିନି ପାହୁଲାରେ ପଇସେ
ପହିଲୁ ପାହୁଲା ଦେଖିଦେଲେ ପିଲେ

କହିବ ଅଇଲା କାହୁଁସେ ।
ପଇସା ଗୋଟିଏ ହାତରେ ଧରି
ଦୋକାନରେ ବସି ବୁଢ଼ା ଭିକାରୀ ।
ସଉଦା ନେବାକୁ କହେସେ ।
ତିନି ପାହୁଲାରେ ପଇସେ ।

୨) ପଇସାକ ଦୁଇ ଅଧଲା
ପଇସାଏ ଦବ ମିଶାଇ ଖାଇବ
ଆସ କିଏ ମୁଢ଼ି ଉଖୁଡ଼ା ।
ଗରିବ ହାତରେ ନ ଥିଲା ଧନ
ପଇସା ଗୋଟିକେ କାଟିଲା ଦିନ ।
ଏ ଓଳି ଅଧଲେ ସେ ଓଳି ଅଧଲେ
ଜୀବନଟା ଖାଲି ବଞ୍ଚିଲା ।
ପଇସାକ ଦୁଇ ଅଧଲା ।

୩) ଚାରି ପଇସାରେ ଅଣାଏ
ଚାରିବରଷର ନାତିକୁ
ତାହାର ବୁଢ଼ିମାଆ ବସି ଗଣାଏ

୪) ଦୋଅଣି ଗୋଟିକ ଦିଅଣା
ତଳେ ପିଟିଦେଲେ ବାଜଣି ନ ଥିଲେ
ନକଲି ତାହାକୁ ନିଅନା

୫) ଚାରଣାରେ ଏକ ସୁଉକି
ଟିକି ଟିକି ଗାର କଡ଼ରେ
ଅଣ୍ଟାରେ ନନେବ ନଛକି ।

୬) ଅଧୁଲି ଗୋଟିକ ଆଠଣା
ଟଙ୍କାକର ଅଧାଦେବାକୁ ସୁବିଧା
ଟିକସ, ମଜୁରି, ଖଜଣା

ମାସକୁ ଯାହାର ପନ୍ଦରଟଙ୍କା
ଦିନକୁ ଅଧୁଲି ରହିଛି ଲେଖା

୭) ଷୋଳଣାରେ ଭାଇ ଟଙ୍କାଏ
ଥିଲେ କେହି ପର କରେ ଆପଣାର
ସବୁରି ମୁହଁ ସେ ବଙ୍କାଏ ।
ଦୁନିଆଟା ଆଜି ଟଙ୍କାରେ ବଶ
ଟଙ୍କା ଥିଲେ ଆସେ ଯଶ ପୌରୁଷ
କରାଏ ସୁନ୍ଦର ଲଗାଇ ହୁନ୍ଦର
କୋଟିଦଣ୍ଡବତ ପକାଏ
ଷୋଳଣାରେ ଭାଇ ଟଙ୍କାଏ ।

ଆଗରୁ ଲେଖିଛି ସେଇ ୧୯୩୫ରେ ମାଇନର ପରୀକ୍ଷା ଦେବାକୁ କଟକ ନେଇଥିଲି ୬୪ ଗୋଟି ପଇସା ଖରଚ କରି ପାରିଲି ନାହିଁ ।



# ଘରଛାଡ଼ି ଆଉ ଏକ ଘରେ

ବାଲିକୁଦା ମାଇନରସ୍କୁଲର ପାଠପଢ଼ାରେ ଭଲ ସୁନାମ ଥାଏ । ଅନ୍ୟ ଆଡ଼େ ଫେଲ ହେଲେ ପିଲାଏ ଆସି ୭ମ ଶ୍ରେଣୀରେ ନାମ ଲେଖାଇ ଏଠାରୁ ପରୀକ୍ଷା ଦେଇ ମାଇନର ପାସ କରନ୍ତି । ମୋ ସାଙ୍ଗରେ ଏମିତି ଜଣେ ପଢୁଥାନ୍ତି । ନାମ ଗୌରାଙ୍ଗ ଚରଣ ନାୟକ । ଆମ ସାଙ୍ଗରେ ପାସ କଲା । ମୋର ଦୁଃଖ ଜାଣିଥାଏ । ଘର ଜଗତସିଂହପୁର ନିକଟ ଖେରସ ବେଲପୋଖରୀ । ପ୍ରଧାନ ଶିକ୍ଷକ ରାଜକିଶୋର କାନୁନଗୋଙ୍କ ଶଶୁର ଘର ଚାନ୍ଦୁରା । ସେଇ ଗାଁକୁ ଲାଗି । ଗୌରାଙ୍ଗ ପ୍ରଧାନଶିକ୍ଷକଙ୍କ ପାଖକୁ ଏଇ ସଂପର୍କରେ ପହଞ୍ଚି ବରଷେ ଛାତ୍ରାବାସରେ ରହି ପାସ କଲା । ଗାଁରେ ପାସ କରି ଥାଏ । ବରଷିକିଆ ET ପ୍ରାଥମିକ ସ୍କୁଲ ଶିକ୍ଷକ ଟ୍ରେନିଂ ଜଗତସିଂହପୁରରେ । ସେ ବରଷ ପାଇଲା ନାହିଁ । ଆରବରଷକୁ ଅପେକ୍ଷାରେ ଥାଏ । ମତେ ଚିଠିଲେଖିଲା । ପୋଷ୍ଟକାର୍ଡ଼ ଖଣ୍ଡକର ଦାମ ଏକ ପଇସା । ଟଙ୍କାକର ୬୪ ଭାଗରୁ ଭାଗେ । ନୂଆ ହାଇସ୍କୁଲରେ ଅଷ୍ଟମ ଶ୍ରେଣୀରେ ପିଲା ନିଆଯାଉଛନ୍ତି । ଛାତ୍ରାବାସରେ ରହିବାକୁ ସୁବିଧା ଅଛି । ବହୁତ ପିଲାଙ୍କୁ ନୂଆ ସ୍କୁଲବୋଲି ଦରମା ଛାଡ଼ କରୁଛନ୍ତି । ଅନ୍ୟାନ୍ୟ ସୁବିଧା ଦେଉଛନ୍ତି । କେତେ ଜଣ ପିଲା ଛାତ୍ରାବାସରେ ମଧ୍ୟ ମାଗଣାରେ ରହୁଛନ୍ତି । ତାଛଡ଼ା ପାଖ ଗାଁରେ ରହି ଟ୍ୟୁସନ କରି ପଢ଼ିବାର ସୁବିଧା ଅଛି । ଗୌରାଙ୍ଗ ମୋ'ଠାରୁ ବୟସରେ ୨/୩ ବରଷ ବଡ଼ । ସାଂସାରିକ ଅଭିଜ୍ଞତା ସଂପନ୍ନ । ଚାନ୍ଦୁରାରେ ଆସିଲେ ଗୋଟିଏ ଟ୍ୟୁସନ ବ୍ୟବସ୍ଥା କରିହେବ କହି ମତେ ବାପାଙ୍କୁ ଧରି ଯିବାକୁ ପରାମର୍ଶ ଦେଲା ।

ଚାନ୍ଦୁରା ଗାଁର ଅବସ୍ଥିତି ବାପା ବୁଝିଲେ । ଦିନେ ଶୁଭଲଗ୍ନ ଦେଖି ଆମେ ବାପପୁଅ ଯାତ୍ରାକଲୁ ସେଠାକୁ । ଆମ ଗାଁରୁ ଚାଲିକରି ଦଶ ମାଇଲ ଗଲୁ । ସିପି ଗାଁ ପରେ ଛତରଖିଆସାହି ପଡ଼ିଲା । ନଅଙ୍କ ଦୁର୍ଭିକ୍ଷରେ ଯେଉଁମାନେ ରକ୍ଷଣଶୀଳ ସମାଜପତିମାନଙ୍କ ନିଷ୍ଠୁର ନିର୍ଦ୍ଦେଶର ଅବମାନନା କରି ଅନ୍ନଛତ୍ରରେ ପେଟବିକଳରେ ଖାଇଥିଲେ, ସବୁରି ସାଙ୍ଗରେ ଜାତିନିର୍ବିଶେଷରେ ଏକ ପଙ୍ଗତରେ ବସିଥିଲେ ସେମାନଙ୍କୁ ସମାଜ ଗ୍ରହଣ କଲାନାହିଁ । ଗାଁରେ ତାଙ୍କୁ ରଖାଇଦେଲେ ନାହିଁ । କେତେକ ଖ୍ରୀଷ୍ଟଧର୍ମ ଗ୍ରହଣକଲେ । ଅନ୍ୟକେତେକ ଏକାଠି ହୋଇ ନିଜର ଗୋଟିଏ ଗୋଷ୍ଠିଗଢ଼ି ଏକଜାଗାରେ ରହି ସେମାନଙ୍କ ମଧ୍ୟରେ ସାମାଜିକ ସଂପର୍କ ପ୍ରତିଷ୍ଠାକଲେ । ଅତି ଆନନ୍ଦର ବିଷୟ ଏ ସାହି ବର୍ତ୍ତମାନ ବିଲୁପ୍ତ । ସେମାନେ ସମସ୍ତେ ସମାଜର ମୁଖ୍ୟ ସ୍ରୋତରେ ଗୃହୀତ ଓ ସ୍ୱୀକୃତ । ସେହି ସାହି ପାଖରୁ ଉତ୍ତର ଦିଗକୁ ଭାଙ୍ଗି ଖେରସ ଗାଁ ଭିତରେ ଚର୍ଚ୍ଚିକା ଛକ ଟପି କେନାଲ ପାରିହୋଇ ରାସ୍ତାରେ ଗୋଟିଏ ଗହିର ପରେ ଆମେ ଚାନ୍ଦୁରାରେ ପହଞ୍ଚିଲୁ । ଗାଁର ଜମିଦାର ପରମାନନ୍ଦ ମହାନ୍ତି । ଡ଼ାକ ନାମ ହାତୁବାବୁ । ସେ ମଧ୍ୟ ସେତେବେଳେ ତିନିନମ୍ବର ଚଉକିଦାରୀ ଇଉନିଅନର ପ୍ରେସିଡ଼େଣ୍ଟ । ତାଙ୍କର ଲୋକ ସଂପର୍କ ଭଲଥାଏ । ପ୍ରସ୍ତାବିତ ହାଇସ୍କୁଲ ପରିଚାଳନା କମିଟିର ସେ ଜଣେ ମୁଖିଆ । ପ୍ରତିଷ୍ଠାତା ଶ୍ରୀକୃଷ୍ଣ ମହାପାତ୍ରଙ୍କର ମଧ୍ୟ ସମ୍ପର୍କୀୟ । ଆମେ ପହଞ୍ଚିଲାବେଳକୁ ଛାଇ ଲେଉଟିଲାଣି । ତାଙ୍କ ଘର ପୁରୁଣାକାଳିଆ । ଜମିଦାର ଢ଼ଙ୍ଗରେ ପଥର ପାହାଚ । ଉଚ୍ଚ ଚଉଡ଼ା ବାରଣ୍ଡା । ପୂର୍ବପାଖରେ ଗୋଟିଏ କାଠ ଓ ବେତବୁଣା ଆରାମ ଚଉକିରେ ସେ ବସିଥା'ନ୍ତି । ଅନୁମାନ କରି ବାପା ତାଙ୍କୁ ଅଣ୍ଟାଭାଙ୍ଗି ଜୁହାର ହେଲେ । ଗୌରାଙ୍ଗଠାରୁ ଖବରପାଇଁ ଆସିବା ଶୁଣାଇଲେ । ମୁଁ ଯଦି ତାଙ୍କ ଘରେ ରହି ତାଙ୍କ ପୁଅ ଯେ ସେଇ ବରଷ ମାଇନରସ୍କୁଲ ୪ର୍ଥ ଶ୍ରେଣୀରେ ନାମ ଲେଖାଇଥାଏ ତାର ଘରୋଇ ଟ୍ୟୁସନ କରେ ତାକୁ ସ୍କୁଲକୁ ନବାଆଣିବା କରେ ନିଜେ ହାଇସ୍କୁଲରେ ପଢ଼େ ତାହାହେଲେ ମୋର ଉଚ୍ଚଶିକ୍ଷା ସଂପନ୍ନହେବ ବୋଲି ଗୁହାରି କଲେ । ନିଜର ଘରଡ଼ିଅ ୧୫ ଡ଼େସିମିଲି ଛଡ଼ା ଅନ୍ୟ ଜମିବାଡ଼ି ନ ଥିବା ସାମାନ୍ୟ ଅର୍ଥରେ ଗୋଟିଏ ଉଠାଦୋକାନ କରି ଗୁଜରାଣ ମେଣ୍ଟାଇବା କହି ନିଜର ଆର୍ଥିକ ସ୍ଥିତି ବୁଝାଇଲେ । ତାଙ୍କ କଥା ଶୁଣୁ ଶୁଣୁ ହାଡ଼ିବନ୍ଧୁବାବୁ ତାଙ୍କୁ ଡ଼ାକି ନେଇ

ସେହି ବାରଣ୍ଡାରେ ଗୋଟିଏ ହାତଥିବା ବେଞ୍ଚରେ ବସିବାକୁ ନିର୍ଦ୍ଦେଶ ଦେଲେ । ତାଙ୍କ ପାଖରେ ଗୋଟିଏ ବାରିକ ପିଲା (ବାଟୁଆ)ବୋଲହାକ କରିବାକୁ ସବୁବେଳେ ମହଜୁଦ ଥାଏ । ତାକୁ ବରାଦ ଦେଲେ ଆମେ ଖାଇବାର ଜାଗା କରିବାକୁ । ବାପା ଖାଇକରି ଆସିଥିବା କହିଲେ ମଧ୍ୟ ପିଲାଟା ଥକିଯାଇଥିବ ଖାଇବା ଦରକାର କହି କୌଣସି ପ୍ରତିବାଦ ଗ୍ରହଣ କଲେ ନାହିଁ । ସେଇ କେତେ ପଦ କଥାରୁ ବାପା ତାଙ୍କ ଉଦାର ହୃଦୟର ପରିଚୟ ପାଇଲେ । ଆମେ ମୁହଁ ଗୋଡ଼ହାତ ଧୋଇବାକୁ ପାଣିଆସିଲା । ବାରିକ ଗାମୁଛା ଧରି ଠିଆ ହେଲା । ଆମେ ଖଞ୍ଜା ଭିତରକୁ ଗଲୁ । ସେଇଠି ଗୋଟିଏ ଘରେ ଆମର ଖାଇବାର ବ୍ୟବସ୍ଥା ହୋଇଥିଲା । ଖାଇସାରି ବାପାଙ୍କୁ ବିଶ୍ରାମ ନେବାକୁ କହିଲେ । ସେ ନିଜେ ଖାଇସାରିଥିଲେ । ସପ ପଡ଼ିଲା । ବାପା କିନ୍ତୁ ଏ ଅପ୍ରତ୍ୟାଶିତ ଅଭ୍ୟର୍ଥନାରେ ନିଜକୁ ଅପ୍ରସ୍ତୁତ ମନେ କରୁଥାଆନ୍ତି । ହାଡୁବାବୁ ବାପାଙ୍କୁ ମୋର ପାଠ ପଢ଼ା ଦାୟିତ୍ୱ ନେବେ ବୋଲି ଶୁଣାଇଲେ । ମୋର ଜୀର୍ଣ୍ଣ ଶୀର୍ଣ୍ଣ ଚେହେରା ଦେଖି ମୁଁ ପାଠ ପଢାଇ ପାରିବି ଏହା ତାଙ୍କ ହୃଦବୋଧ ହେଉନଥାଏ । ସଂଧ୍ୟାରେ ଲଣ୍ଠନ ଜଳାଗଲା । ଖଞ୍ଜାରେ ଗୋଟିଏ ଘରେ ପୁଅ ଗେଣ୍ଡୁ ବସି ପଢ଼େ । ମୋତେ ତା ବହିପତ୍ର ଦେଖାଇ ଦିଆଗଲା । ସେ ଚତୁର୍ଥରେ କଥାବଳୀ ଚନ୍ଦ୍ରମୋହନ ମହାରଣାଙ୍କର ଲେଖା ପଢୁଥାଏ । ତାର ଶ୍ରେଣୀରେ ବହିର ୨ୟ ପାଠ୍ୟ ବକୁଳ ପଦ୍ୟ ପଢ଼ାଯାଉଥାଏ । ମତେ ଛାତ୍ରର ବାପା କହିଲେ ତାକୁ ପଢ଼ିବୁଝାଇ ପାରିବକି ? ମୁଁ କଥାବଳୀ ଦେଖି ନ ଥିଲି । ଆମେ ତା ବଦଳରେ ୪ର୍ଥ ୫ମରେ ସାହିତ୍ୟ କୁସୁମ ପଢୁଥିଲୁ । ମୁଁ ବହି ଆଣି ଗେଣ୍ଡୁକୁ ପଦ୍ୟଟି ବୁଝାଇବାକୁ ଉଦ୍ୟମ କଲି । ମାଆ ସରସ୍ୱତୀ ମୋ କଣ୍ଠରେ ବସିଲେ ।

"ମହୀରୁହକୁଳେ ତୁହି ଅଟୁରେ ବକୁଳ
ପର୍ଣ୍ଣେ ଫଳବର୍ଣ୍ଣେ ପୁଣି କୁସୁମେ ମଞ୍ଜୁଳ"

ପ୍ରଥମେ ଏଇ ଦୁଇ ଧାଡ଼ି ମୁଁ ପ୍ରତି ପଦର ଅର୍ଥ ଓ ଶେଷରେ ସମୁଦାୟ ବର୍ଣ୍ଣନା ଗେଣ୍ଡୁକୁ ବୁଝାଇଦେଲି । ପଚାରିଲି କେଉଁ ଶବ୍ଦଟାର ମାନେ ତାକୁ ଅଜଣାରହିଲା । ସେ ମନାକଲା । ମୋର ଅଣଦେଖାରେ ହାଡୁବାବୁ ମୋର ପାଠପଢ଼ାଇବାର ପଦ୍ଧତି ଦେଖୁଥାନ୍ତି । ତାପରେ ଇଂରେଜି ସାମାନ୍ୟ କେଇ ଧାଡ଼ି ପଢ଼ାଗଲା । ତାକୁ ଘୁମ ମାଡ଼ିଲା । ପଢ଼ା ସରିଲା । ମୋ ବାପାଙ୍କୁ ହାଡୁବାବୁ ବୁଝାଇଦେଲେ ଆପଣଙ୍କ ପୁଅ

ଆଜିଠାରୁ ଏ ଘରର ଗୋଟାଏ ମଣିଷ । ତାର ପାଠପଢ଼ା ଭଲମନ୍ଦ ସବୁ ମୁଁ ବୁଝିବି । ଆପଣଙ୍କର ଆଜିଠାରୁ ପୁଅପାଇଁ ଚିନ୍ତା କରିବା ଦରକାର ନାହିଁ । ତେବେ ମଝିରେ ମଝିରେ ଆସି ସେ କିପରି ଅଛି ଟିକେ ଦେଖିଗଲେ ଆମେ ଖୁସିହେବୁ । ହାଡୁବାବୁଙ୍କର ମାଆ ଖୁବ ବୟସ୍କା । ସାମାନ୍ୟ ପାଠ ପଢ଼ିଥିଲେ ମଧ୍ୟ ଅଳ୍ପବୟସରେ ବିଧବା ହୋଇ ଜମିଦାରି ପରିଚାଳନା, ଘରର ଆୟ, ବ୍ୟୟ, ବନ୍ଧୁ ବାନ୍ଧବ, ପ୍ରଜାପାଟକ, ଯାନିଯାତରା ସବୁ ନିଖୁଣ ଭାବରେ ଚଳାଉଥାଆନ୍ତି । ୩ ଝିଅ । ବଡ଼ ଆମ ହେଡ଼ମାଷ୍ଟର ରାଜକିଶୋରଙ୍କ ସହଧର୍ମିଣୀ । ୨ୟ ପାଖ ଗାଁ ସୁଜଙ୍ଗରେ ଓ ୩ୟ ଡେ଼ଙ୍ଗା ପିତେଇପୁରରେ ବାହାହୋଇଥିଲେ । ଖୁବ ସ୍ୱଚ୍ଛଳ ଘର ମାତ୍ର ଦୁର୍ଭାଗ୍ୟକୁ ଦୁହେଁ ବିଧବା । ସାନଙ୍କର ଗୋଟିଏ ପୁଅ ଧଡ଼ିଆ(ରାମଚନ୍ଦ୍ର) । ତାଙ୍କ ପରିବାରରେ କାହାର କୃଷ୍ଣ ଦେଖାଯାଇଥିବାରୁ ତାକୁ ଅଲଗା କରି ଆଣି ମାମୁଁ ଘରେ ରଖାଯାଇଥାଏ । ଗେଣ୍ଡୁ ସାଙ୍ଗର । ସେ ପାଠପଢ଼ା ସାରି ସଚିବାଳୟରେ କାର୍ଯ୍ୟ କରି ଅବସର ନେଲା । ଦୁଇ ପୁଅ । ବଡ଼ ହାଡୁବାବୁ । ତାଙ୍କର ପ୍ରଥମ ସ୍ତ୍ରୀର ଦୁଇ ସନ୍ତାନ । ଗେଣ୍ଡୁ ବୟସ ୬/୭ ବରଷ । ସାନଟି ଟିକିଲି ବୟସ ଦେଢ଼/ଦୁଇ ବରଷ । ପ୍ରଥମ ସ୍ତ୍ରୀ ମଣ୍ଡାସାହିର ଗଦାଧର ପଟ୍ଟନାୟକଙ୍କ ଭଉଣୀ । ସେ ଅକାଳରେ ପ୍ରାଣତ୍ୟାଗ କଲେ । ହାଡୁବାବୁଙ୍କ ୨ୟ ପତ୍ନୀ ଖେରସ ଚୌଧୁରୀ ପରିବାରର ବାଳକୃଷ୍ଣ ମଙ୍ଗରାଜଙ୍କ ନାତୁଣି । ୨ୟ ସୋମନାଥ ଡ଼ାକ ନାମ ସାଉବାବୁ । ସେ ଜମିବାଡ଼ି ଚାଷ ଦେଖିବା ସହିତ ପୂର୍ତ୍ତ ବିଭାଗର ଛୋଟ ଛୋଟ ଠିକାକାମ ନିଅନ୍ତି । ତାଙ୍କ ଶ୍ୱଶୁର ଘର ବୋରିକିନା ପାଖ ଅପଣ୍ଡରା । ଏରସମା ଥାନାରେ । ବୁଢ଼ୀ ମାଆଙ୍କୁ ଦୁଇ ପୁଅ ବିଶେଷ ଆଜ୍ଞାକାରୀଭାବେ ସେବା କରୁଥାଆନ୍ତି । ବୁଢ଼ି ଜେଜେମା ମୋ ପ୍ରତି ଅହେତୁକ କରୁଣା ଦେଖାଇ ବାପାଙ୍କୁ କହିଲେ "କାଙ୍ଗାଳି, ତାର ପାଠପଢ଼ା ଶେଷଯାଏ ସେ ଏ ଘରର ପୁଅ । ତୁମକୁ ମୁଁ ଜବାବ ଦେଉଛି ତାର କିଛି ଅସୁବିଧା ହେବ ନାହିଁ । ଏଇଠି ସେ ଯେପରି ଗାଁ ଓ ଘର କଥା ଭୁଲିଯିବ ମୁଁ ସେ ଦାୟିତ୍ୱ ନେଉଛି ।" ବାପା ଆନନ୍ଦ ଗଦ ଗଦ ହୋଇ ମୁଣ୍ଡିଆ ମାରିଲେ । ରାତିରେ ଖିଆପିଆ ସାରି ଶୋଇବାର ବ୍ୟବସ୍ଥା ହେଲା । ପରଦିନ ସକାଳେ ସେ ଗାଁକୁ ଫେରିଲେ । ମନ ଖୁସି ଯେ ମୋର ଅନ୍ତତଃ ପାଠପଢ଼ା ଆଉ ଚାରି ବରଷ ସୁରୁଖୁରୁରେ ହୋଇଯିବ । ଦାଣ୍ଡମେଲାରେ ଗୋଟିଏ ଟୁଙ୍ଗି ଘର

ଥାଏ । ଖଟ ସେଠି ପଡ଼ିଥାଏ । ମୁଁ ସେଇଠି ରହିବାର ଜାଗା ହେଲା । ମୋର ଜିନିଷ କଣ ବା ଥାଏ ତଥାପି ମୋର ସ୍ୱତନ୍ତ୍ରତା ପ୍ରକାଶ ପାଇ ଏ ବ୍ୟବସ୍ଥା ହେଲା । ସ୍କୁଲ ନଥିଲେ ଦିନଯାକ ମୁଁ ଭିତର ଖଞ୍ଜାରେ କଟାଏ । ରାତିରେ ଟୁଙ୍ଗିଘରେ ଶୁଏ । ମେଲାରେ ଅନ୍ୟ କେହି ନ ଶୋଉଥିଲେ ଡ଼ର ଲାଗେ । ଭିତର ଖଞ୍ଜାରେ ବୁଢ଼ୀ ମାଆଙ୍କ ଘରେ ଶୁଏ । ଗେଣ୍ଠୁ ଦାଣ୍ଡ ମେଲାରେ ଟୁଙ୍ଗିଘର ପାଖେ ପଡ଼େ ।

ବୟସ ୧୩ବର୍ଷ ୩ମାସରେ ଗାଁ ଘର ଛାଡ଼ିଲି ପାଠପଢ଼ିବାକୁ । କେବେ ଭାବି ନଥିଲି ଏହା ମୋର ଚିର ପ୍ରବାସର ଉପକ୍ରମ । ନବେ ବରଷ ପାଖେଇବାକୁ ବସିଲାଣି । ବି.ଏ. ପାସକରି ମାତ୍ର ଦେଢ଼ ବରଷ ଗାଁରେ ଥିଲି । ବାଲିକୁଦାରେ ଶିକ୍ଷକତା ମୋର ବିବାହ ଓ ପ୍ରାୟ ଛ'ମାସ ଗାଁରେ ଦାମ୍ପତ୍ୟଜୀବନ ଉପଭୋଗ । ତା'ପରେ ପନ୍ଦର ଦିନରୁ ଅଧିକ ଏକାଦିକ୍ରମେ କେବେ ଗାଁରେ ଇଷ୍ଟଦେବ ଶ୍ରୀ ଗଦାଧର ରହିବାର ସୁଯୋଗ ନା ଦୁର୍ଯୋଗ ଦେଇ ନାହାନ୍ତି । ଉଦ୍ଦେଶ୍ୟ ସେଇ ଏକା ଜାଣନ୍ତି । ମାତ୍ର ଶୈଶବ ସ୍ମୃତି ଭୁଲି ହୁଏ ନାହିଁ । ଛୋଟ ମୋର ଗାଁ ନୁହେଁ ମାତ୍ର ତାହା ପରି ଅନ୍ୟତ୍ର ମତେ ସାରା ଓଡ଼ିଶାରେ କେଉଁଠି ଏତେ ଆନନ୍ଦଦାୟକ ଲାଗିନାହିଁ ଗାଁର ନାନା ଅଭାବ ଅନାଟନ ସତ୍ତ୍ୱେ । ବାପା ସକାଳୁ ବିଦା ହୋଇଗଲେ । ପ୍ରାୟ ୧୦ଟା ବେଳକୁ ହାଡୁବାବୁ ମତେ ଧରି ଜଗତସିଂହପୁର ବଜାରକୁ ଚାଲି ଚାଲି ବାହାରିଲେ । ବାରିକ ପିଲା ସାଙ୍ଗରେ । ବାଟରେ ଅନେକ ଲୋକଙ୍କ ସହିତ ସାକ୍ଷାତ ହେଉଥାଏ । ଅନେକ ତାଙ୍କ ସାଙ୍ଗରେ ଚାଲିଚାଲି ନିଜର ସମସ୍ୟା ଶୁଣାଇ ସମାଧାନ ଲୋଡୁଥା'ନ୍ତି । ବଡ଼ ବଜାରରେ ତାଙ୍କର ଦୋକାନ ଓ ଭଡ଼ାଘର ମଧ୍ୟ ଥାଏ । ଚାନ୍ଦୁରାରୁ ଆସିବାକୁ ନାଳ ପାରି ହେବାକୁ ପଡ଼େ, ନାଳରେ ପାଣିଥିଲେ ବୁଲି କରି ସେକସନ ଅଫିସ ପାଖରେ ଥିବା ପୋଲରେ ନାଳ ପାରିହୋଇ ଜୟପୁର ରାସ୍ତାକୁ ଆସିବାକୁ ପଡ଼େ । ଆମେ ପ୍ରାୟ ୩ କିଲୋମିଟର ଯାଇ ପ୍ରସ୍ତାବିତ ହାଇସ୍କୁଲରେ ପହଞ୍ଚିଲୁ । ଜଗତସିଂହପୁରରେ ସେତେବେଳେ ଦୁଇଟି ବଜାର । ବଡ଼ ବଜାର କଟକ ଆଡୁ ଆସିଲେ ଆଗ ପଡ଼ିବ । ସେଠାରେ ବଡ଼ ଗୋଦାମ, ଗୋଟାଏ ଦିଇଟା ବଣିଆ ଦୋକାନ, ବହି ତେଜରାତି ଦୋକାନ କେତୋଟି ମଧ୍ୟ । ଶିକ୍ଷକ ଟ୍ରେନିଂ ସ୍କୁଲ E.T School ଓ ସେଠାରେ ପଢୁଥିବା ଗୁରୁଛାତ୍ରମାନଙ୍କର ପ୍ରାକଟିସ୍ ଉ.ପ୍ରା.ସ୍କୁଲ । ସେଇଠି ଐତିହାସିକ

ଫିରଙ୍ଗିକୁଦ । ମାଛଗାଁରୁ ଆସି ଫିରଙ୍ଗିମାନେ ସେଇଠି ଡ଼େରା ପକାଇଥିଲେ । ଦେଓ୍ୱାନ ବାହାଦୁରଙ୍କ ଉଦ୍ୟମରେ ବିହାର ଓଡ଼ିଶା ପ୍ରତ୍ନତତ୍ତ୍ୱ ବିଭାଗ ଖନନ କାର୍ଯ୍ୟ ଆରମ୍ଭ କରିଥିଲେ କିଛି ଫଳ ମିଳିନଥିଲା । ଖୋଦ ବିହାର ଓଡ଼ିଶାର ଲାଟ ସାହେବ ସାର ହେନେରି ହୁଇଲର ଏ ଖନନ କାର୍ଯ୍ୟ ଆରମ୍ଭ କରିଥିଲେ । ଇଂରେଜମାନଙ୍କ ଆଗରୁ ସେଇଠି ମରହଟ୍ଟାମାନଙ୍କର ଦୁର୍ଗ ଥିଲା ଯାହାର ଅବଶେଷ ସେଇ କୁଦ । ସଂପାଦକ ତାଙ୍କ ଉଦ୍ୟମରେ ଖନନକାର୍ଯ୍ୟ ବିଫଳ ହେଲାରୁ ସେଇଠି କୁଦଉପରେ ପ୍ରସ୍ତାବିତ ହାଇସ୍କୁଲର ଛାତ୍ରବାସ ଓ ନୂତନ ବିଦ୍ୟାଳୟ ଗୃହ ତିଆରି କରାଉଥାଆନ୍ତି ।

ମାତ୍ର ୧୯୩୫ରେ ୮ମ ଶ୍ରେଣୀ ମାଇନର ସ୍କୁଲ ହତାରେ ଜିଲ୍ଲାବୋର୍ଡ଼ ନୂତନ ତିଆରି କରିଥିବା ଶୂନଛାତ brick concrete ୩ଟି ବଡ଼ କୋଠରୀଯୁକ୍ତ କୋଠାରେ ଆରମ୍ଭ ହୋଇଥିଲା । କାମ ନ ସରିବାରୁ ପରବର୍ଷ ୧୯୩୬ରେ ସେଠାରେ ମଧ୍ୟ ୯ମ ଶ୍ରେଣୀ ଖୋଲାଗଲା । ଜିଲ୍ଲାବୋର୍ଡ଼ ଏଥିପାଇଁ ଅନୁମତି ଦେଇଥାଏ । ଏହା ସାନ ବଜାରରେ କଟକରାସ୍ତା ଏଇଠି ଦିଭାଗ ହୋଇ ଗୋଟିଏ ମାଛଗାଁକୁ ଓ ଉତ୍ତରାଂଶଟି ଜୟପୁରକୁ ଯାଇଥାଏ । କୁଜଙ୍ଗ ଯିବାକୁ ଏଇ ବାଟ ଜୟପୁରଯାଏ ନାଲିଗୋଡ଼ି ରାସ୍ତା ତା'ପରେ କଚା ରାସ୍ତା । ବାଲିକୁଦା ରାସ୍ତା ବେଶି ଜନାକୀର୍ଣ୍ଣ । ଏ ରାସ୍ତାରେ ଜିଲ୍ଲାବୋର୍ଡ଼ ପରିଚାଳିତ ଡ଼ାକ୍ତରଖାନା । ଅଞ୍ଚଳରେ ବେଶି ଲୋକପ୍ରିୟ । ଜୟପୁର ରାସ୍ତାରେ ପଶୁ ଡ଼ାକ୍ତରଖାନା । ଜଣେ ପଶୁଡ଼ାକ୍ତର ବାଲିକୁଦା ଓ ଅନ୍ୟ ଜନଗହଳି ବସ୍ତିମାନଙ୍କୁ ଯାଇ ପଶୁପାଳନ ଓ ପଶୁଚିକିତ୍ସାରେ ପରାମର୍ଶ ଦିଅନ୍ତି । ସବରେଜିଷ୍ଟର ଅଫିସ, ଥାନା ଦାରୋଗାଙ୍କ ବାସସ୍ଥାନ ଡ଼ାକବଙ୍ଗଳା ବସଷ୍ଟାଣ୍ଡ ଜିଲ୍ଲାବୋର୍ଡ଼ ସବଆସିଷ୍ଟାଣ୍ଡ ଇଂଜିନିଅରଙ୍କ ଘର ସାନ ବଜାରରେ ।

ଜଗତସିଂହପୁର ବାଲିକୁଦାରେ ନଅଙ୍କ ଉତ୍ତାରେ ମହାନଦୀ ବାରେଜରୁ ଜଳସେଚନ କେନାଲ ଖୋଲାଯାଇଥିଲା । ତାର ସୁପରିଟେଣ୍ଡେଣ୍ଟ ରକ୍ଷଣାବେକ୍ଷଣ ଜଳକର ଅସୁଲ ନିମନ୍ତ ଏସଡ଼ିଓ ଜଳସେଚନ ଓ ଜିଲ୍ଲାଦାରଙ୍କର କାର୍ଯ୍ୟାଳୟ ଓ ବାସସ୍ଥାନ ଏଇ ସାନ ବଜାରରେ । ବଡ଼ବଜାର ଦଶନମ୍ବର ପୋଲରୁ ଗୋଟିଏ ଚଉଡ଼ା ନାଳ ସାନବଜାର ଦେଇ ସହରଭିତରେ ଯାଇଥାଏ । ଖରାଦିନ ବ୍ୟତୀତ ଅନ୍ୟ ସମୟରେ ଏଥିରେ ଜଳର ଅଭାବ ନ ଥାଏ । ଏହା ସର୍ବସାଧାରଣଙ୍କର ଜଳାଭାବ ଦୂରକରେ ।

ମୁଁ ମୋର ଧର୍ମପିତାଙ୍କ ସହିତ ହାଇସ୍କୁଲରେ ପହଞ୍ଚିଲି । ଶିକ୍ଷକ ୩ଜଣ । ପ୍ରଧାନ ଶିକ୍ଷକ ବନମାଳୀ ମିଶ୍ର BA BED । ବୟସ୍କ । ବଲାଙ୍ଗିରରେ ପ୍ରଧାନ ଶିକ୍ଷକ ଓ ରାଜକୁମାରଙ୍କର Guardian Tutor ଥିଲେ । ପରେ କଟକ ପ୍ୟାରୀମୋହନ ଏକାଡ଼େମୀର ପ୍ରଧାନ ଶିକ୍ଷକ ହେଲେ । ତାକୁ ଛାଡ଼ି ସେ ପ୍ରସ୍ତାବିତ ହାଇସ୍କୁଲକୁ ଆସିଥା'ନ୍ତି । ସେ ଜଣେ ସାହିତ୍ୟିକ ମଧ୍ୟ । ପ୍ରାଚୀନ ରାଗରେ ରଚିତ ଛାନ୍ଦ, ଅଳଙ୍କାର ଯମକ ଯୁକ୍ତ ତାଙ୍କର ପ୍ରକାଶିତ 'ଉଦ୍ଧାର ବା ରାଜା ହରିଶ୍ଚନ୍ଦ୍ର' କ୍ଷୁଦ୍ର କାବ୍ୟ ସେତେବେଳେ ଲୋକପ୍ରିୟ ଥାଏ । ୨ୟ ଶିକ୍ଷକ କିଶୋରୀକିଙ୍କର ଦାସ । ଅତି ଅଳ୍ପ ବୟସର । ପ୍ରାୟ ୨୫ ଭିତରେ ହେବ । I.Sc ପାସପରେ ପଢ଼ାଛାଡ଼ି ପ୍ରଥମେ କୁଜଙ୍ଗ ହାଇସ୍କୁଲରେ ଥିଲେ । ସେଠାରୁ ଆସି ନୂଆ ହାଇସ୍କୁଲରେ ସଂପାଦକଙ୍କ ପ୍ରେରଣାରେ ଯୋଗ ଦେଇଥାଆନ୍ତି । ଘର ଭଦ୍ରକ ବଉଦପୁର । ତାଙ୍କ ବଡ଼ ଭାଇ ବୈଦ୍ୟନାଥ ଦାସ ସେତେବେଳେ କଟକର ସବଜଜ । କିଶୋରୀବାବୁ ବାବାଜୀ ରାମଦାସଙ୍କ ଦୀକ୍ଷାରେ ଆଜୀବନ ବୈଷ୍ଣବ ବ୍ରହ୍ମଚାରୀ । ଭଲ ପାଠ ପଢ଼ାନ୍ତି । ଗଣିତ ଭୂଗୋଳ ପଢ଼ାଉଥାଆନ୍ତି । ପୁଣି ଯାଦବଚନ୍ଦ୍ର ଚକ୍ରବର୍ତ୍ତୀ ପାଟିଗଣିତ, କାଳିପ୍ରସାଦ ବସୁ ବୀଜ ଗଣିତ, ଶାରଦାକାନ୍ତ ଗାଙ୍ଗୁଲି ଜ୍ୟାମିତି, ପ୍ରତ୍ୟେକ Exercise ଶ୍ରେଣୀରେ କରାନ୍ତି ପୁଣି ଘରକୁ କରି ଆଣିବାକୁ ପାଠ ଦିଅନ୍ତି । ଭୂଗୋଳ ସେମିତି Physical + Political ପ୍ରାକୃତିକ ଓ ରାଜନୈତିକ ମାନଚିତ୍ର ଓ ଗ୍ରାଫ ଦେଇ ସରଳ ଇଂରାଜିରେ ବୁଝାଇ ଦିଅନ୍ତି । ମାତୃଭାଷା ଓ ସଂସ୍କୃତ ବ୍ୟତୀତ ଆଉ ସବୁର ମାଧ୍ୟମ ଇଂରାଜୀ । ପଣ୍ଡିତ ଗଦାଧର ମହାପାତ୍ର କାବ୍ୟତୀର୍ଥ ସଂସ୍କୃତ ଓ ଓଡ଼ିଆ ପଢ଼ାନ୍ତି । ପୁରୀର ନିକଟବର୍ତ୍ତୀ ଶାସନର ଅଧିବାସୀ । ଟୋଲରେ ପଣ୍ଡିତ ଥିଲେ । ଭବିଷ୍ୟତ ଉନ୍ନତି ଆଶାରେ ପ୍ରସ୍ତାବିତ ହାଇସ୍କୁଲରେ ଯୋଗ ନେଇଥାଆନ୍ତି । ଶିକ୍ଷକ ଦୁଇଜଣ ଅସ୍ଥାୟୀ ଛାତ୍ରାବାସରେ ଥାଆନ୍ତି । ପ୍ରଧାନ ଶିକ୍ଷକ ଅଲଗା ବସାଘର ନେଇଥାଆନ୍ତି । ନାମଲେଖା ଚାଲିଥାଏ । ମାସ ସରିବାକୁ ଥିଲେ ମଧ୍ୟ ଅଷ୍ଟମଶ୍ରେଣୀରେ ବହୁତ ସ୍ଥାନ ଖାଲିଥାଏ । ତେଣୁ ମୋର ନାମ ଲେଖାଇବାରେ କିଛି ସମସ୍ୟା ହେଲାନାହିଁ । ମାସିକ ଦରମା ନାମଲେଖାଫିସ ସହିତ ଅନ୍ୟାନ୍ୟ ଦେୟ ହାଡ଼ୁବାବୁ ଦେଲେ । ପ୍ରଧାନ ଶିକ୍ଷକ ମୋତେ ପାଠ୍ୟପୁସ୍ତକର ଗୋଟିଏ ତାଲିକା ଦେଲେ । ୮ମ ଓ ୯ମ ଶ୍ରେଣୀ ଖୋଲିବାକୁ

ସରକାରୀ ଅନୁମତି ଥିଲେ ମଧ୍ୟ ସହବନ୍ଧନ affiliation ମିଳି ନ ଥାଏ ଯାହାଫଳରେ ପାଟଣା ବିଶ୍ୱବିଦ୍ୟାଳୟ ୧୯୩୯ ପରୀକ୍ଷା ଦେବାକୁ ଛାତ୍ରମାନେ ସକ୍ଷମ ହେବେ । ମାଟ୍ରିକରେ ଆଠଶହ ନମ୍ବର ପରୀକ୍ଷା ଦେବାକୁ ପଡ଼େ । ଇଂରେଜୀ ଦୁଇପତ୍ର ଦୁଇଶହ ଗଣିତ, ଓଡ଼ିଆ, ସାହିତ୍ୟ, ସଂସ୍କୃତ, ଇତିହାସ, ଭୂଗୋଳ ଶହେ ଲେଖା । ଦଶମ ଶ୍ରେଣୀରୁ ଆଉ ଇଚ୍ଛାଧିନ ବିଷୟ ଆଉ ଶହେ । ସଂସ୍କୃତ ଶିକ୍ଷା ଅଷ୍ଟମରୁ ବାଧ୍ୟତାମୂଳକ ମାତ୍ର ତା ବଦଳରେ in lack of ଜଣେ ଆଉ ଗୋଟିଏ ଓଡ଼ିଆ ଭାଷାପତ୍ର ନେବାର ସୁବିଧା ଥାଏ । ଯାହାକୁ ଲିଭ ଓଡ଼ିଆ କୁହାଯାଉଥିଲା । ଦଶମରୁ ସଂସ୍କୃତ ଗଣିତ ଓ ଓଡ଼ିଆ ଇଚ୍ଛାଧିନ ବିଷୟ ଥାଏ ମାତ୍ର ଜଣେ ଛାତ୍ର ୨ଟିରୁ ଅଧିକ ଓଡ଼ିଆନେବା ବାରଣ କରାଯାଇଥାଏ । ମୋର ନାମ ଲେଖା ସାରି ଅଭିଭାବକ ଚାଲିଗଲେ । ମୁଁ ସାଙ୍ଗସାଥି ଯେଉଁମାନେ ରାସ୍ତାଦେଇ ଯିବେ ସେମିତି ବନ୍ଧୁ ଖୋଜିଲି । ଚାନ୍ଦୁରା ହୋଇ ପାଟଣିଗାଁ ବୋଲି ଆଉ ଗୋଟିଏ ଗାଁକୁ ଯିବାକୁ ପଡ଼େ । ଆଗକୁ ଅଧ ମାଇଲବାଟ । ଦେଖିଲି ସେଇ ଗାଁର ଗୋଟିଏ ପିଲା ଦିବ୍ୟସିଂହ ରାଉତ ସେଇବର୍ଷ ସ୍ଥାନୀୟ ମାଇନର ସ୍କୁଲରୁ ପାସକରି ନାମ ଲେଖାଇଛି । ଗାଁରୁ ଯିବା ଆସିବା କରୁଛି । ସେଇ ପ୍ରଥମେ ମୋର ସାଙ୍ଗ ହେଲା । ଯିବା ଆସିବା ବସିବା ଓ ପାଠପଢ଼ିବାରେ ବଡ଼ ସାଥିହେଲା । କାଳକ୍ରମେ ଅନ୍ୟ ଯେଉଁମାନେ ଜୁଟିଲେ ତାଭିତରେ ଜୟକୃଷ୍ଣ ମିଶ୍ର (କଣ୍ଟାବଲ୍ଲଭପୁର) ବାଇଧର ତ୍ରିପାଠୀ (ବଳରାମପୁର) ଭଗବାନ ରଥ (କାଁପୁର) ଇତ୍ୟାଦି । ଏ ତିନିଜଣଙ୍କ ନାମ ବିଶେଷ ମନେରଖିବାର କାରଣ ଆମେ ଏକାଠି ପାସକରି କଲେଜରେ ନାମ ଲେଖାଇଲୁ । ଜୟକୃଷ୍ଣ ବାଇଧର ମୁଁ ଏକାସାଙ୍ଗରେ ବିଏ ପାସକଲୁ । ଆଇ.ଏ ପରେ ଭଗବାନ ଚାକିରି କଲା । ଜିଲ୍ଲା ଅଫିସ ସୁପରିଟେଣ୍ଡ କଟକଭାବରେ ଅବସର ନେଲା । ଜୟକୃଷ୍ଣ ଆଲାହାବାଦରୁ ଅର୍ଥନୀତିରେ ଏମ ଏ ପାସ କରି ଅଧ୍ୟାପକ ହେଲା । ଯୋଜନା ସମନ୍ୱୟ ବିଭାଗର ଡେପୁଟି ସେକ୍ରେଟାରୀ ପରେ ଅଧ୍ୟକ୍ଷ, ବିଭାଗୀୟ ମୁଖ୍ୟ ହୋଇ ଅବସର ନେଲା । ବାଇଧର ଯୋଗାଣ ବିଭାଗର ଜିଲ୍ଲା ଅଧିକାରୀ, ସବଡେ଼ପୁଟି, ଏସଡ଼ିଓ ହୋଇ ଶେଷରେ ମୋ ସହିତ ଅତିରିକ୍ତ ଜିଲ୍ଲାପାଳ ଭାବେ ଅବସର ନେଲା । ଏହି ତିନିଜଣ ମଧ୍ୟ ମୋର ସ୍କୁଲ ଓ କଲେଜ ଜୀବନରେ ମୋତେ ପାଠ୍ୟପୁସ୍ତକ ଯୋଗାଇବାରେ କାର୍ପଣ୍ୟ କରି ନ ଥିଲେ ବିଶେଷ କରି ପରୀକ୍ଷା ପୂର୍ବରୁ

ଯେତେବେଳେ ସେମାନଙ୍କର ମଧ୍ୟ ତାହା ଦୈନନ୍ଦିନ ଆବଶ୍ୟକ ଥାଏ । ହାଡୁବାବୁ କଟକରୁ ବହି ତାଲିକା ଦେଖି ଇଂରାଜି ଓ ସଂସ୍କୃତର ଦିଖଣ୍ଡ ବହି ଆଣିଲେ । ମାତ୍ର ମୁଁ ବୁଝାଇଦେଲି ଦିବ୍ୟସିଂହ (ଡ଼ାକ ନାମ ସିଘାଂ) ସବୁବହି କିଣିସାରିଛି । ମୋର ସେଇଥିରେ ଚଳିଯିବ । ଅନ୍ୟବହି ଅଲଗା କିଣିବାର ଆବଶ୍ୟକତା ନ ଥାଏ । ସିଂଘା ଘର ବଡ଼ ଚାଷୀ । ପାଟେଣିଗାଁ ରାଉତ ଘର ନାଁ ଡ଼ାକ । ପୁଣି ତାଙ୍କ ଯୁଗ୍ମ ପରିବାରର ଜଣେ କେହି କଲିକତାରେ କାମ କରୁଥାଆନ୍ତି । ନଗଦ ପ୍ରତିମାସରେ ଟଙ୍କା ପରିବାରକୁ ଆସେ ଯାହା ସେ "ହଜିଗଲା ପଇସା" ଯୁଗରେ ଏକ ବଡ଼ ଆଶୀର୍ବାଦ ଥିଲା । ସେଇ ବର୍ଷ କି ଆରବର୍ଷ ସେ ବାହାହେଲା । ବାଳୁତ କନ୍ୟା । ମୋର ଦୁର୍ଭାଗ୍ୟ, ଦଶମକୁ ପ୍ରମୋସନ ପାଇବା ବେଳକୁ ନିମୋନିଆଁ କି ଟାଇଫଏଡ଼ରେ ସେ ଚାଲିଗଲା । ମୋର ଡ଼ାହାଣ ବାହୁ ଯେପରି ଛିଡ଼ିପଡ଼ିଲା ।

୧୯୩୬ରେ ଓଡ଼ିଶା ପ୍ରଦେଶ ଗଠନ ହେଲା । ପ୍ରତିଷ୍ଠାତା ଦେଓ୍ୱାନ ବାହାଦୁର ଉତ୍କଳ ସମ୍ମିଳନୀର ଜଣେ ବଡ଼ ଉଦଯୋକ୍ତା ଥିଲେ । ବିଦ୍ୟାଳୟର ଶିକ୍ଷକମାନେ ନୂତନ ପ୍ରଦେଶ ଗଠନର ତାତ୍ପର୍ଯ୍ୟ ଆମକୁ ବୁଝାଇଲେ । ଆମେ ସମସ୍ତେ ଶୋଭାଯାତ୍ରା କରି ଟାଉନ ପରିକ୍ରମା କଲୁ । ବନ୍ଦେ ଉତ୍କଳଜନନୀ ବୋଲିଲୁ । ମଧୁସୂଦନ ରାଓଙ୍କର ଉତ୍କଳବନ୍ଦନା ବର୍ତ୍ତମାନ ଅବ୍ୟବହୃତ ହେତୁ ମୂଳ ଲେଖୁଛି । ଏହା ସାହିତ୍ୟ କୁସୁମରେ ୪ର୍ଥ ଶ୍ରେଣୀରେ ମଧ୍ୟ ପାଠ୍ୟ ଥିଲା –

ଜୟମା ଜନମଭୂମି ଉଦାରଉତ୍କଳଭୂମି
ତୋର ସ୍ନେହ କୋଳେ ମାଗୋ ଜନ୍ମ ଆମ୍ଭର
କୋଟି ସୁତ ଘେନି କୋଳେ ପାଳୁଅଛୁ ସ୍ନେହଭୋଳେ
ତୁହିମା କରୁଣାମୟୀ କରି ଆଦର ।
ତୋ ବକ୍ଷର ଅମୃତ ରସ
ସୁଖୀ କରୁଛି ମା କୋଟି କୋଟି ମାନସ ।

ପ୍ରଦେଶ ଗଠନ ସମସ୍ତଙ୍କୁ ସନ୍ତୁଷ୍ଟ କରି ପାରି ନଥାଏ । ବିଶେଷତଃ ଆମେ ଛାତ୍ରମାନେ ଆମର ଦୃଢ଼ ନେତୃତ୍ୱର ଅଭାବରୁ ବଙ୍ଗଳାରେ ମେଦିନପୁର, ବିହାରରେ ସିଂହଭୂମ, ମଧ୍ୟପ୍ରଦେଶରେ ଫୁଲଝର ଓ ମାନ୍ଦ୍ରାଜରେ ମଞ୍ଜୁଷା ଟିକିଲି ଆଦି ଓଡ଼ିଶାଭାଷୀ

ଅଞ୍ଚଳ ରହିଗଲା ବୋଲି ଅସୁଖୀ ଥାନ୍ତି । ଗୀତ ବୋଲାଯାଉଥାଏ-

(୧) ନୂଆ ଓଡ଼ିଶା ନୂଆ ଓଡ଼ିଶା
ଶେଉଳ ଜାଗାରେ ପାଇ ଗଡ଼ିଶା
କେହି କି ହୁଅଇ ଖୁସି
ଓଡ଼ିଶା ରାଇଜୁ ଅଧେ ଯେ ରହିଛି
ପଡ଼ିଶା ରାଇଜେ ମିଶି ।

(୨) ନୂଆ ଓଡ଼ିଶା ନୂଆ ଓଡ଼ିଶା
ଶିଳାରେ ଫୁଟଇ ଯାହାର ଭାଷା
ତାହାଠୁଁ ବଢ଼ିଆ କିଏ
କରମ ପଡ଼ିଲେ ବେଙ୍ଗ ଅକମା
ସାପକୁ ଓଗାଳି ଦିଏ ।

(୩) ନୂଆ ଓଡ଼ିଶା ନୂଆ ଓଡ଼ିଶା
ବଙ୍ଗ, ବିହାର ତୋର ପଡ଼ିଶା
ଦୁଇଠୁଁ ରହିଛୁ ଛୋଟ
ଏ କଥା ଶୁଣିଲେ ମଥାନଇଁ ପଡ଼େ
ବିଧାତାର ଏକ କୂଟ ।

(୪) ନୂଆ ଓଡ଼ିଶା ନୂଆ ଓଡ଼ିଶା
ପାହିଯାଉ ତୋର ଉଆଁସୀ ନିଶା
ବଢୁରେ ତୋ ପୂର୍ବ ଟେକ
ଧୋଇ ମରୁଡ଼ିର ଭୀଷଣ ମାରୁଣି
ନ ମୋଡୁ ଆଉ ତୋ ବେକ ।

ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀଙ୍କର ୧୯୩୬ରେ ରଚିତ ପଦ୍ୟରୁ । ଚିନ୍ତାମଣି ପାଣିଗ୍ରାହୀ କଲେଜିଏଟ ସ୍କୁଲରେ ପଢୁଥାଆନ୍ତି । ସାମ୍ବାଦିକ ପର ଜୀବନରେ କେନ୍ଦ୍ରମନ୍ତ୍ରୀ ରାଜ୍ୟପାଳ ଆଦି ହେଲେ । କେତେଜଣ ଆଗୁଆ ଛାତ୍ରଙ୍କ ସହିତ ମିଶି ବିଚ୍ଛିନ୍ନ ଉତ୍କଳ ଅବକାଶ ବାହିନୀ ନାମରେ ଗୋଟିଏ ସଂସ୍ଥା ଗଢ଼ିଥାନ୍ତି । ଅନେକ ବିଦ୍ୟାଳୟରେ

ଏହାର ଶାଖା ରହିଲା । ଉଦ୍ଦେଶ୍ୟ ଥିଲା, ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳରେ ଓଡ଼ିଆ ଭାଷା ସାହିତ୍ୟ ସଂସ୍କୃତିକୁ ବଞ୍ଚେଇ ରଖିବା ଓ ସେହି ଅଞ୍ଚଳର ଅଧିବାସୀମାନଙ୍କ ସମ୍ମତି ନେଇ ଓଡ଼ିଶାକୁ ଆଣିବାର ସାମ୍ବିଧାନିକ ଉଦ୍ୟମ କରିବା । 'ବାହିନୀ' ନାମରେ ଏହାର ଏକ ମୁଖପତ୍ର ମଧ୍ୟ ପ୍ରକାଶିତ ହେଉଥିଲା । ଅନେକଦିନ ଅନୁଷ୍ଠାନଟି ବଞ୍ଚିରହି ଛାତ୍ରମାନଙ୍କ ମଧ୍ୟରେ ଚେତନା ସୃଷ୍ଟି କରୁଥିଲା । ଜାତୀୟସ୍ତରରେ ନେତାମାନଙ୍କ ଉପରେ ଆମ ନେତାମାନେ ଚାପ ନ ଦେବାରୁ ରାଜ୍ୟ ପୁର୍ନଗଠନ କମିସନ ସୌଜନ୍ୟରୁ ଆମକୁ ଇଞ୍ଚେ ଜମି ମଧ୍ୟ ମିଳିଲା ନାହିଁ । ଉତ୍କଳ ସମ୍ମିଳନୀ ଓ ପାରଳା ମହାରାଜା ଉଦ୍ୟମଶୀଳ ନ ଥିଲେ ହୁଏତ ସ୍ୱାଧୀନ ଭାରତରେ ଆମର ପ୍ରଦେଶ ଗଠନ ହୋଇ ପାରିନଥାନ୍ତା । ଆମେ ବଙ୍ଗଳା ବିଖଣ୍ଡିତ ହେବା ପରେ ଏହାର ସାମିଲ ହୋଇ ଯାଇଥାଆନ୍ତୁ । ସେହି ପ୍ରାତଃ ସ୍ମରଣୀୟମାନେ ବର୍ତ୍ତମାନ ବିସ୍ମୃତ ।

ବରଷ ଶେଷବେଳକୁ ପ୍ରଧାନ ଶିକ୍ଷକ ବନମାଳୀ ମିଶ୍ର ନୂତନ ଲାଟସଭା ନିର୍ବାଚନରେ ଖୋଦ୍ଧାରୁ ପ୍ରତିଦ୍ୱନ୍ଦିତା କରିବାକୁ ଚାକିରି ଛାଡ଼ି ଚାଲିଗଲେ । ଅବଶ୍ୟ ଯେତେଦିନ ଥିଲେ ତାଙ୍କର ପାଠପଢ଼ା ଶୈଳୀ ବିଶେଷ ଆକର୍ଷଣୀୟ ନଥିଲା । ୨ଟି ଶ୍ରେଣୀରେ ଇଂରାଜୀ ଦୁଇପତ୍ର ପଢ଼େଇବାର ତାଙ୍କର ଦାୟିତ୍ୱ ସେ ସୁଚାରୁରୂପେ ନିର୍ବାହ କରୁଥିଲେ ବୋଲି କହିହେବ ନାହିଁ । ୮ମ ଶ୍ରେଣୀ ବେଳକୁ ଶିକ୍ଷକ ମାତ୍ର ୨ଜଣ ପଣ୍ଡିତଙ୍କୁ ମିଶାଇ । ପ୍ରତିଷ୍ଠାତାଙ୍କ ଉଦ୍ୟମ ସତ୍ତ୍ୱେ ପ୍ରଧାନ ଶିକ୍ଷକ ମିଳୁ ନଥାନ୍ତି । ଜାନୁଆରୀ ୧୯୩୭ ବେଳକୁ ଯେଉଁମାନଙ୍କର ଆର୍ଥିକ ଅବସ୍ଥା ଭଲ ସେମିତି ଛାତ୍ରମାନେ ଏ ଅବ୍ୟବସ୍ଥା ଲକ୍ଷ୍ୟ କରି ଅନ୍ୟ ବିଦ୍ୟାଳୟକୁ ନାମ ଲେଖାଇବାକୁ ଚାଲିଗଲେ । ପ୍ରଦେଶ ଗଠନ ପରେ ନୂଆ ବିଧାନସଭା ପାଇଁ ନିର୍ବାଚନ ହେଉଥାଏ । କଂଗ୍ରେସ ଦଳ ପ୍ରଥମ କରି ସବୁ ଆସନରେ ପ୍ରତିଦ୍ୱନ୍ଦୀତା କରୁଥାଏ । ଚାରିଆଡ଼େ ମହାତ୍ମା ଗାନ୍ଧୀଙ୍କର ଜୟ ଧ୍ୱନି ଶୁଣାଯାଉଥାଏ । ଲୋକେ ଭାବୁଥା'ନ୍ତି ମହାତ୍ମା ଗାନ୍ଧୀ ସ୍ୱାଧୀନତା ଆଣିବେ ଓ ଆମର ଦୁଃଖ ଅନାଟନର ଶେଷ ହେବ । ବନମାଳୀ ମିଶ୍ରଙ୍କ ପରେ ପୁରୀର ହରିହର ମହାପାତ୍ର BA, BED ଆମର କିଛିଦିନ ପ୍ରଧାନ ଶିକ୍ଷକ ହେଲେ । ସେ ଜଣେ କୃତୀଛାତ୍ର ଥିଲେ ଓ ଶିକ୍ଷକତାର ଅଭିଜ୍ଞତା ତାଙ୍କର ମଧ୍ୟ ଥିଲା ।

ଜଗତସିଂହପୁର (ପୂର୍ବ କଟକ) ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ନିତ୍ୟାନନ୍ଦ କାନୁନଗୋ । ତାଙ୍କ ବିରୁଦ୍ଧରେ ହାଇସ୍କୁଲ ପ୍ରତିଷ୍ଠାତାଙ୍କର ଜ୍ୟେଷ୍ଠପୁତ୍ର ଶ୍ୟାମାଚରଣ (ନିଲୁ ବାବୁ) । ପଣ୍ଡିତ ନେହେରୁ କଂଗ୍ରେସର ସଭାପତିଭାବେ ଭାରତ ତମାମ ନିର୍ବାଚନ ପ୍ରଚାର କରୁଥାଆନ୍ତି । ସେ ମଧ୍ୟ ଓଡ଼ିଶା ଆସି ଜଗତସିଂହପୁରର ଅଳକାଶ୍ରମ ପାଖ ସୋମନାଥ ହାଟରେ ଗୋଟାଏ ସଭାରେ ପ୍ରଚାର କଲେ । ଗୋଟିଏ ମଟର ଗାଡ଼ିରେ ତାଙ୍କ ସହିତ ପ୍ରଦେଶ କଂଗେସ ସଭାପତି ପଣ୍ଡିତ ନୀଳକଣ୍ଠ ଦାସ ଆସିଥାଆନ୍ତି ଜଗତସିଂହପୁରକୁ କଟକରୁ ନାଲି ଗୋଡ଼ି ରାସ୍ତା । ତାଙ୍କ ଆଗେ ଆଗେ ଧୂଳି ଉଡ଼ାଇ ସଦର ଏସଡ଼ିଓ ଗୋଟାଏ ଗାଡ଼ିରେ ଯାଉଥାଆନ୍ତି ଯାହାଫଳରେ ପଣ୍ଡିତ ନେହେରୁଙ୍କର ଧଳା ଖଦଡ଼ ପୋଷାକର ଫାଳେ ନାଲ ହୋଇଯାଇଥାଏ । ଆମେ ଛାତ୍ରମାନେ ଅନୁମତି ନେଇ ତାଙ୍କୁ ଦେଖିବାକୁ ଗଲୁ । ସର୍ତ୍ତ ରଖାଯାଇଥାଏ ଖେଳଛୁଟି ପରେ ଠିକ ସମୟରେ ଶ୍ରେଣୀରେ ପହଞ୍ଚିବୁ । ନେହେରୁଙ୍କ ଭାଷଣକୁ ଓଡ଼ିଆରେ ଜଣେ କେହି ବୁଝାଇଦେଲେ । ପଣ୍ଡିତ ନୀଳକଣ୍ଠଙ୍କର ତେଜୋଦୀପ୍ତ ମୁଖମଣ୍ଡଳ ଓ ଦାଢ଼ି ଆମ୍ଭମାନଙ୍କୁ ଦେଖିବାର ଆକର୍ଷଣ ଥିଲା । ପ୍ରଧାନ ଶିକ୍ଷକ ମଧ୍ୟ ଆସି ସଭାରେ ତାଙ୍କୁ ଦେଖି ଠିକ ସମୟରେ ଫେରିଗଲେ । ଯେଉଁ ଛାତ୍ରମାନେ ଫେରି ନ ପାରିଲେ ସେମାନଙ୍କୁ ଅଣାଏ ଲେଖାଏଁ ଜୋରିମାନା ଦେବାକୁ ପଡ଼ିଲା । କ୍ଲାସରୁ ଚାଲି ଯାଇଥିବାରୁ Fled Fine ନିର୍ବାଚନ କଂଗ୍ରେସ ଜିତି ମନ୍ତ୍ରୀମଣ୍ଡଳ ଗଢ଼ିଲା । ନିତ୍ୟାନନ୍ଦ କାନୁନଗୋ ମନ୍ତ୍ରୀ ହେଲେ । ସେତେବେଳେ କୁହାଯାଉଥିଲା-

"ନୀଳକଣ୍ଠଙ୍କ ଦାଢ଼ି, ସରଳାଙ୍କ ଶାଢ଼ି ଓ ମଙ୍ଗରାଜଙ୍କର ଛଡ଼ି"

ଭୋଟରଙ୍କୁ ପ୍ରଭାବିତ କରିଥିଲା । ସରଳା ଦେବୀ ବିଖ୍ୟାତ ନାରୀନେତ୍ରୀ । ସେ ମହିଳାମାନଙ୍କୁ ପରଦାଛାଡ଼ିବା ଆହ୍ୱାନ ଦେଇଥାନ୍ତି । ଭୋଟରମାନେ ତାଙ୍କୁ ସମ୍ମାନ ଦେଖାଉଥାଆନ୍ତି । ଯଦୁମଣି ମଙ୍ଗରାଜ କଂଗେସ ନେତା ଭାରି କୁହାଳିଆ । ଛଡ଼ିଧରିଥାଆନ୍ତି । ଗାଉଁଲି ଭାଷାରେ ସାଧାରଣ ଲୋକଙ୍କ ମନକୁ ପାଇଲାପରି ଲୋକଙ୍କର ସମସ୍ୟା ଓ ଏହାର ସମାଧାନ ଶୁଣାଇ ସବୁରି ପ୍ରିୟ ହୋଇଥାଆନ୍ତି ।

ଚାନ୍ଦୁରାରେ ଅନ୍ୟ ଜାତି ବିଶେଷ ଥିଲେ ମଧ୍ୟ କରଣ ଘର ଗୋଟିଏ । କାଳକ୍ରମେ ସେମାନେ ଚାରି ଭାଗ ହୋଇଥାଆନ୍ତି । ହାଡ଼ିବନ୍ଧୁବାବୁଙ୍କର ଜମିଦାରିର ମାଲିକାନା

ଥିଲେ ମଧ୍ୟ ଅନ୍ୟମାନେ କେବଳ ନିଜର କିଛି ନିଜଚାଷ ଓ ନିଜ ଯୋତ ଜମିର ମାଲିକ ଥିଲେ । ସେମାନଙ୍କର ଜମିଦାରିର ବହୁତ ଅଂଶ କାଳକ୍ରମେ ହସ୍ତାନ୍ତରିତ ହୋଇଯାଇଥାଏ । ଚାରି ଘର ଅଲଗା ହେଲେ ମଧ୍ୟ ସାମାଜିକ ସୂତ୍ରରେ ଗୁନ୍ଥା । ହାତୁବାବୁଙ୍କର ସଂପର୍କୀୟ ବଡ଼ଭାଇ ବୀରକିଶୋର ଓ ଦାଦି ଗୋକୁଳାନନ୍ଦ ଜୀବିତ ଥାଆନ୍ତି । ସେଇ ଏକ ବିଶାଳ ଘରଡ଼ିଅରେ ବାଗିବଗିଚା ପୁଷ୍କରିଣୀ ଥାଇ ଚାରିଘର ଚଳନ୍ତି । କେବଳ ଗୋକୁଳାନନ୍ଦ ମୃତଦାର ଥାଇ ଅଲଗା ପାଞ୍ଚଶ ହାତଦୂରରେ ଗୋଟିଏ ଡ଼ିଅରେ ଘରକରି ରହୁଥାଆନ୍ତି । ଖାଦ୍ୟ ପୁଅ ବୋହୂ ପଠାନ୍ତି । ତାଙ୍କର ବଡ଼ପୁଅ ଗାଁରେ ଚାଷ ଦେଖନ୍ତି ।

ପ୍ରାୟ କର୍ମହୀନ ଅଳସୁଆ । ୨ୟ ଅନନ୍ତ । କଟକ ପ୍ୟାରିମୋହନ ଏକାଡ଼େମୀରେ ଛାତ୍ର । ମୋଠାରୁ ୨ ବରଷ ଉପର ଶ୍ରେଣୀରେ । ବୟସରେ ମାତ୍ର ମୋଠାରୁ ବହୁତ ବେଶି ଜଣାପଡ଼ନ୍ତି । ତାଙ୍କୁ ବେଶି ଦିନ ଗାଁରେ ରହିବାର ଦେଖାଯାଏ । ଇଂରାଜୀରେ ତାଙ୍କର ଭଲ ବ୍ୟୁତ୍ପତ୍ତି ଥାଏ । ତାଙ୍କ ହେଡ଼ମାଷ୍ଟର ବସନ୍ତ କୁମାର ଦାସ ଜଣେ ନାମଜାଦା ଶିକ୍ଷକ । ଇଂରାଜି ବ୍ୟାକରଣ ପଢ଼ାଇବାରେ ତାଙ୍କର ଭାରି ଖାତିର ଥିଲା । ସେ ମଧ୍ୟ ପାଟଣା ବିଶ୍ୱବିଦ୍ୟାଳୟର ମାଟ୍ରିକୁଲେସନରେ ଇଂରାଜୀ ମୁଖ୍ୟ ପରୀକ୍ଷକ । ଅନନ୍ତ ତାଙ୍କ ବ୍ୟତୀତ ସେ ସମୟର ନାମଜାଦା ଶିକ୍ଷକ ବାଞ୍ଛାନିଧି ସାନ୍ତରାରାୟ କ୍ଷେତ୍ରମୋହନ ପଟ୍ଟନାୟକ ଶ୍ରୀନିବାସ ମିଶ୍ର ସମସ୍ତେ MA.BL,BEd. ଛାତ୍ର ଥାଇ ସେମାନେ ଅନ୍ୟାନ୍ୟ ବିଷୟମାନ କିପରି ଚିତ୍ତାକର୍ଷକଭାବରେ ପଢ଼ନ୍ତି ତାହା ମୋତେ ଶୁଣାନ୍ତି । ଆମର ତ ଇଂରାଜି ଶିକ୍ଷା ସନ୍ତୋଷଜନକ ନଥାଏ । ପ୍ରଥମ ପତ୍ରର ଇଂରାଜୀ ବହି ପ୍ରାୟ ପଢ଼ାଯାଇ ନଥାଏ । ୨ୟ ପତ୍ରର କେବଳ କେତୋଟି ପାଠ୍ୟ ପରୀକ୍ଷା ପାଇଁ ଅର୍ଥ ସହିତ ପଢ଼ିଥାଉ । ବ୍ୟାକରଣ ମୋଟେ ଆଲୋଚନା ହୋଇ ନଥାଏ । ସିଲାବସ ଅନୁସାରେ ବିଷୟ ବସ୍ତୁ ଶେଷ ହୋଇ ନଥାଏ । ସେ ସମୟରେ ଇଂରାଜିରେ ବ୍ୟୁତ୍ପତ୍ତି ହାସଲ କରିବା ନିମିତ୍ତ Hidden Treasure ଓ Nesfields English Grammar ଅତୀବ ଉପାଦେୟ ପୁସ୍ତକ ଥିଲା । ଅନନ୍ତ ଏଇ ଦୁଇଖଣ୍ଡ ବହିର ପୁରୁଣା ସଂସ୍କରଣ ଆଣି ମୋତେ ଦେଲେ । ଅନ୍ୟ ବିଷୟ ଭୂଗୋଳ କି ଓଡ଼ିଆରେ ମୋର ସନ୍ଦେହ ମୋଚନ

କରୁଥିଲେ । ଏହି ସବୁ କାରଣରୁ ମୁଁ ତାଙ୍କୁ ମୋର ଜଣେ ହିତାକାଂକ୍ଷୀ ବନ୍ଧୁ ବୋଲି ଧରିନେଲି ।

ହାଡୁବାବୁଙ୍କ ଘରେ ମୁଁ ଯେତେ ପୁରୁଣା ହେଲି ସେତେ ଅନ୍ତରଙ୍ଗ ହେଲି । ଗେଣ୍ଡୁ ଯାହାକୁ ଯେମିତି ଡ଼ାକୁଥିଲା ମୁଁ ସେମିତି ଡ଼ାକେ । କେବଳ ହାଡୁବାବୁଙ୍କୁ ବାବୁ ଓ ସାନଭାଇ ସାହୁବାବୁଙ୍କୁ କେବେ ଦାଦି କେବେ ସାହୁବାବୁ ଡ଼ାକେ । ଗେଣ୍ଡୁର ସାବତବୋଉ ରେବତୀ । ମୋଠାରୁ ମାତ୍ର ପ୍ରାୟ ୭/୮ ବରଷ ବଡ଼ ହୋଇଥିବେ । ଅତି କମନୀୟ ଲାବଣ୍ୟ ଯୁକ୍ତ ଚେହେରା । ମୁହଁରେ କେବେ ବିରକ୍ତି ନଥାଏ । ଘରେ ଜଣେ ରାନ୍ଧୁଣି ଥିଲେ ମଧ୍ୟ ମତେ ସେ ବା ଜେଜେମା କେବଳ ଖାଇବାକୁ ଦିଅନ୍ତି । ମୁଁ ତାଙ୍କୁ ବୋଉ ଡ଼ାକେ । ସେ କଟକରୁ ବାଳକୃଷ୍ଣ କରାଙ୍କ ପ୍ରେସରୁ ବାହାରୁଥିବା ଆନନ୍ଦଲହରୀ ନୂଆ ଉପନ୍ୟାସମାଳାର ଗ୍ରାହକ ଥାଆନ୍ତି । ପ୍ରତିମାସରେ ଖଣ୍ଡେ ନୂଆ ଉପନ୍ୟାସ ଘରକୁ ଆସେ । ମୁଁ ପଢ଼ିବାକୁ ମଧ୍ୟ ଆଗ୍ରହୀ ହୁଏ ମାତ୍ର ଯଦି କୌଣସି ଉପନ୍ୟାସ କେବଳ ପ୍ରାପ୍ତ ବୟସ୍କଙ୍କ ପାଇ ବୋଲି ସେ ଅନୁଭବ କରନ୍ତି ତାହା ମତେ ପଢ଼ିବାକୁ ମନା କରନ୍ତି ଓ ବହି ମୋତେ ଦିଅନ୍ତି ନାହିଁ । ସାନଯାଆ ସାନପୁଅ ଟିକିଲିକୁ ନିଜ ପୁଅକରି ନେଇଥାଆନ୍ତି । ତାଙ୍କର ତ ନିଜର ସନ୍ତାନ ନଥାଏ । ତା ମାଆ ମଲାବେଳକୁ ଟିକିଲିକୁ ବରଷେ କି ଛଅ ମାସର ହୋଇଥାଏ । ସେ ଘରେ ନାନା ପ୍ରକାର ନାନା ସ୍ୱାଦର ଡ଼ାଲିକଣି ଖାଇବାକୁ ଦିଅନ୍ତି । ତେଣୁ ତାଙ୍କୁ ଆମେ ଗେଣ୍ଡୁ ଓ ମୁଁ ଡ଼ାଲି ବୋଉ ବୋଲି ଡ଼ାକୁଥାଉ । ସେ ଦୀର୍ଘଜୀବନ ଲାଭ କରି ୨୦୦୯ ମସିହାରେ ନିଜ ପୁଅ ଘରେ ଭୁବନେଶ୍ୱର ସହିଦନଗରରେ ପ୍ରାଣତ୍ୟାଗ କଲେ । ଟିକିଲି (ରବୀନ୍ଦ୍ରନାଥ) ସବରେଜିଷ୍ଟର ଭାବରେ ଚାକିରିରେ ପଶି ରେଜିଷ୍ଟ୍ରେସନ ବିଭାଗର ଡ଼ି ଆଇ ଜି ଭାବେ ଅବସର ନେଲା । ବୋଉ ମାତ୍ର ଅତି ଅଳ୍ପ ବୟସରେ ନିଃସନ୍ତାନ ହୋଇ ୧୯୪୨ରେ ସ୍ୱର୍ଗବାସ କଲେ । ଅନେକ ଦିନ ପର୍ଯ୍ୟନ୍ତ ତାଙ୍କର ସ୍ନେହଶ୍ରଦ୍ଧା ମୋ ପାଇଁ ଅଭୁଲା ସ୍ମୃତି ହୋଇ ରହିଲା ।

ଘରେ ଅର୍ଥର ମାଲିକ ସାହୁବାବୁ । ସେ ଠିକାଦାରି କରି ଓ ଫସଲରୁ ଉଦ୍‌ବୃତ୍ତ ଧାନ ଆଦି ବିକି ଅର୍ଥ ନିଜ ପାଖରେ ରଖନ୍ତି । ଘର କର୍ତ୍ତା ମଧ୍ୟ ଯାହା ନିଜ ରୋଜଗାର ତାହା ସାନଭାଇ ପାଖରେ ଆଣି ଜମା ଦିଅନ୍ତି । ଜମିଦାର ଭାବରେ ପ୍ରଜାମାନଙ୍କଠାରୁ

ଆଦାୟ ଦାଖଲ ଖାରଜ ବଡ଼ ଆୟ । ୧୯୩୭ କଂଗ୍ରେସ ମନ୍ତ୍ରୀମଣ୍ଡଳ ଏହା ଉଠେଇ ଦେବା ପର୍ଯ୍ୟନ୍ତ ଛୋଟ ଜମିଦାରମାନଙ୍କର ଏହା ଜମିଦାରରୁ ମୁଖ୍ୟ ଆୟଥିଲା ଯଦିଓ ବଡ଼ ଜମିଦାରମାନେ ପ୍ରଜାଙ୍କୁ ହଇରାଣ କରିବାକୁ ଅନୁମତି ନ ଦେଇ ଏହାକୁ ଏକ ପ୍ରଜାପୀଡ଼ନର ବଡ଼ ଆୟ ରୂପେ ବ୍ୟବହାର କରୁଥିଲେ । ଜମିଖରିଦ ବିକ୍ରି ହେଲେ ବାୟା (ବିକ୍ରେତା) ଓ ମୁସ୍ତରି (କ୍ରେତା) ଉଭୟ ଜମିଦାରଙ୍କୁ ନୂଆ ଖରିଦଦାରକୁ ପ୍ରଜାଭାବେ ଗ୍ରହଣ ପାଇଁ ଆବେଦନ କରନ୍ତି । ଏଥିପାଇଁ ଜମିଦାର ଜରସମନ(ବିକ୍ରିମୂଲ୍ୟ)ର ଶତକଡ଼ା ଏକ ନିର୍ଦ୍ଦିଷ୍ଟ ଅଂଶ ନେଇ ଅନୁମତି ଦିଅନ୍ତି । ଜମିଭାଗ କରି ନାମ ଅଲଗା ହେଲେ ଖାତା ଫଡା ଫିଜ ମଧ୍ୟ ଜମିଦାରଙ୍କ ସିରସ୍ତାରେ ଦାଖଲକରି ନୂଆ ନାମ ଜାହିର କରାଯାଏ । ଏହା ବ୍ୟତୀତ ଅନେକ ସମୟରେ ଜମି ଖରିଦ ବିକ୍ରିବେଳେ ଉଚିତ ମୂଲ୍ୟାୟନ ନିମିତ୍ତ ହାଜୁବାବୁଙ୍କୁ ଡ଼କରାଯାଏ ଓ ସେହି ଅନୁସାରେ ଜମି ମୂଲ୍ୟ ଧାର୍ଯ୍ୟ ହୋଇ କବଲାରେ ଲେଖାଯାଏ । ତାଙ୍କୁ ଏଥିପାଇଁ କମିସନ ମିଳେ ୟ ସେ ଏପରି ନିରପେକ୍ଷ ଥିଲେ ଯେ ତାଙ୍କ ନିଷ୍ପତ୍ତିକୁ କେହି ନ ମାନିବାକୁ ସାହାସ କରୁନଥିଲେ । ସବୁ ଆୟ ସାହୁବାବୁଙ୍କ ପାଖରେ ଜମାରହେ ଓ ସେ ସବୁ ଖର୍ଚ୍ଚର ମଞ୍ଜୁରି ଦିଅନ୍ତି । ଜୀବନରେ ମୁଁ ଏପରି ଯୁଗ୍ମ ପରିବାରରେ ଦୁଇ ଭାଇ ମଧ୍ୟରେ ଆର୍ଥିକ ବୁଝାମଣା ଅନ୍ୟତ୍ର କୌଣସିଠାରେ ଲକ୍ଷ୍ୟ କରିନାହିଁ । ଦୁଇ ଯାଆ ବା ଅନ୍ୟ କେହି କେବେ ଏପ୍ରକାର ବ୍ୟବସ୍ଥା ଉପରେ ଟିପପ୍ପଣି କରି ନ'ଥାନ୍ତି ।

ବିଦ୍ୟାଳୟରେ ନାମ ଲେଖାପରେ ପ୍ରଥମ ବର୍ଷ ମୋର ଅଧା ଫିଜ ଛାଡ଼ ହେଲା । ବୋଧହୁଏ ପ୍ରତିମାସରେ ଦେଢ଼ ଟଙ୍କାର ଅଧା ବାରଅଣା ମତେ ଦାଖଲକରିବାକୁ ସାହୁବାବୁ ଦେଉଥିଲେ । ସଂପାଦକ ଅଧିକ ମେଧାବୀ ଛାତ୍ରଙ୍କୁ ସୁବିଧା ଦେବା ନିମନ୍ତ କାହାକୁ ପୁରା ଫି ଛାଡ଼ କରୁନଥିଲେ । ବିଭାଗୀୟ ନିୟମ ଅନୁସାରେ ଛାତ୍ରସଂଖ୍ୟାର ଏକ ଦଶମାଂଶ ନିଃଶୁଳ୍କ ହେବା କଥା । ସେ ଅଧାଫି ଛାଡ଼କରି ଏହାର ୨ଗୁଣ ଛାତ୍ରଙ୍କୁ ସୁବିଧା ଦେଇପାରୁ ଥିଲେ । ଯେଉଁମାନେ ତାହା ମଧ୍ୟ ଦେବାକୁ ଅକ୍ଷମ ଥିଲେ ତାଙ୍କୁ ବାକି ଅଧିକ ଦରିଦ୍ର ଛାତ୍ର ପାଣ୍ଠିରୁ ଦେଉଥିଲେ । ଛାତ୍ରଦତ୍ତ ବ୍ୟତୀତ ଏହି ପାଣ୍ଠି ପାଇ ସେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବଦାନ୍ୟ ବ୍ୟକ୍ତିମାନଙ୍କର ସହାୟତା ହାସଲ କରିପାରୁଥିଲେ । ପ୍ରସ୍ତାବିତ ବିଦ୍ୟାଳୟରେ ଏହି

ପାଣ୍ଠିରୁ ବେଶି ଛାତ୍ର ଉପକୃତ ହେଉଥିଲେ । ୧୦ମ ଶ୍ରେଣୀଠାରୁ ମୋତେ ଏହି ପରି ଦରମା ପୁରାଛାଡ଼ ହୋଇଥିଲା ।

ଢେଙ୍କେମା ଯାହା ବାପାଙ୍କୁ କହିଥିଲେ ମୁଁ ତାକୁ ଏପରି ରଖିବି ଯେ ନିଜ ଘର କଥା ଭୁଲିଯିବ ତାହା ପ୍ରକୃତରେ ସତ୍ୟ ହେବାକୁ ବସିଥାଏ । ଗେଣ୍ଠୁର ଯାହା ଯେମିତି ଖିଆପିଆ ମୋର ଠିକ ସେଇ ଟାଇମରେ ସେମିତି । ଦୁଇଜଣଙ୍କର ସକାଳେ ଜଳଖିଆ । ନଅଟାରେ ଭାତ ଖାଇ ଏକାଠି ସ୍କୁଲ ଯିବାହୁଏ । ଫେରିକରି ପୁଣି ଖାଇବା ଓ ଶେଷରେ ପଢ଼ିସାରି ଶୋଇବା ଆଗରୁ ରାତ୍ରି ଭୋଜନ । ମୋର ଗାଁରେ ଘରେ ଖାଇବା ଅପେକ୍ଷା ଏହା ନିଶ୍ଚିତ ଭାବରେ ଅଧିକ ସ୍ୱାଦିଷ୍ଟ ଓ ରୁଚିକର ଥିଲା । ତାଙ୍କର ବହୁ ସମୟରେ ଜମିଦାରି ପୋଖରିରୁ ମାଛ ଆସେ । ପନିପରିବା ନିଜ ବାଗବଗିଚା ବାରିରୁ ଆସେ । ନ ହେଲେ ଅନ୍ୟ ପ୍ରଜାମାନେ ଆଦରରେ ଦେଇଯାଆନ୍ତି । ଘରେ ମୋର ଦିଖଣ୍ଡ ପିନ୍ଧାଲୁଗା ଗୋଟିଏ କେବେ କେବେ ଦୁଇଟା ସାର୍ଟଥିଲା । ବାଲିକୁଦାରେ ପଢ଼ାସରିବା ପର୍ଯ୍ୟନ୍ତ । ତାଙ୍କ ଘରେ ସମସ୍ତେ ଦୋଳରେ ଦଶହରାରେ ବା ଅନ୍ୟ କୌଣସି ପର୍ବ ବା ଶୁଭ ଅବସରରେ ନୂଆଲୁଗା ପିନ୍ଧିଲେ ମୋ ପାଇ ମଧ ଲୁଗା ହୁଏ । ଦାଦି(ସାହୁବାବୁ) ମତେ ନେଇ ଜଗତସିଂହପୁର ବଜାରରେ ଗୋଟାଏ ଦରଜି ପାଖରେ ମାପ ଦେଇ ଆସିଥାନ୍ତି । ସେଇ ମାପରେ ମୋର ବରଷକୁ ୨ଟା ଅଧା କାମିଜ ହୁଏ ଯାହା ମୋର ସ୍କୁଲ ଯିବା ଆସିବାରେ ଯଥେଷ୍ଟ । ବିଶେଷ ଉତ୍ସବ ବା ପର୍ବ ପର୍ବାଣିରେ କେଉଁଠି ନିମନ୍ତ୍ରଣ ଥିଲେ ସବୁରି ସାଙ୍ଗରେ ମୋର ମଧ ଯିବା ସୁନିଶ୍ଚିତ କରାଯାଏ । ମକର ଯାତ୍ରାରେ ସରକସ ଆସିଲେ ସେଠାରେ ସମସ୍ତେ ଘରର ଦେଖିବାକୁ ଗଲେ ମୋ ପାଇଁ ମଧ ଟିକେଟ ହୁଏ । ମୋର ପାଠପଢ଼ା ଯାହା ହେଉ ଘର ମୁହାଁ ହେବାକୁ ଆଉ ମନ ବଳୁ ନଥାଏ । ରଥଯାତ୍ରାବେଳେ ଯାଏ । ଦଶହରାବେଳେ ଯାଏ । ଦଶମାଇଲ ରାସ୍ତା ଚାଲିକରି ଯିବାକୁ ପଡ଼େ ତେଣୁ ଯିବାର ଆଗ୍ରହ ବିଶେଷ ନଥାଏ । ଏହି ଦୁଇ ବିଶେଷ ଦିନରେ ଗାଁର ଆକର୍ଷଣ ଅଭିନୟ ଯାତ୍ରା ଓ ଗାଁର ଥିଏଟର ଯୋଗୁ ବିଶେଷ ଲୋଭନୀୟ ଥାଏ ।

ଗାଁରୁ ଚାନ୍ଦୁରା ପ୍ରାୟ ୧୮ କିଲୋମିଟର ଦୂର ହେବ । ବୋଉ କଣ ଖାଇବାକୁ ଦେଲେ ଖାଇସାରି ସକାଳୁ ବାହାରିପଡ଼େ । ଚାଲିକରି ଯାଇ ପ୍ରାୟ ୯ଟା ସୁଦ୍ଧା

ପହଞ୍ଚେ । ରାସ୍ତାରେ ବଳଦଗାଡ଼ି ଓ ପଥଚାରୀ ସଂଖ୍ୟା ବିଳମ୍ବରେ ବଢ଼େ । କଟକରୁ ମହାଜନମାନେ ବଳଦଗାଡ଼ିରେ କିରାସିନି ଗୁଆ ମସଲା ଚିନି ମିଲ ଲୁଗାପଟା କପଡ଼ାଥାନ ବାଇଗଣି ଧୂଆଁପତ୍ର ମଇଦା, ଗହମ ଧରି ଗାଁକୁ ଆଣି ନିଜର ଦୋକାନରେ ବିକନ୍ତି । ମାଲ ପାଇଁ ଯିବାବେଳକୁ ଗାଡ଼ିରେ ଧାନଚାଉଳ ମୁଗ ବିରି ଆଦି କୃଷିଜାତଦ୍ରବ୍ୟ ନେଇଥାନ୍ତି କଟକରେ ଆଡ଼ତିଆ ମହାଜନମାନଙ୍କୁ ଦେବାକୁ । ବେଳେବେଳେ ଖରାଦିନେ କଟକ ଆଡୁ ପଥର ବାସନ ଗୋରୁମୁହାଁ ଓ ପାଣିରଖିବା ପଥର କୁଣ୍ଡ ଧରି ଗାଡ଼ିବାଲା ଆସନ୍ତି । ତାକୁ ବିକି ବଦଳରେ ଧାନ ଚାଉଳ ମୁଗ ବିରି ଧରି ଲେଉଟନ୍ତି । ବାଟୋଇମାନେ କଟକଗଲେ ବାଟରେ ରହିବାର ଚଟି ଥାଏ । ସେମାନେ ସେଇଠି ରୁହନ୍ତି । ପ୍ରାୟ ୧୫/୨୦ କି.ମି ଅନ୍ତରରେ ଗୋଟିଏ ଲେଖା ଚଟିଥାଏ । ଏଠାରେ ତିନି ପଇସା (ଗୋଟିଏ ତମ୍ବା ପଇସା ଏବର ଦୁଇପଇସା ପ୍ରାୟ) ଖରଚ କରି ଭଡ଼ା (ଛାତ ତଳେ ବିଶ୍ରାମ ଶୋଇବାକୁ ଗୋଟାଏ ମଶିଣା ବା ହେଁସ) ଚୂଡ଼ା (କଞ୍ଚାଚୂଡ଼ା ସହିତ ଲୁଣ ଲଙ୍କା ଓ ବେଲା ପାଣିଗଡୁ) ଓ ମୋଡ଼ା (ପଥଶ୍ରମ ଉପଶମପାଇ ଶରୀରର ଅଙ୍ଗ ପ୍ରତ୍ୟଙ୍ଗର ମୋଡାଘଷା) ବିଶ୍ରାମ ସାରି ଯାତ୍ରୀମାନେ ଆଗକୁ ଚାଲନ୍ତି । ବାଲିକୁଦାରୁ କଟକ ୬୦ କି.ମି ଦିନେ କି ଦେଢ଼ଦିନ ଲାଗେ ।.ଶହେବର୍ଷ ତଳେ ଗନ୍ତବ୍ୟ ସ୍ଥଳରେ ପହଞ୍ଚିବାକୁ । ପରିଜାସାହେବ ୧୯୦୪ ମସିହାରେ କଟକ କଲେଜିଏଟ ସ୍କୁଲରେ ପଢ଼ିବାବେଳେ ଜଣେ ମହାଜନର ଶଗଡ଼ ସାଙ୍ଗରେ ଯାଆନ୍ତି । ଶଗଡ଼ ଛାଇରେ ପ୍ରାୟ ଚାଲନ୍ତି । ତାଙ୍କ ପାଇ ଅଲଗା ରନ୍ଧାପାତ୍ର ଥାଏ । ଦେଢ଼ ଦିନରେ ସେ କଟକରେ ପହଞ୍ଚନ୍ତି । ୧୯୩୨ ମସିହା ବେଳକୁ ମୋର ଜେଜେ ହାଡ଼ିବନ୍ଧୁ ମହାନ୍ତି କଟକ ପେନସନ ପାଇ ୩/୪ ମାସରେ ଥରେ ଯାଆନ୍ତି । ଲୁଣ ନିମକି ବିଭାଗରେ ସେ କାମ କରୁଥିଲେ । ପେନସନ ସାତଟଙ୍କା ଆଠଅଣା ଆଜୀବନ ପାଉଥିଲେ । ପ୍ରାୟ ଦଶବରଷ ପେନସନ ପାଇଥିବେ । ସବୁ ପେନସନଭୋଗୀ ହାଟରେ ଦେଖାହୋଇ ଯିବା ତାରିଖ ସମୟ ଠିକ କରି ଏକାଠି ଯାଇ କଟକ ଟ୍ରେଜରୀରୁ ଟଙ୍କା ଆଣି ପୁଣି ଏକାଠି ଫେରନ୍ତି । ସେମାନଙ୍କର ଖରଚ ହୁଏ ଏଇ ଚୂଡ଼ା, ମୋଡ଼ା, ଭଡ଼ା ବାବଦକୁ ତିନିପଇସା । ଦିନେ କି ଦେଢ଼ ଦିନ ସମୟ ଲାଗେ ଗୋଟାଏ ତରଫରୁ । ଏଇ ସବୁ ଚଟିର ସ୍ଥାନ ଅନୁସାରେ ନାମ ଥାଏ । ଥରେ ମୁଁ ଏକା ଚାନ୍ଦୁରା ଆସୁଛି ସକାଳୁ ସକାଳୁ ରାସ୍ତାରେ

ଲୋକ ନାହାନ୍ତି । କାଦୁଅପଡ଼ା ପୂର୍ବଦିଗରେ ଅଗିଲୋଚଟି । ସେଇଁଠି ଗୋଟିଏ ପିଣ୍ଡି ଉପରେ ଜଣେ ଶ୍ଵେତକେଶ ଓ ଶ୍ମଶ୍ରୁଧାରୀ ଲୋକଙ୍କୁ ବସିବାର ଦେଖେ । ସେ ମୋତେ ପାଖକୁ ଡ଼ାକିଲେ । ମୁହଁଟା ମତେ ହିଂସ୍ର ଜଣାପଡ଼ିଲା । ମୋର ଲୁଗାପଟାରେ ପରିସ୍ରା ହୋଇଯିବା ଅବସ୍ଥା । ପଚାରିଲେ ତୋର କେତେ ପଇସା ଅଛି ? ମୁଁ ବୋଉ ମତେ ଖରଚ କରିବାକୁ ଦେଉଥିବା ଛଅଣା କି ଆଠ ଅଣା (୪୦ କି ୫୦ ପଇସା) କହିଲି 'ତାକୁ ମତେ ଦେଇଦେ' ଶୁଣି ମୁଁ ଛାନିଆଁ ହୋଇ ସବୁଦେଇ ଆଗଗୁ ଚାଲିଲି । ପରେ ଜାଣିଲି ତାଙ୍କ ନାମ ଜଟାଧାରୀ ମିଶ୍ର । ସେ ଜଣେ ନାମଜାଦା ସିନ୍ଧି କଟା ଚୋର । ଘରର କାନ୍ଥରେ ଗାଡ଼ କରି ଘର ଭିତରେ ପଶି ଅନ୍ତେବସୀଙ୍କୁ ଛୁରୀ କଟୁରି ଦେଖାଇ ଚୋରିକରି ସୁନାରୂପା ଟଙ୍କା ପଇସା ଆଣିବାରେ ଧୂରନ୍ଧର ଥିଲେ । ଅନେକବାର ସଜା ପାଇଛନ୍ତି । ବର୍ତ୍ତମାନ ବୟସଦୃଷ୍ଟେ ରାସ୍ତା କଡ଼ରେ ବସି ଲୋକଙ୍କୁ ଡରେଇ ଏମିତି ଦାଦାବଟି ଅଧୁଲ କରୁଥାନ୍ତି । ଏହା ଜଣାପଡିଲା ପରେ ଘରେ ମତେ ଆଉ ଏକୁଟିଆ ଚାନ୍ଦୁରା ଯିବାକୁ ଅନୁମତି ମିଳିଲା ନାହିଁ । କେହି ଜଗତସିଂହପୁର ଚାଲିକରି ଯାଉଥିଲେ ତା ସାଙ୍ଗରେ ଗଲି ।

ଗାଁକୁ ଫେରିବା ବେଳେ ମାତ୍ର ଏକା ଆସେ । ରାସ୍ତାରେ ବାଲିକୁଦା ମାଛଗାଁ ଆଡକୁ ଅସୁଥିବା ଅନ୍ୟ ବାଟୋଇ ସାଙ୍ଗ ମିଳିଯାଆନ୍ତି । ଥରେ ଦଶରାଛୁଟିରେ ୧୯୩୮ରେ ଏମିତି ଘରକୁ ଆସିବାବେଳେ ଅଛବାଟ ଆସି ପାକନପୁର ଗହରି ରାସ୍ତାରେ କାଦୁଅ ମନ୍ଥି ଚାଲି ଚାଲି ଥକିଯାଇ ଗାଁର ଗୋଟିଏ ଦୋକାନର ବାଘମୁହଁରେ ବିଶ୍ରାମ ନେବାକୁ ବସିଲି । ସେଠାରେ ଜଣେ ସୌମ୍ୟଦର୍ଶନ ବୟସ୍କ ବ୍ୟକ୍ତିଙ୍କୁ ଦେଖିଲି । ଗୋଲ୍ଡ ଗୋଲ୍ଡ ଫ୍ରେମ୍‌ର ଚଷମା ପିନ୍ଧିଥାନ୍ତି ଓ ହାଫପ୍ୟାଣ୍ଟ ସାର୍ଟ ପିନ୍ଧିଥାନ୍ତି । କାନ୍ଧରେ ଗୋଟାଏ ଓଜନିଆ ବଡ଼ ଥଳି ଝୁଲୁଥାଏ । ଜୋତା କାଦୁଅ ଯୋଗୁ ହାତରେ ଧରିଥାନ୍ତି । ସମ୍ମାନନୀୟ ଦେଖି ମୁଁ ନମସ୍କାର କଲାରୁ ସେ ମୋର ପରିଚୟ ପଚାରିଲେ । ଜଗତସିଂହପୁର ହାଇସ୍କୁଲ ଛାତ୍ର ଜାଣି ସେ ମତେ ଇଂରେଜୀ ବ୍ୟାକରଣ ପାଠ କିଛି ପଚାରିଲେ । Gerundial Adjective କଣ ? ମୁଁ Gerund କେବଳ ଜାଣିଥାଏ । ସୋ ମୋତ ବୁଝାଇଦେଲେ, ଆମେ ସାଙ୍ଗ ହୋଇ ଆଗକୁ ଚାଲିଲୁ । ଅନ୍ୟମାନଙ୍କ ଠାରୁ ବୁଝିଲି ସେ ମଧୁସୂଦନ ବିଶ୍ଵାଳ । ଘର ଅଲଣାହାଟ ପାଖ ଗାଁରେ, ସେତେବେଳେ

ଖୋର୍ଦ୍ଧା ଓଳସିଂହ ହାଇସ୍କୁଲର ପ୍ରଧାନ ଶିକ୍ଷକ ଥାଆନ୍ତି । ସେତେବେଳେ ବାଲିକୁଦା ଥାନାରେ ପରିଡ଼ା ସାହେବଙ୍କ ବ୍ୟତୀତ ସେ ୨ୟ ଉଚ୍ଚଶିକ୍ଷିତ ବ୍ୟକ୍ତି ଥିଲେ । ତେଣୁ ଆମେ ତାଙ୍କ ନାମ ଶୁଣିଥାଉ । ଦୁଇଟା ବିଷୟରେଏମ୍.ଏ. ପାସ କରି ଥାଆନ୍ତି । ସରକାରୀ ଚାକିରିରେ ପରିଦର୍ଶକ ଥାଇ ତାକୁ ଛାଡିଦେଲେ । ସତ୍ୟବାଦୀ ବନବିଦ୍ୟାଳୟର ଶିକ୍ଷକଥିଲେ । ବାରିପଦା, ଖଡିଆଳ, ଢେଙ୍କାନାଳ ଆଦି କେତେକ ଉଚ୍ଚ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଥିଲେ । କଂଗ୍ରେସରେ ଯୋଗଦାନ କରି ଖ୍ରୀ ୧୯୨୭ରେ ବାଲିକୁଦାରୁ ଜିଲାବୋର୍ଡ ମେମ୍ବର ରୂପେ ନିର୍ବାଚିତ ହୋଇ ଲୋକାଲ ବୋର୍ଡର ଚେୟାରମ୍ୟାନ ମଧ୍ୟ ହୋଇଥିଲେ । ତାଙ୍କ ଗାଁକୁ ଯାଉଥାନ୍ତି । ଅଧବାଟରୁ ଭାଙ୍ଗିଗଲେ । ପ୍ରାୟ ଅଧଘଣ୍ଟାରୁ ବେଶି ତାଙ୍କ ସାଙ୍ଗରେ ଗପସପ କରି ଚାଲିବାର ସୌଭାଗ୍ୟ ମତେ ମିଳିଲା । ଛାତ୍ରମାନଙ୍କର ଅଧ୍ୟୟନ ତପ ବୋଲି ମତେ କହି ସେଥିରେ ହେଳା ନ କରିବାକୁ ପରାମର୍ଶ ଦେଲେ । ଅନେକ ବର୍ଷ ପରେ ମୁଁ ୧୯୪୫ରେ ବାଲିକୁଦା ପ୍ରସ୍ତାବିତ ହାଇସ୍କୁଲର ଶିକ୍ଷକ ଥାଏ । ପ୍ରଥମ ବ୍ୟାଚ ୧୯୪୫ ପରୀକ୍ଷାର୍ଥୀ ମଧ୍ୟରୁ ଜଣକୁ ଛାଡି ସମସ୍ତେ ପାସ କରିଥାନ୍ତି । ବିଦ୍ୟାଳୟ କର୍ତ୍ତୃପକ୍ଷ ସେମାନଙ୍କୁ ଫୁଲତୋଡା ଦେଇ ସମ୍ମାନିତ କରିବାକୁ ନିଷ୍ପତ୍ତି ନେଲେ । ଜଣେ ଶିକ୍ଷାବିଦଭାବରେ ଏହି ସଭାରେ ଅଧ୍ୟକ୍ଷତା କରିବାକୁ ମୁଁ ତାଙ୍କୁ ଗାଁରେ ଦେଖାକଲି । ପୂର୍ବ ପରିଚୟ ଶୁଣାଇବାରୁ ସେ ମନେ ପକାଇ ସମ୍ମତି ଦେଲେ । ସଭାରେ ପ୍ରାୟ ଏକ ଘଣ୍ଟା ଅନର୍ଗଳ ଭାଷଣ ଦେଇ ଛାତ୍ରମାନଙ୍କର କର୍ତ୍ତବ୍ୟ, ଶିକ୍ଷାର ଉଦ୍ଦେଶ୍ୟ, ବିଦ୍ୟା ଶିକ୍ଷାରେ ବାଧକ ଆଦି ଛାତ୍ର ଓ ସେମାନଙ୍କର ନିମନ୍ତ୍ରିତ ଅଭିଭାବକମାନଙ୍କୁ ଶୁଣାଇଲେ । ବାଟଚାଲି ଯିବାର ଏମିତି ଲାଭ ଓ କ୍ଷତି ମୋର ଅଭିଜ୍ଞତା ରହିଛି ।

ଜଗତସିଂହପୁର ମେଲେରିଆ ଅଞ୍ଚଳ । ସେତେବେଳେ ଅତିମାତ୍ରାରେ ଏହାର ପ୍ରକୋପ ଥାଏ । ମଶାରିର ବ୍ୟବହାର ଅତି ଅଳ୍ପ । ସମସ୍ତେ ଶୋଇବା ଆଗରୁ ଘରେ ଧୂଆଁ ଦେଇ ମଶା ତଡ଼ିଦେଇ ଶୁଅନ୍ତି । ମୁଁ ମଧ୍ୟ । ଗୋଟାଏ ପଲମରେ ଏଥିପାଇଁ ରଡ଼ ଅଙ୍ଗାର ନିଆଁରେ ଧୂଆଁ ସୃଷ୍ଟିକରାଯାଏ ଝୁଣା ଗୁଗ୍ଗୁଲୁ ଦେଇ ମାତ୍ର ସବୁ ସମୟରେ ତାହା ସଂଭବ ନଥାଏ ଓ ଏହା ବ୍ୟୟସାପେକ୍ଷ । ଆମ ଶ୍ରେଣୀର ୩୦ ଜଣ ପିଲାଙ୍କ ମଧ୍ୟରୁ ଜୁଲାଇ ଅଗଷ୍ଟବେଳକୁ ଜର ନ ଥାଇ କ୍ୱଚିତ ଛାତ୍ର ରହନ୍ତି । ତେଣୁ ଅନେକ

ସମୟରେ କ୍ଲାସ ମଧ୍ୟ ସେହି କାରଣରୁ କରାଯାଇନଥାଏ । ବେଳେବେଳେ ପଢ଼ାଉଥିବା ମଝିରେ ଶିକ୍ଷକଙ୍କୁ କଂପ ଆସିଲେ ସେ ଛାତ୍ରାବାସର ନିଜ କୋଠରୀକୁ ଧାଇଁଯାଇ ଶୁଅନ୍ତି । କଂପ ବେଶି ହେଲେ ତାଙ୍କୁ ଜଣେ କେହି ଚାପି ଧରିବାକୁ ପଡ଼େ କମ୍ବଳ କମ୍ବଳ ଘୋଡ଼ା ଘୋଡ଼ି ସତ୍ତ୍ୱେ । ଜୁଲାଇ ମାସରେ ବର୍ଷର ଅଧା । ମାତ୍ର ପ୍ରସ୍ତାବିତ ସ୍କୁଲ ହେବାରୁ ପଢ଼ାପଢ଼ି ପଛେଇ ଯାଇଥିବାରୁ ଜୋରରେ ଆରମ୍ଭ କରାଯାଏ । ମୋର ଏହି ସମୟରେ ମେଲେରିଆ ଆରମ୍ଭ ହେଲା । ଜରରେ ପ୍ରଥମେ କଂପ ଆସେ । ଘୋଡ଼ାଘୋଡ଼ି ହୋଇ କଂପି କଂପି ଶୋଇବାପରେ ଉତ୍ତାପ ଅତି ବେଶି ବଢ଼ିଯାଏ । ଓ ଶେଷରେ ଝାଳବୋହି, ଲୁଗା ପୋଛିହେଲା ଗାମୁଛା ମଧ୍ୟ ଓଦା ହୋଇଯାଏ । ଇଉନିଅନ ପ୍ରେସିଡ଼େଣ୍ଟଭାବରେ ବିଭିନ୍ନ କୁଇନାଇନ କଂପାନି ତାଙ୍କ ବିଜ୍ଞାପନ ହାଡୁବାବୁଙ୍କ ପାଖକୁ ପଠାନ୍ତି । ଡ଼ାକଘରେ ମଧ୍ୟ କୁଇନାଇନ ବିକ୍ରି କରାଯାଉଥାଏ । ତାହାର ମନ୍ଦ ପ୍ରତିକ୍ରିୟା ଯୋଗୁ ଆୟୁର୍ବେଦିକ ଔଷଧର ବେଶି ଲୋକପ୍ରିୟତା ଥାଏ । ଜଗତସିଂହପୁର ନିକଟରେ ପୁନଙ୍ଗ ଗୋଟିଏ ବଡ଼ ଜନ ବହୁଳ ଗ୍ରାମ । ସେଠାରେ ବିପିନ ବିହାରୀ ଅଧିକାରୀ ବୋଲି ଜଣେ ବଙ୍ଗାଳି ବୈଦ୍ୟ କବିରାଜ ଥାଆନ୍ତି । ତାଙ୍କର ବିଶେଷ ଲୋକପ୍ରିୟତା ଥାଏ । ପ୍ରାୟ ୪/୫ ଜଣ ସହକାରୀ ତାଙ୍କ ଘରେ ସବୁସମୟରେ ଔଷଧ ଗୁଣ୍ଡ ମୋଦକ ଲେହ ଅରିଷ୍ଟ ଓ ବଟିକା ତିଆରି କରିବାରେ ନିଯୁକ୍ତି ଥାଆନ୍ତି । ରୋଗୀମାନଙ୍କର ଭିଡ଼ ଦିନ ତମାମ ଲାଗିଥାଏ । ସେ ମଧ୍ୟ ଡ଼ାକରାପାଇ ପାଖଦୂର ଗାଁକୁ ଯାଇ ରୋଗୀ ଦେଖି ରୋଗ ଓ ଏହାର ମାରାତ୍ମକତା ନିର୍ଦ୍ଧାରଣ କରି ଓଷଦ ଦିଅନ୍ତି । ପରିବାରର ଅନ୍ୟମାନେ ସେଇଠାରୁ ଓଷଦ ଆଣି ବ୍ୟବହାର କରନ୍ତି । ମୋ ପାଇଁ ମଧ୍ୟ ଆସିଲା । ମୁଁ ବ୍ୟବହାର କଲି ମାତ୍ର ଫଳ ବିଶେଷ ନ ହେଲାରୁ କ୍ଲାସଯିବା ବନ୍ଦ ହେଲା । ବାପାଙ୍କୁ ମୋର ସ୍ୱାସ୍ଥ୍ୟାବସ୍ଥା ଜଣେଇ ଦିଆଗଲା । ଦୁର୍ବଳ ହୋଇଯାଇଥାଏ । ଜଣେ ବାରିକ ଗୋଟିଏ ସାଇକେଲରେ ପଛ ସିଟିରେ ବସାଇ କେନାଲ ଶାନ୍ତାରେ ମତେ ନେଇ ଘରେ ଛାଡ଼ି ଆସିଲା । ହାଡୁବାବୁ ଆମ ଘର ଅବସ୍ଥା ଅବଗତ ଥାଆନ୍ତି । ତେଣୁ ମୋତେ ସଂଖୋଳିବାକୁ ମାସକ ଉତ୍ତାରେ ସେଇ ବାରିକ ଗଲା ଓ ମୋ ପାଇଁ ପୁରୁଣା ଚାଉଳ, ଘିଅ, ସଜନାଛୁଇଁ, କଦଳି, ବାଇଗଣ ଭଳି ପରିବା ଓ ମୁଗଡ଼ାଲି ଧରି ଯାଇଥିଲା । ଏପ୍ରକାର ଚର୍ଚ୍ଚା ଆମ ଗାଁର ସବୁ ଶ୍ରେଣୀର ଲୋକଙ୍କୁ ତାଜୁବ କରିଦେଲା ।

ବନ୍ଧୁ ବାନ୍ଧବ ଘରୁ ମଧ୍ୟ ଏପରି ଚରଚା ପାଇବା ଅସାଧାରଣ ଥିଲା । ସମସ୍ତେ ହାଡୁବାବୁଙ୍କର ଉଦାରତାରେ ଚର୍ଚ୍ଚା କରି ମୋର ନବୋଦିତ ସୌଭାଗ୍ୟରେ ଆନନ୍ଦ ପ୍ରକାଶ କରିବାରେ ଲାଗିଲେ । ମୋର ଜ୍ୱର ଛାଡ଼ିଲା ବେଳକୁ ଦଶରା ଛୁଟି ପଡ଼ିଗଲା । ତେଣୁ ମୁଁ ଛୁଟି ପରେ ଆସି ଶ୍ରେଣୀରେ ଯୋଗଦେଲି । ସେତେବେଳକୁ ପାଠପଢ଼ା ଖୁବ ଆଗେଇ ଯାଇଥାଏ । ଅନ୍ୟ ପାଠରେ ସିଘଂ (ଦିବ୍ୟସିଂହ)ର ବହିପତ୍ର ଆଣି ପଢ଼ି ମୁଁ ସମାନ ସ୍ତରକୁ ଆସିଗଲି । ମାତ୍ର ବୀଜଗଣିତ ନୂଆପାଠ । ମୁଁ ମେଲେରିଆ ରୋଗୀ । ଶ୍ରେଣୀ ନ ଯିବାବେଳକୁ କେବଳ ପ୍ରଥମ ତିନିଗୋଟି ଫରମୁଲା $(A+B)^2$ $(A-B)^2$ $(A^2-B^2)$ ମାତ୍ର ପଢ଼ା ଯାଇଥାଏ । ମୁଁ ଆସିଲାବେଳକୁ ବହୁତ ଆଗେଇ ଗଲେଣି । ମତେ ବୁଝାଇଦେବା ଭଳି କେହି ସହପାଠୀ ନ ଥିଲେ । ଗଣିତ କୌଣସି ପ୍ରକାର ଚଳେଇନେଲି । ଜ୍ୟାମିତିର ଉପପାଦ୍ୟ ଆଗରୁ ୬ଷ ୭ମରେ ପଢ଼ାଯାଉଥିବା ହେତୁ ବେଶି କଷ୍ଟ ହେଲା ନାହିଁ । ମାତ୍ର ଆଲଜେବ୍ରା (ବୀଜ ଗଣିତ) ପରି ନୂଆ ବିଷୟ ପ୍ରତି ମୋର ଡ଼ର ହୋଇଗଲା । ଗଣିତ ଓ ଜ୍ୟାମିତିର ନୂତନ ବିଷୟ ଅଙ୍କ ପ୍ରତିପାଦ୍ୟ ଦିନକୁଦିନ ମୋ ପ୍ରତି ହିଂସ୍ର ରୂପ ଧାରଣ କଲା । ଷାଣ୍ମାସିକ ପରୀକ୍ଷାରେ ଜୟକୃଷ୍ଣ ମିଶ୍ରଙ୍କଠାରୁ ଅଙ୍କ କେତେ ନମ୍ବର ଆଗେଇ ପ୍ରଥମ ହୋଇଥିଲି । ସେ ଗଣିତରେ ଖୁବ ପୋଖତ । ବିଏ ପର୍ଯ୍ୟନ୍ତ ଗଣିତ ତାଙ୍କର ବିଷୟ ବସ୍ତୁ ଥିଲା । ମୋର ଶ୍ରେଣୀରେ ପୋଜିସନ ରଖିବା ଆଶା ସୁଦୂର ପରାହତ ଜଣାପଡୁଥାଏ । ନୂଆ ବର୍ଷ ଆରମ୍ଭବେଳକୁ ବାର୍ଷିକ ପରୀକ୍ଷାରେ ସେମିତି କିଛି ଉଲ୍ଲେଖଯୋଗ୍ୟ କୃତିତ୍ୱ ନ ରଖି ୯ମ ଶ୍ରେଣୀକୁ ଉନ୍ନୀତ ହେଲି ।



# ସବୁଜ ସୁରକ୍ଷାବଳୟରୁ ରକ୍ଷ ନିର୍ଜଳ ମରୁପ୍ରାନ୍ତର

୧୯୩୭ ମସିହାରେ ବିଦ୍ୟାଳୟରେ ଦଶମ ଶ୍ରେଣୀ ଖୋଲିଲା । ଏଥିପାଇଁ ଅନୁମତି ଦେବାକୁ ନୂତନ ଓଡ଼ିଶା ପ୍ରଦେଶର ଶିକ୍ଷା ବିଭାଗର ଡିରେକ୍ଟର ମିଷ୍ଟର ହରବଟ ଡିସଇ ବିଦ୍ୟାଳୟ ପରିଦର୍ଶନ କଲେ । ଶ୍ରେଣୀ ବୁଲି ଛାତ୍ରମାନଙ୍କୁ ପ୍ରଶ୍ନ କରି ଶିକ୍ଷାଦାନର ମାନ ନିରୂପଣ କଲେ । ମାତ୍ର ଅନୁମତି ଆସିବାରେ ବିଳମ୍ବ ହେଲା । ନୂତନ ନିର୍ବାଚନ ପରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନର ସଂଭାବନା ସୁନିଶ୍ଚିତ ଥାଏ । ଲୋକଙ୍କର ଧାରଣା ହେଲା, ସେମାନେ ତାଙ୍କର ରାଜନୈତିକ ବିରୋଧୀ ଓ ରାଜଭକ୍ତ ଶ୍ରୀକୃଷ୍ଣ ମହାପ୍ରଭୁଙ୍କୁ ବିଦ୍ୟାଳୟ ପ୍ରତିଷ୍ଠାର ମର୍ଯ୍ୟାଦା ଅର୍ଜନ କରିବାକୁ ସୁଯୋଗ ଦେବେ ନାହିଁ । ଶ୍ରୀକୃଷ୍ଣ ମହାପାତ୍ରଙ୍କ ପୁଅ ଶ୍ୟାମାଚରଣ ମହାପାତ୍ର (ନିଲୁବାବୁ) କନିକା ଦଳ ଟିକେଟରେ ପ୍ରତିଦ୍ୱନ୍ଦିତା କରି କଂଗ୍ରେସ ପ୍ରାର୍ଥୀ ନିତ୍ୟାନନ୍ଦ କାନୁନଗୋଙ୍କଠାରୁ ହାରି ଯାଇଥାଆନ୍ତି । ଚାରିଆଡ଼େ ଏକ ନିରାଶାର ବାତାବରଣ ଦେଖାଗଲା । ଅଳ୍ପ କେତେଜଣଙ୍କୁ ଛାଡ଼ି ଅନ୍ୟମାନେ ସାର୍ଟିଫିକେଟ ନେଇ ବିଭିନ୍ନ ସ୍ଥାନକୁ ଚାଲିଗଲେ । କୌଣସି ସ୍ଥାୟୀ ପ୍ରଧାନଶିକ୍ଷକ ନଥାନ୍ତି । କଟକରେ ୧୯୩୬ ମସିହାରେ ବାପାଙ୍କ ସାଙ୍ଗରେ ବୁଲି ଅର୍ଜନ କରିଥିବା ମୋର ତିକ୍ତ ଅଭିଜ୍ଞତା ମଧ୍ୟ ମୁଁ ଭୁଲିଗଲି । ଅନନ୍ତ କଟକରେ କରଣ

ସାମନ୍ତ ହଷ୍ଟେଲରେ ରହି ପଢୁଥାଆନ୍ତି । ଗୋପାଳଜି ମନ୍ଦିର ନିକଟରେ ଅବସ୍ଥିତ ଏହି ଛାତ୍ରାବାସ ପୁରୀ ବ୍ରାହ୍ମଣ ସମିତି ଛାତ୍ରାବାସର ପ୍ରତିକ୍ରିୟାଭାବେ କେବଳ କରଣମାନଙ୍କ ପାଇଁ ପ୍ରତିଷ୍ଠିତ ହୋଇଥିଲା । 'କରଣ ସାମନ୍ତ ସମାଜ' ନାମରେ ଏକ ଅନୁଷ୍ଠାନ ଏହାର ପରିଚାଳନା ଦାୟିତ୍ୱ ନେଇଥିଲେ । ଜଣେ ସୁପରିଟେଣ୍ଡେ ରହି ଛାତ୍ରାବାସର ଦୈନନ୍ଦିନ ପରିଚାଳନା କରୁଥିଲେ । ପ୍ରାୟ ୨୫/୩୦ ଜଣ ଛାତ୍ର ରହୁଥିଲେ । ସେ ସମୟର କଟକର ଅନେକ ବିଶିଷ୍ଟ ଲୋକ ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତି, ବୀରକିଶୋର ରାୟ, ସ୍ୱାମୀ ବିଚିତ୍ରାନନ୍ଦ ଦାସ, ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା, ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରଭୃତି ଏହାର ପରିଚାଳନା ନିମିତ୍ତ ଅର୍ଥଦାନ କରୁଥିଲେ । ଛାତ୍ରମାନେ ମଧ୍ୟ ସାମୟିକ ମୁଷ୍ଟିଭିକ୍ଷା ମାଧ୍ୟମରେ ଚାଉଳ ପଇସା ସଂଗ୍ରହକରି ଆଣୁଥିଲେ । ଛାତ୍ରମାନଙ୍କୁ ସିଟ ରେଣ୍ଟ ବାବଦକୁ ସାମାନ୍ୟ ଦେୟ ଦେବାକୁ ପଡୁଥିଲା । ଏହା ବ୍ୟତୀତ ରାମକୃଷ୍ଣ କଟେଜ ନାମରେ ଅନ୍ୟ ଏକ ଛାତ୍ରବାସ ଥିଲା । ଶ୍ରୀ ରାମକୃଷ୍ଣଙ୍କର କଟକର ତତ୍‌କାଳୀନ ବନ୍ଧୁ ଭକ୍ତ ପଣ୍ଡିତ ଆକୁଳିମିଶ୍ର ଉମାଚାରଣ ମହାନ୍ତି, ପ୍ରକାଶକ ପ୍ରଧାନ ଶିକ୍ଷକ କୃଷ୍ଣଚନ୍ଦ୍ର ସେନଗୁପ୍ତ ଓ କେତେକ ଓକିଲ ଏହାର ପରିଚାଳନା ଦାୟିତ୍ୱରେ ଥାଇ ଏହାର ପୃଷ୍ଠପୋଷକ ଥିଲେ ।

ସେଠାରେ ମଧ୍ୟ ଛାତ୍ରମାନେ ସପ୍ତାହରେ ଥରେ ମୁଷ୍ଟିଭିକ୍ଷା କରି ଚାଉଳ ଓ ଅର୍ଥ ସଂଗ୍ରହ କରୁଥିଲେ । ଜାତି ନିର୍ବିଶେଷରେ ଏଠାରେ ଛାତ୍ର ଗୃହୀତ ହେଉଥିଲେ । ଅନନ୍ତ ମୋଠାରୁ ଅଭିଜ୍ଞ । ସେ ପରାମର୍ଶ ଦେଲେ ହାଇସ୍କୁଲ ଗତ ଥର ପରି ମଧ୍ୟ ମଞ୍ଜୁରି ନ ପାଇ ଭାଙ୍ଗିଯିବ । କେବଳ ୮ମ ଓ ୯ମ ଶ୍ରେଣୀ ରହିଲେ କାହିଁକି କିଏ ଏଠି ପଢ଼ିବ । ସେ କହିଲେ ତମର ଅଷ୍ଟମ ପରୀକ୍ଷା ଫଳ ଦେଖିଲେ ତମେ କୌଣସି ଛାତ୍ରାବାସରେ ସ୍ଥାନ ପାଇ ପାରିବ ଓ ବଦାନ୍ୟ ବ୍ୟକ୍ତିଙ୍କ ଠାରୁ ପରେ ମାସିକ ଅର୍ଥ ସାହାଯ୍ୟ ପାଇପାରିବ । ସେ କରଣ ସାମନ୍ତ ଓ ରାମକୃଷ୍ଣ ଛାତ୍ରାବାସର ଉଦାହରଣ ଦେଲେ । ଦୁର୍ଭାଗ୍ୟକୁ ବାଲ୍ୟ ଚାପଲ୍ୟବଶତଃ ଅତୀତର ତିକ୍ତ ଅଭିଜ୍ଞତା ବିସ୍ମୃତ ହୋଇ ମୁଁ ତାଙ୍କ ପରାମର୍ଶ ଗ୍ରହଣ କଲି । ଦିନେ ମାର୍ଚ୍ଚମାସ ଶେଷ ଆଡ଼କୁ ମୋର ଲୁଗାପଟା ଧରି ତାଙ୍କ ସାଇକେଲର ପଛ କାରିଅରେ ବସି ମୁଁ କଟକ ଅଭିମୁଖେ ଯାତ୍ରା କଲି । ସିଧା ରାସ୍ତାରେ ଗଲେ କେହି ଦେଖିପାରିବା ଭୟରେ ଆମେ କେନାଲ କୂଳେ କୂଳେ

ଚାରିପୋଲିଆ ଯାଏ ଗଲୁ । ସେଠାରୁ କନ୍ଦରପୁର କଟକ ରାସ୍ତାରେ ଯାଇ ବିରିବାଟିରେ ଚାରିଟା ସୁଦ୍ଧା ପହଞ୍ଚିଲୁ । ଅନନ୍ତଙ୍କର ଭିଣୋଇ ବିରିବାଟିର ସେକସନ ଅଫିସର ଥାଇ କେନାଲ ଲକ ଦାୟିତ୍ୱରେ ଥାଆନ୍ତି । ସେ ସକୁଟୁମ୍ବେ ସରକାରୀ ବାସଭବନରେ ରହୁଥାଆନ୍ତି । ସେଦିନ ରାତିରେ ଆମେ ତାଙ୍କ ଘରେ ରହିଲୁ । ସକାଳୁ ଜଳଖିଆ ଖାଇ କଟକ ଗଲୁ । ହାଡୁବାବୁଙ୍କ ମାମୁଁ ଘର ସୁଜଙ୍ଗ । ସେମାନେ ମଧ୍ୟ ଜମିଦାର ଥିଲେ । ରାମକୃଷ୍ଣ କଲେଜ ପାଖରେ ତାଙ୍କର ଏକ ଘର ଥାଏ । ସେଠାରେ କେତେଜଣ ଅମଲା ଓ ମୁନିସିପାଲଟି କର୍ମଚାରୀ ଏକ ମେସ କରି ରହୁଥାଆନ୍ତି । ଆମେ ସେଇଠି ରହିଲୁ । ମାଲିକ ଜମିଦାର ଗୋବିନ୍ଦ ଚନ୍ଦ୍ର ଦାସ । ତାଙ୍କ ସାନ ଭାଇ ନୃସିଂହଚରଣ ଦାସ । ସେ ବିଏ ପାସକରି ବନ୍ଦୋବସ୍ତରେ ଆସିଷ୍ଟାଣ୍ଟ ସେଟଲମେଣ୍ଟ ଅଫିସର ଥିଲେ । ପ୍ରଥମ ଥର ହାଇସ୍କୁଲ ସ୍ଥାପନା ବେଳେ ସେଠାରେ ମଧ୍ୟ ଶିକ୍ଷକ ଥିଲେ । ସେମାନେ ମୋତେ ଜାଣିଥିଲେ । ବୋଧହୁଏ ସେଇ ଚିହ୍ନା ପରିଚୟ ଥିବା ଯୋଗୁ ମୋର ରହିବାରେ ସେଠାରେ କେହି ଆପତ୍ତି କଲେ ନାହିଁ। ମୁଁ କପର୍ଦ୍ଦକ ଶୂନ୍ୟ, ପରିଦିନ ଜଣାପଡିଲା ରାମକୃଷ୍ଣ କଲେଜରେ ସ୍ଥାନ ଖାଲି ନାହିଁ । ଛାତ୍ରାବାସର ପରିଚାଳକ ସାମନ୍ତ ହଷ୍ଟେଲର ଜଣେ କପିଳଚରଣ ମହାନ୍ତି ଥାଆନ୍ତି । ତାଙ୍କ ଉପରେ ଅନ୍ୟଆଡୁ ପ୍ରଭାବ ପକାଇ ମତେ ଗ୍ରହଣ କରାଯାଇ ପାରିବ ଏହି ଆଶା ଦେଇ ଅନନ୍ତ ମତେ ସୁଜଙ୍ଗ ମେସ୍‌ରେ ରହିବାର ବ୍ୟବସ୍ଥା କଲେ ।

ଏହା ଭିତରେ ମୋର ପଳାୟନ ସମସ୍ତଙ୍କୁ ବିସ୍ମିତ କଲା । ସବୁ ପ୍ରକାର ସୁଖ ସୁବିଧା ସତ୍ତ୍ୱେ ମୁଁ କର୍ତ୍ତାଙ୍କୁ ନ ଜଣାଇ ପଳାଇଯିବା ମୋର ଚରିତ୍ରର ଏକ ଘୃଣିତ ଦିଗ ବୋଲି ସମସ୍ତେ କହିଲେ । ହାଡୁବାବୁ ଅତି ବ୍ୟଥିତ ହୋଇ ବାରିକ ଜରିଆରେ ଗାଁରେ ବାପାଙ୍କୁ ଖବର ଦେଲେ । ବାପାଙ୍କର ଧୈର୍ଯ୍ୟ ତୁଟିଗଲା । ମୋର ଅପ୍ରତ୍ୟାଶିତ ଆଚରଣ ମଧ୍ୟ ତାଙ୍କୁ ବ୍ୟଥିତ କଲା । କାନ୍ଦି ବୋବାଇ ସେ ଘରଡ଼ିଅ ବନ୍ଧକ ଦେଇ କେତେ ଟଙ୍କା ଆଣି ମତେ କଟକରେ ଖୋଜିବାକୁ ବାହାରିଲେ । ଘର ଡ଼ିଅ ଛଡ଼ା ତାଙ୍କର କୌଣସି ସ୍ଥାବର ବା ଅସ୍ଥାବର ସଂପତ୍ତି ନଥାଏ । ମତେ ଖୋଜି ଠାବ କଲେ । ସେତେବେଳକୁ ୨/୩ ଦିନ ଉପାସରେ ଥାଆନ୍ତି । ମତେ କିଛି କହିଲେ ନାହିଁ । ମାତ୍ର କାନ୍ଦି କାନ୍ଦି ଫୁଲି ଯାଇଥିବା ତାଙ୍କ ମୁହଁ ଦେଖି ମୋର ଧୈର୍ଯ୍ୟ

ତୁଟିଗଲା । ମୁଁ ସାଙ୍ଗେ ସାଙ୍ଗେ ତାଙ୍କ ସହିତ ଗାଁକୁ ଫେରିଯିବାକୁ କହିଲି । ବିନା ବାକ୍ୟ ବ୍ୟୟରେ ସେ ମତେ ଧରି ଗାଁକୁ ଆସିଲେ । ବାଟରେ ମତେ ମୋର ଆଚରଣ ବିଷୟରେ ପଦେ ଶୁଣାଇ ନ ଥାଆନ୍ତି । ଗାଁରେ ଆସିଲାବେଳକୁ ଦେଖିଲି ଯେଉଁମାନେ ମୋର ସୌଭାଗ୍ୟର ପ୍ରଶଂସା କରୁଥିଲେ, ମୋର ଉଜ୍ଜ୍ୱଳ ଭବିଷ୍ୟତର ସ୍ୱପ୍ନ ଦେଖୁଥିଲେ ସେମାନେ ମତେ କୃତଘ୍ନ ବୋଲି ସମ୍ମୁଖରେ କହି ମୋର ଘୃଣିତ ଆଚରଣର ସବୁଠାରେ ନିନ୍ଦା କଲେ । ମୁଁ ମଧ୍ୟ ନିଜ ଆଚରଣର ପ୍ରତିକ୍ରିୟା ବିଷୟରେ ନିଜେ ସଜାଗ ହୋଇ ଘରେ ବନ୍ଦ ହୋଇ ରହିଲି । ଘରେ ବାପାଙ୍କର ଚଳିବା କଷ୍ଟ । ମୋତେ କିଛିଦିନ ଗଲେ କେଉଁଠି ନେଇ ରଖାଇ ଦେଇ କିଛି ଆୟର ବ୍ୟବସ୍ଥା କରିବା ସୁଯୋଗରେ ଥାଆନ୍ତି । ମାତ୍ର ମୋତେ ପଦଟିଏ ମଧ୍ୟ କିଛି ଶୁଣାନ୍ତି ନାହିଁ । ସବୁଠାରେ ସେ ମୋର ମନ୍ଦଗ୍ରହକୁ ଦାୟୀ କରି ତାହା ପ୍ରଭାବରେ ମୋ ପରି ପିଲା ଏପରି କରିଛି ବୋଲି ଅନ୍ୟମାନଙ୍କୁ ବୁଝାଇ ଦିଅନ୍ତି । ପଢ଼ିବାକୁ ବହିପତ୍ର ମଧ୍ୟ ନଥାଏ । ଖଣ୍ଡେ ସ୍ତବ ବହି ଥାଏ । ମୁଁ ବଙ୍ଗଳା ନୂଆ କରି ଶିଖୁଥାଏ ।

ଢ଼ାକା ଅୟୁର୍ବେଦିକ ଫାର୍ମାସୀ ତାଙ୍କ ଔଷଧ ତାଲିକା ସହିତ ୧୦/୧୫ ଗୋଟି ବିଭିନ୍ନ ଦେବଦେବୀଙ୍କର ପ୍ରାର୍ଥନା ଏଥିରେ ଛପାଇ ଥାଆନ୍ତି । ସେଇଆ ବସି ପଢ଼େ । ମୋର ଅନୁତାପ ଈଶ୍ୱର ଗ୍ରହଣକରି ମତେ କ୍ଷମା କରି ଜୀବନ ସଂଗ୍ରାମ ଆରମ୍ଭ କରିବାକୁ ପୁଣି ପ୍ରେରଣା ଦେବେ ଏଇଆ ନିତି ପ୍ରାର୍ଥନା କରୁଥାଏ । ଏମିତି ପ୍ରାୟ ଦେଢ଼ମାସ କଟିଗଲା । ହାଇସ୍କୁଲରେ ବି.ଏ. ପରୀକ୍ଷା ଦେଇଥିବା ଜଣେ ଶିକ୍ଷକ ଆସି କିଛିଦିନ ରହିଲେ । ମୋର ଶିକ୍ଷକଥିବା କିଶୋରୀବାବୁଙ୍କ ଠାରୁ ଖଣ୍ଡେ ଇଂରାଜୀ ଚିଠି ପାଇଲି । କାହା ହାତରେ ସେ ପଠାଇଥିଲେ କେଜାଣି । ସେଥିରେ ଲେଖାଥିଲା Where there is a will there is a way । ତୋର ଯଦି ପାଠ ପଢ଼ିବାର ଇଚ୍ଛା ଅଛି ତେବେ ଈଶ୍ୱର ନିଶ୍ଚୟ ତାର ବ୍ୟବସ୍ଥା କରିଦେବେ । ତୋର ଯଦି ପୂର୍ବ ଆଚରଣ ପାଇଁ ଅନୁତାପ ଆସିଥାଏ ଓ ଅନ୍ତତଃ ଜୀବନରେ ମାଟ୍ରିକ ଶିକ୍ଷା ଶେଷ କରିବାକୁ ଦୃଢ଼ ମନବଳ ଥାଏ ତେବେ ଏହି ଚିଠି ପାଇବା ସାଙ୍ଗେ ସାଙ୍ଗେ ମୋ ସହିତ ଆସି ହଷ୍ଟେଲରେ ଦେଖା କରିବୁ । ତୋର ଭବିଷ୍ୟତ ଶିକ୍ଷା ବ୍ୟବସ୍ଥା ବୋଧହୁଏ ମୋର ମାଧ୍ୟମରେ ହୋଇଯାଇ ପାରିବ । ବାପାଙ୍କୁ ଚିଠି କଥା କହିଲି । ସେ ଅନୁମତି

ଦେବା ପୂର୍ବରୁ ବାହାରିପଡିଲି ଜଗତସିଂହପୁର ଅଭିମୁଖେ । ବୋଉ ଜଳଖିଆ ଖାଇବି ବୋଲି ଚାଉଳ ଭାଜି ତାକୁ ଗୁଣ୍ଡ କରି ଦେଇଥାଏ । ଭୋକ ଲାଗିଲେ ଖାଇବାକୁ । ତାର କଷ୍ଟ ସଞ୍ଚିତ କଣ ଦିଅଣା ଚାରଣା ପଇସା ଦେଉଥିଲା, ମୁଁ ମନା କଲି । ଉପରବେଳା ହଷ୍ଟେଲରେ ପହଞ୍ଚିଲି । ସମସ୍ତେ ମତେ ଦେଖି ଆଶ୍ଚର୍ଯ୍ୟ ହେଲେ । ମୋର ସହପାଠୀ ଓ ପରିଚିତ ଅନ୍ତେବାସୀମାନେ ମୋର ଆଚରଣ ନିନ୍ଦିତ ଘୃଣିତ ଓ ମୁଁ ସମ୍ମାନ ଯୋଗ୍ୟ ନୁହେଁ ବୋଲି କହି ମୋଠାରୁ ମୁହଁ ବୁଲେଇ ନେଲେ । କିଶୋରୀବାବୁ ପ୍ରତ୍ୟହ ସକାଳେ ସନ୍ଧ୍ୟାରେ ବୁଲି ଯାଆନ୍ତି । ଏବେ ସ୍କୁଲ ସକାଳୁଆ । ଉପରବେଳାର ବୁଲା, ତେଣୁ ଟିକେ ବେଶି । ମତେ ଧରି ପୁନଙ୍ଗ ପର୍ଯ୍ୟନ୍ତ ଗଲେ । ସେଇଠି ଅଳକା ନଦୀ ବାଲିରେ ବସି ମତେ ନାନା ପ୍ରକାର ଉପଦେଶ ଦେଲେ । ମୋର ହଷ୍ଟେଲରେ ରହିବାର ଖରଚ ସେ ଦେବେ । ମୋର ଜଳଖିଆ ବୋଉ ଦେଇଛି କହିଲି, ସେ ତଥାପି ମୋତେ କିଛି ପଇସା ଦେଲେ । ହଷ୍ଟେଲରେ ଦିବେଳା ଖିଆପିଆ ଥାଏ । ସକାଳୁଆ ଇସ୍କୁଲ, ପଢ଼ାପଢ଼ି କଣ ହେଇଛି ମୁଁ ବୁଝିନେଲି । ଅନ୍ୟମାନଙ୍କଠାରୁ ବହି ମାଗି ଆଣି ପଢ଼ିଲି, ଶ୍ରେଣୀରେ ବସିବା ବେଳେ ମୋର ପୂର୍ବ ସହପାଠୀ ଜୟକୃଷ୍ଣ, ବାଇଧର, ଭଗବାନ ଆଦି ମତେ ଏ ଦୁର୍ବୁଦ୍ଧି କାହିଁକି ଘୋଟିଲା ତାର କୈଫିୟିତ ମାଗିଲେ । ମାତ୍ର ମୋର ବୟାନ ଶୁଣି ସେମାନେ ମତେ ଦୋଷୀ ସାବ୍ୟସ୍ତ କଲେ । ଗ୍ରୀଷ୍ମଛୁଟି ପୂର୍ବରୁ ପରୀକ୍ଷା ହେଲା । ପରୀକ୍ଷା ଫିଜ ବୋଧହୁଏ କିଶୋରୀ ବାବୁ ଦେଲେ । ପ୍ରଥମ ୪/୫ ଜଣଙ୍କ ମଧରେ ରହିଲି । ଗ୍ରୀଷ୍ମଛୁଟି ଆରମ୍ଭ ହେଲାରୁ ହଷ୍ଟେଲ ବନ୍ଦ ହେଲା । କିଶୋରୀବାବୁ ମୋତେ ନେଇ ଚାନ୍ଦୁରାରେ ଛାଡ଼ି ଆସିଲେ । ମୋର ଅପ୍ରତ୍ୟାଶିତ ଆଚରଣରେ ମୋ ଆଶ୍ରୟଦାତା ଓ ଧର୍ମପିତା ବିଶେଷ କ୍ଷୁବ୍ଧ ହୋଇ ଥାଆନ୍ତି । ମତେ ସେ ମଣିଷ କରି ଗଢ଼ିବାକୁ ଭାବୁଥିଲେ ।

ତାଙ୍କର ସବୁ ସ୍ନେହ ଶ୍ରଦ୍ଧା, ଅନାଦର କରି ମୁଁ ତାଙ୍କୁ ନ ଜଣାଇ ଘରୁ ପଳାଇଯାଇଛି ଏହା ତାଙ୍କ ମନରେ ବିଶେଷ କଷ୍ଟ ଦେଇଥିଲା । ସେ ବୋଧହୁଏ କିଶୋରୀବାବୁଙ୍କୁ ଏହା କହିଥିଲେ । କିଶୋରୀବାବୁଙ୍କର କହିବା ଅନୁସାରେ ମୁଁ ବାଲ୍ୟଚାପଲ୍ୟ ବଶତଃ ଯେଉଁ ଅକ୍ଷମଣୀୟ ଆଚରଣ ଦେଖାଇ ତାଙ୍କ ମନରେ କଷ୍ଟ ଆଣିଛି ସେଥିପାଇଁ ଘୋର ଅନୁତାପଗ୍ରସ୍ତ ଓ ଲଜ୍ଜିତ ବୋଲି ତାଙ୍କୁ ଗୋଟିଏ କ୍ଷମାପ୍ରାର୍ଥନା ଚିଠି ଲେଖିଲି ।

ବୋଧହୁଏ କିଶୋରୀବାବୁ ଏହି ଚିଠି ନିଜେ ନେଇ ତାଙ୍କୁ ଦେଇ ମୋର ପୂର୍ବପରି ତାଙ୍କ ଘରେ ମର୍ଯ୍ୟାଦ ସହିତ ରହିବାର ବ୍ୟବସ୍ଥା କରି ସାରିଥିଲେ । ମୁଁ ହାଡୁବାବୁଙ୍କୁ ଦେଖି ବହୁତ କାନ୍ଦିଲି ।

ସେ ପଛକଥା କିଛି କହିଲେ ନାହିଁ । ଘରେ ମଧ୍ୟ ମନା କରି ଦେଇ ଥାଆନ୍ତି ଯେପରି କେହି ମୋ ବିଗତ ଦୁଇ କି ଅଢ଼େଇ ମାସ ଅନୁପସ୍ଥିତି ବିଷୟରେ କେବେ କିଛି ପ୍ରଶ୍ନ ପଚାରିବାକୁ । ଘରେ ସମସ୍ତେ ମୋତେ ପୂର୍ବପରି ଘରର ମଣିଷ ଭଳିଆ ଗ୍ରହଣ କଲେ ମଧ୍ୟ ମୋ ମନ ମଧ୍ୟରେ ମୋର ଆଚରଣ ଯୋଗୁଁ ମୁଁ ନିଜକୁ ଦୋଷୀ ମନେ କରୁଥାଏ । ଗ୍ରୀଷ୍ମଛୁଟି ମଧ୍ୟରେ ପଢ଼ାପଢ଼ି ଟିକେ ଭଲ ଭାବରେ ଦେଖିନେଲି । ମୋରନାମ ବୋଧହୁଏ କଟି ଯାଇଥିଲା । ପୁଣି ଥରେନାମଲେଖା ହେଲା, ମାତ୍ର ଏ ବାବଦରେ ଯାବତୀୟ ଖରଚ କିଶୋରୀବାବୁ ବହନ କଲେ । ମୋର ହଷ୍ଟେଲରେ ରହିବା ଖରଚକୁ ମୋତେ ନିଃଶୁଳ୍କ ଅନ୍ତେବାସୀ ବୋଲି ଧରାଯାଇ ଛାଡ଼କରା ଗଲା । ତଥାପି ତତ୍ତ୍ୱାବଧାରକ ପଣ୍ଡିତ ମହାଶୟ ହାଡୁବାବୁଙ୍କ ପାଖରୁ କିଛି ଚାଉଳ ଅସୁଲ କରି ଆଣିଥିଲେ । ଜୀବନରେ ଏକ ଘୋର ଦୁର୍ଦ୍ଦିନ ଏମିତି ଭାବରେ କଟିଗଲା, ମୁଁ ପୁଣି ମୋରପୂର୍ବ ସ୍ଥିତିକୁ ଲେଉଟି ଆସିଲି । ସେଥିପାଇଁ ଶିକ୍ଷକ କିଶୋରୀବାବୁଙ୍କ ପାଖରେ ଆଜୀବନ ଋଣୀ ।



# ପୁନଶ୍ଚ ହରିଓଁ

ଇଂରେଜୀରେ ଅଛି Once beaten twice shy ଗଦାଧର ପଣ୍ଡିତେ କହୁଥିଲେ -

"ଦୁଗ୍ଧେନ ଦଗ୍ଧ ବଦନ ସ୍ତକ୍ରଂ, ଫୁତକୃତ୍ୟ ପାମରଃ ପିବତି ।"

ଅର୍ଥାତ୍ ଯେଉଁ ବୋକା ଥରେ ତତଲା ଦୁଧରେ ମୁହଁ ଲଗାଇ ମୁହଁ ପୋଡ଼ିଥାଏ ସେ ଘୋଳଦହି ପିଇଲେ ମଧ ତାକୁ ଫୁଙ୍କି କରି ପିଏ । ୧୯୩୭ ମସିହାର ବାକି ଅଧକ କେବଳ ନିଜ ପାଠପଢ଼ା ଚିନ୍ତା ସହିତ ଯେକୌଣସି ପ୍ରକାରେ ମାଟ୍ରିକ ପାସ କରିବା ଏକମାତ୍ର ଧ୍ୟାନ ହୋଇ ରହିଲା । ସିଂଘା ସହିତ ଏକାଠି ସ୍କୁଲକୁ ଯାଏ । ପଢ଼ା ସରିଲେ ସିଧା ତା ସହିତ ନହେଲେ ଅନ୍ୟ କେତେ ଜଣ ସେଇ ଜୟପୁର ରାସ୍ତାର ପଥିକ ଛାତ୍ରଙ୍କ ସହିତ ଘର ମୁହାଁ ହୋଇ ଆସେ । ରଥଯାତ୍ରା ପାଇଁ କିଶୋରୀ ବାବୁ, ବାଇଧର ଜୟକୃଷ୍ଣ ଆଉ କେତେଜଣ ସହପାଠୀ ଉପରଶ୍ରେଣୀ ପିଲାଙ୍କୁ ନେଇ ପୁରୀ ଗଲେ । ସେମାନେ ଝାଞ୍ଜପିଟା, ମଠରେ ରହିଲେ । ମଠର ପ୍ରଧାନ ଅଧକ୍ଷ ଓ କିଶୋରୀବାବୁଙ୍କର ଗୁରୁ ସ୍ୱନାମଧନ୍ୟ ବୈଷ୍ଣବ ବାବାଜି ରାମଦାସ ନବଦ୍ୱୀପରୁ ଆସି ସେଠାରେ ଥାଆନ୍ତି । ତାଙ୍କର ଦର୍ଶନ ସହିତ କେତେଜଣ ତାଙ୍କଠାରୁ ମନ୍ତ୍ରଦୀକ୍ଷା ମଧ ନେଲେ । ଫେରି ସେମାନେ ନିଜର ଅଭିଜ୍ଞତା କହିଲେ ।

ଦଶରାଛୁଟି ହେଲା, ଆମ ଗାଁରେ 'ସ୍ୱର୍ଣ୍ଣଲଙ୍କା' ଥିଏଟରରେ ଅଭିନୀତ ହେବାର ଜାଣି ମଧ ମୁଁ ଗଲି ନାହିଁ କାଳେ ଗାଁରେ କିଏ ମୋର ସାମୟକ ପାଠଛଡ଼ା ନେଇ ଟିପ୍ପଣୀ କରି ମତେ ଅକୃତଜ୍ଞ କହି ଗାଳି କରିବ । ଯାହା ହେଉ ପରିବାରର ସମସ୍ତ

ପୁରୁଷ ଲୋକ ପୁନଙ୍ଗରେ ଦେବୀ ମେଢ଼ ଦେଖିଗଲେ । ମୁଁ ମଧ୍ୟ ଗଲି, ଯାତ୍ରାକୁ ପିଲାଏ ଗଲେ ଯାତ୍ରା ଖରଚ ଦିଆଯାଏ । ମତେ ମଧ୍ୟ ଦିଆଗଲା । ମୃଣ୍ମୟୀ ମୂର୍ତ୍ତିପୂଜାର ଆମ ଆଡେ ଏତେ ପ୍ରଚଳନ ହୋଇ ନଥାଏ । କେବଳ ପୁନଙ୍ଗରେ କେରା ବଙ୍ଗାଳି କାୟସ୍ଥ କେତେ ଘର ଥିବାରୁ ସେମାନେ ଏହା ଆରମ୍ଭ କରିଥିଲେ । ସପ୍ତମୀଠାରୁ ଦଶହରାପର ଭସାଣିଦିନ ଯାଏ ବହୁତ ଲୋକ ଦେଖିବାକୁ ଆସନ୍ତି । ରାତିରେ ଯାତ୍ରା, ଅଭିନୟ ମଧ୍ୟ ହୁଏ । ଦିନଯାକ ଦୋକାନ ବଜାର ବସିଥାଏ । କଟକରୁ ଷ୍ଟେସନାରୀ ଜିନିଷ ଧରି ବଜାର ଆସିଥାଏ । ପୁନଙ୍ଗର କାଳାଚାନ୍ଦ ଗୋରାଚାନ୍ଦ ମିତ୍ର ଦୁଇଭାଇ ଏହାର ପ୍ରବର୍ତ୍ତନ କରି ମୁକ୍ତହସ୍ତରେ ଏହି ସମୟରେ ଅର୍ଥବ୍ୟୟ କରୁଥିଲେ । ବାଲିକୁଦା ଆଖ ପାଖ କୌଣସିଠାରେ ମୂର୍ତ୍ତିପୂଜା ହେଉ ନଥାଏ । ଆମର ସଂସ୍କୃତି, ଲେଖନ ବସାରେ ଘଟପୂଜା ଓ ଦେବୀ ପୀଠମାନଙ୍କରେ ଦେବୀଙ୍କ ସମ୍ମୁଖରେ ଚଣ୍ଡୀପାଠ ସହିତ ପଶୁବଳି ବା ବଦଳରେ କୃଷ୍ମାଣ୍ଡ କ୍ଷେପଣ । ଯୁଦ୍ଧଶେଷ ଆଡକୁ ୧୯୪୧ ମସିହା ବେଳକୁ ବୋରିକିନାରେ ହରିଶ ପୁରର ଜମିଦାର କଲିକତାର ଲାହା ପରିବାର କଲିକତାରେ ଜାପାନୀ ବୋମା ମାଡ଼ ଡରରେ ପଳାଇ ଆସି ବୋରିକିନାରେ ସେମାନଙ୍କର କଚେରୀ ପାଖରେ ଘର କରି ରହିଲେ । ସେମାନେ ଦେବୀମୂର୍ତ୍ତି ଗଠନ କରି ମୃଣ୍ମୟୀ ମୂର୍ତ୍ତିପୂଜା ଆରମ୍ଭ କଲେ । ଏହା ୪/୫ ଦିନ ବେଶ ଲୋକ ଗହଳି ସୃଷ୍ଟି କରୁଥିଲା । ବାଣ ବାଜା ବ୍ୟତୀତ ସେମାନେ ସ୍ଥାନୀୟ ଲୋକମାନଙ୍କୁ ନିମନ୍ତ୍ରଣ କରି ସୁଖାଦ୍ୟ ପେୟରେ ମଧ୍ୟ ଚର୍ଚ୍ଚା କରୁଥିଲେ ।

ପୁରୁଣା କାଳିଆ ସବୁ ଜମିଦାରମାନଙ୍କ ଭଳିଆ ହାଡୁବାବୁଙ୍କର ଖୁଆଇବାରେ ଆନନ୍ଦ ଥାଏ । ବରଷରେ ୨ ଥର ସୁନିଆଁ ଓ କାର୍ତ୍ତିକମାସ ପଞ୍ଚକରେ ତାଙ୍କ ବୋଉଙ୍କର ହବିଷ୍ୟ ଉପଲକ୍ଷେ ହବିଷପତରରେ ବସିବା ପାଇଁ ସେ ନିମନ୍ତ୍ରଣ କରନ୍ତି । ସୁନିଆଁ ଭାଦ୍ରମାସ ଶୁକ୍ଳ ଦ୍ୱାଦଶୀ ଦିନ । ଓଡ଼ିଆ ସନ ଓ ପୁରୀ ରାଜାଙ୍କ ଅଙ୍କ ପରିବର୍ତ୍ତନର ଦିନ । ଓଡ଼ିଶାର ରାଜା ଜମିଦାରମାନଙ୍କର ସିରସ୍ତାରେ ଏହି ଦିନ ନୂତନ ସନ ବା ଅଙ୍କର ପ୍ରଚଳନ ହୁଏ । ଜମିଦାରମାନେ ସେ ଦିନ ସିରସ୍ତାପୂଜା କରନ୍ତି । ପ୍ରଜାମାନେ ଜମିଦାରଙ୍କୁ ନିଜ ଶକ୍ତି ଅନୁସାରେ ଭେଟି ଓ ସଲାମି ଦିଅନ୍ତି । ପୂର୍ବକାଳରେ ଏହିଦିନ ଗଜପତି ମହାରାଜାଙ୍କ ନାମାଙ୍କିତ ସ୍ୱର୍ଣ୍ଣମୁଦ୍ରା (ସୁନିଆଁ) କଟାଯାଇ ନୂତନ ମୁଦ୍ରା ପ୍ରଚଳନ

ହେଉଥିବାରୁ ଏହାର ଏପରି ନାମ ବୋଲି କୁହାଯାଏ । ସେମିତି ପୁରୀ ରାଜାଙ୍କ ସିଂହାସନ ଆରୋହଣ ଠାରୁ ଗଣାଯିବା ବର୍ଷର ନାମ ଅଙ୍କ । ସୁନିଆ ଦିନ ନୂଆ ଅଙ୍କ ଚାଲେ ମାତ୍ର ଏହି ଅଙ୍କ ଗଣନାରେ କେତେ ନିୟମ ଥାଏ । ଦଶଛଡା ଡାହାଣରେ ଶୂନ ଥିବା ସଂଖ୍ୟା ବାଦ ପଡେ । ସେମିତି ଛଅ ଛଡା ଦକ୍ଷିଣରେ ଛ ଥିବା ସଂଖ୍ୟା ବାଦ ପଡେ । ରାଜଗାଦି ଆରୋହଣ ପ୍ରଥମ ବର୍ଷକୁ ଦୁଇ ଅଙ୍କ ଧରାଯାଏ । ପ୍ରତ୍ୟେକ ଓଡ଼ିଆ ତାର ଜାତକ ଗଣନା ବେଳେ ସେଥିରେ ସ୍ଥାନ କାଳ ପାତ୍ର ନିର୍ବିଶେଷରେ ଏହି ସନ ଓ ଅଙ୍କ ଲେଖି ଆରମ୍ଭ କରେ । ଏହି ସନ ବା ସାଲ ଗଣା ଜାଣିବାର ସହଜ ନିୟମ ହେଲା । ଖ୍ରୀଷ୍ଟାବ୍ଦର ମୂଳରୁ ୬ ବାଦ ଦେଇ ଶେଷରେ ୭ ଯୁକ୍ତ କଲେ ସାଲ ମିଳିଥାଏ । ଉଦାହରଣ ସ୍ୱରୂପ ୨୦୧୦ ଖ୍ରୀଷ୍ଟାବ୍ଦ ୨୦ରୁ ଛ ବାଦ ଦେଇ ଦଶରେ ସାତ ମିଶାଇଲେ ସାଲ ୧୪୧୭ ହେଲା । ଶ୍ରୀମନ୍ଦିରରେ ଏହି ସାଲ ଓ ଅଙ୍କ ବ୍ୟବହୃତ । ତେଣୁ ସବୁ ରାଜା ମହାରାଜା ଯିବା ପରେ ମଧ୍ୟ ଇଂଲଣ୍ଡର ରାଜାଙ୍କ ପରି ପୁରୀ ଗଜପତି ମହାରାଜା ଆମର ପୂଜାର୍ହ । ଜମିଦାରମାନଙ୍କୁ ସୁନିଆଁ ଦିନ ପ୍ରଜାମାନେ ଶକ୍ତି ମୁତାବକ ଘିଅ, ଅରୁଆ ଚାଉଳ, ଭଙ୍ଗାମୁଗ, ବନ୍ତଳ କଦଳି, ଦେଶିଆଳୁ, ବୋଇତ କଖାରୁ ଆଦି ପରିବା ସହିତ ନିଜ ବୃତ୍ତିଗତ ଦକ୍ଷତାର ନିଦର୍ଶନ ସ୍ୱରୂପ କାଠ ବା ଲୁହାର ବା ପଥର ଖଡିର କାରିଗରିକାମ ଆଣି ଭେଟନ୍ତି । ସେମାନେ ଆସିଲେ ମୁଢ଼ି ଉଖୁଡା, ଖଇ, ମୁଆଁ, ଆରିସାପିଠା, ଛଣାମଣ୍ଡା ଦେଇ ଆପ୍ୟାୟିତ କରାଯାଏ । ରାତିରେ ସେମାନେ ଭାତ ଡାଲି ତରକାରୀ ଖିରି ଖଟା ବା ନଡିଆରାଇ ଖାଇ ବିଦା ହୁଅନ୍ତି । ଏହା ଫଳରେ ସେମାନଙ୍କର ସମ୍ମାନ ଜମିଦାରମାନଙ୍କ ପାଖରେ ବଢ଼ିବା ବ୍ୟତୀତ ଜମିଦାରୀମାନଙ୍କର ମର୍ଯ୍ୟାଦା ଓ ଲୋକପ୍ରିୟତା ବଢ଼ିଥାଏ । ଆଇନ ଅନୁସାରେ ଏହା ଉଠାଇ ଦିଆଯାଇଥିଲେ ମଧ୍ୟ ଜମିଦାରି ଉଚ୍ଛେଦ ପର୍ଯ୍ୟନ୍ତ ଲୋକପ୍ରିୟ ଜମିଦାରିମାନେ ଏହା ପାଳନ କରୁଥିଲେ । ଚାନ୍ଦୁରାରେ ସେ ଦିନ ଶହେ ଦେଢ଼ଶ ଲୋକଙ୍କୁ ଭୁରି ଭୋଜନ ଦିଆଯାଏ । କାର୍ତ୍ତିକମାସ ପଞ୍ଚକରେ ଏକାଦଶୀ ଦିନକୁ ବାଦ ଦେଇ ଆଖପାଖ ଗାଁର ନିଜ ପ୍ରଜାପାଟକେ ଓ ସ୍ନେହୀ ଶୁଭେଚ୍ଛୁମାନଙ୍କୁ ନିମନ୍ତ୍ରଣ କରାଯାଏ । ଅରୁଆଚାଉଳ ଅନ୍ନରେ ଘିଅ, ମୁଗ, କଦଳି ଦେଶିଆଳୁ, ଓଉ ତରକାରୀ ଅଦା ନବାତ ଆଦି କଦଳି ପତ୍ରରେ ପରଶାଯାଏ । ପ୍ରତିଦିନ ପ୍ରାୟ ଶହେ ଖଣ୍ଡେ ଲୋକ ପ୍ରସାଦ

ପାଆନ୍ତି ଓ ସେମାନେ ଶ୍ରଦ୍ଧାର ପ୍ରତୀକ କିଛି ଉପଢ଼ୌକନ ସାଥିରେ ଆଣିଥାଆନ୍ତି । ବୋଲିବା ବାହୁଲ୍ୟ ପରିବାରର ଜଣେ ସଦସ୍ୟ ଭାବରେ ମୁଁ ମଧ୍ୟ ଅତିଥି ଚର୍ଚ୍ଚାରେ ଭାଗ ନେଇଥାଏ । ଏହାବାଦେ ଚାନ୍ଦୁରାରେ, ଭାଗବତ ଜନ୍ମ ଭାଦ୍ରବ ପୂର୍ଣ୍ଣିମା ଦିନ ପାଳନ କରାଯାଏ । ଚାରିଘର ଏଥିରେ ସମସ୍ତେ ଭାଗ ନିଅନ୍ତି । କୁହାଯାଏ ଏହି ଦିନ ଶାପଗ୍ରସ୍ତ ପରୀକ୍ଷିତ ଶୁକଦେବଙ୍କଠାରୁ ଭାଗବତ ଶୁଣିବା ଆରମ୍ଭ କରିଥିଲେ । ଯେଉଁମାନେ ଭାଗବତ ଟୁଙ୍ଗିରେ ବରଷ ତମାମ ଭାଗବତ ପଢ଼ନ୍ତି ସେମାନେ ଏହି ଦିନ ପାଠ ଆରମ୍ଭ କରନ୍ତି । ଚାନ୍ଦୁରାରେ ଭାଗବତ ଗାଦି ଥାଏ । ଜଣେ ପୂଜକ ପ୍ରତିଦିନ ତାର ପୂଜାପାଠ ଦେଖନ୍ତି । ଏହି ଇନ୍ଦୁପୂର୍ଣ୍ଣମୀ ବା ଇନ୍ଦ୍ରୋତ୍ସବ ଦିନ ଏଠାରେ ପ୍ରସାଦ କରାଯାଏ । ବତୁରା ଚୂଡ଼ା, ଚୂଡ଼ା ଘଷା, ହୁଡୁମ, ଖଇ ଉଖୁଡ଼ା ସହିତ ଅମୃତକୁଣ୍ଡ ଓ ନଡ଼ିଆରାଇ ପରଶା ଯାଏ । ସେ ଦିନର ବିଶେଷତ୍ୱ ଗହମ ଖିରି । ଗହମର ବ୍ୟବହାର ଏତେ ବ୍ୟାପକ ହୋଇନଥାଏ । ଚାଷ ଖୁବ୍ ଅଳ୍ପ ହେଉଥାଏ । ଦୋକାନରେ କାଁ ଭାଁ ମିଳେ ଗହମ । ରଗଡା ଯାଇ ଭଜାଯାଏ ଓ ଦୁଧ କ୍ଷିରିରେ ଏହା ଗୁଡ ଚିନି ବା ନବାତ ସାଙ୍ଗରେ ମିଶାଯାଇ ନରମ ହୋଇଥାଏ । ଏହା ପରଶା ଯାଏ ଶେଷରେ । ଗାଁର ସବୁଲୋକ ନିମନ୍ତ୍ରଣପାଇ ଏଥିରେ ପ୍ରସାଦ ପାଆନ୍ତି । ହାଡୁବାବୁଙ୍କ ପିଲାଦିନେ ଶରୀର ଅସୁସ୍ଥ ହେତୁ ତାଙ୍କ ମାଆ ତାଙ୍କୁ କାଇପଦରର ପୀର ବୋଖାରି ସାହେବଙ୍କ ପାଖରେ ବିକ୍ରି କରିଥିଲେ । ପରେ ସେ ସୁସ୍ଥ ହୋଇଥିଲେ । ଜଗତସିଂହପୁରରେ ଇଟିସ୍କୁଲ ନିକଟରେ ବୋଡନ ସାହେବ ବୋଲି ଜଣେ ମୁସଲମାନ ସନ୍ଥଙ୍କର ସମାଧି ଥାଏ । ସେ ବୋଧହୁଏ ବୋଖାରୀ ବାବାଙ୍କ ଶିଷ୍ୟ ଥିଲେ । ପ୍ରତି ଗୁରୁବାର ତାଙ୍କ ସମାଧିରେ ଭକ୍ତ ସମାବେଶ ହୁଏ - ସବୁ ସଂପ୍ରଦାର । ସେମାନେ ଭଜନ କୀର୍ତ୍ତନ କରନ୍ତି । ତାଙ୍କ ବିଭୂତି ମଧ ଦେହରେ ଲଗାନ୍ତି, ଦୈନିକ ପାଆନ୍ତି । ଧୂନି ଜଳୁଥାଏ । ଶିରଣି ଭୋଗ ହୁଏ । ପ୍ରସାଦ ସମସ୍ତେ ପାଆନ୍ତି । ଚାନ୍ଦୁରାରେ ହାଡୁବାବୁଙ୍କ ଘରୁ ଓ ଅନ୍ୟ କେତେକ ମଧ ପ୍ରତି ଗୁରୁବାର ଶିରଣି ପାଇଁ ଭୋଗ ନ ହେଲେ ନଗଦ ଅର୍ଥ ପଠାଇଥାଆନ୍ତି । ମୁଁ ବେଳେ ବେଳେ ସେଥିରେ ଭାଗ ନିଏ । ପୀରଙ୍କୁ ପ୍ରାର୍ଥନା କରେ ।

ହାଡୁବାବୁ ମୋର ଧର୍ମ ପିତାଙ୍କର ମୋ ପ୍ରତି ସ୍ନେହ ଶ୍ରଦ୍ଧାରଦୁଇଟି ଉଦାହରଣ ଦେଉଛି । ନୂଆ ସାଇକେଲ ଶିଖିଥାଏ । ଫିରିଙ୍ଗିକୁଦରେ ପାଠପଢ଼ା ଆରମ୍ଭ ହେଲାଣି । ବୈରାଗୀ ଚରଣ ସ୍ୱାଇଁ ବାଲିକୁଦାରୁ ମାଇନର ପାସ କରି ସେଠି ମୋର ଉପର ଶ୍ରେଣୀରେ ପଢୁଥାଏ । ତା ବାପା କଲିକତାରୁ ଗୋଟାଏ ଜାପାନି ସାଇକେଲ ଟ ୧୫ ପନ୍ଦର ଟଙ୍କାରେ କିଣି ଦେଇ ଥାଆନ୍ତି । ସେଇଟା, ସେ ଖେଳଛୁଟିରେ ଚଢ଼ିବାକୁ ବାହାର କଲେ । ସେ ଛାତ୍ରାବାସରେ ଥାଏ । ମାଗି ନେଇ ଅନ୍ୟମାନେ ଚଢ଼ନ୍ତି । ମୁଁ ମାଗିନେଲି । ଚଲାଉ ଚଲାଉ ପଡିଗଲି । ଗୋଟାଏ ଖୁଣ୍ଟରେ ସାଇକେଲ ବାଜି ଫ୍ରେମ ବଙ୍କା ହେଲା । ସେ ଅଡି ବସିଲା, ମୁଁ ତାକୁ ସାଇକେଲ ଦାମ ପନ୍ଦର ଟଙ୍କା ଦେବି । ସେ ଦଦରା ସାଇକେଲ ନେବି । ସମସ୍ତେ ତାକୁ ସମର୍ଥନ କଲେ । ମୋର ଦୋଶରୁ ସାଇକେଲ ଭାଙ୍ଗିଛି । ଚାନ୍ଦୁରା ଲେଉଟିଲି । ମନ ଦୁଃଖରେ ଖାଇଲି ନାହିଁ । ଶୋଇ ସପନ ଦେଖିଲି ମୋର ତ ପନ୍ଦର ପଇସା ଦେବା ଶକ୍ତି ନାହିଁ । ବୈରାଗୀ ମୋ ତଣ୍ଟି ଚିପି ଧରୁଛି ମୁଁ ଗଁଗଁ ଶବ୍ଦ କଲି । ସମୟ ରାତି ହୋଇ ନଥାଏ । ହାଡୁବାବୁ ମୋର ସାଇକେଲ ଭାଙ୍ଗିବା ଜାଣିଥାନ୍ତି । ମତେ ବୁଝାଇଲେ କଣ ହେଲା ତା ସାଇକେଲ ଜାପାନୀ ତିଆରି । ଅଛମାତ ମଧ ସହି ପାରିବ ନାହିଁ । ଆମେ ମରାମତି କରି ଫେରେଇ ଦେବା । ତମେ ଚିନ୍ତା କରନାହିଁ । ମୁଁ ଅଛି । ସେଇଆ ହେଲା । ଆରଦିନ ସ୍କୁଲରୁ ସାଇକେଲ ନିଆଗଲା । ବିପିନ ସିଂହ ନା ଭାଲୁ । କେହି ଜଣେ ସାଇକେଲ ଦୋକାନି ପାଖକୁ । ସେମାନେ ମରାମତି କରିଦେଲେ । ଟିକେ ଖାଲି ଚେପା ଦାଗ ଥାଏ । ତାକୁ ଫେରାଇ ଦିଆଗଲା ମାଲିକକୁ । ସାଙ୍ଗମାନେ ସମସ୍ତେ ସମାଧାନ ଗ୍ରହଣ କଲେ ।

ଆଉ ଥରକର କଥା ମୋର ଏକାଦଶ ଶ୍ରେଣୀ । ଶୀତଦିନ । ଉତ୍ତରା ପବନ ଜୋରରେ ବହୁଛି । କାହା ସାଇକେଲ ମାଗି ମୁଁ ଚାନ୍ଦୁରାରୁ ହାଇସ୍କୁଲକୁ ଆସେ । ଟେଷ୍ଟ ପେପରର କେଉଁ ଅସମାଧିତ ପ୍ରଶ୍ନର ଉତ୍ତର ଜାଣିବାକୁ । ସୁଦର୍ଶନ ପଟ୍ଟନାୟକ ମୋର ଦୁଇ ଶ୍ରେଣୀ ତଳେ ପଢ଼େ । ବାଲେଶ୍ୱର ଆଡେ ଘର । ଚାନ୍ଦୁରାରେ ବୀରବାବୁଙ୍କ ଘରେ ତାଙ୍କ ପିଲାଙ୍କୁ ଟ୍ୟୁସନ କରି ତାଙ୍କ ଘରେ ଥାଏ । ତାର ଗୋଟିଏ ପଶମ ଚାଦର (ରାପର) ଥାଏ । ତାକୁ ମାଗି ନେଲି । ସାଇକେଲ ଭାଙ୍ଗିବା ଦିନୁ ସାଇକେଲ

ସୁରକ୍ଷାରେ ବେଶି ଧ୍ୟାନ । କାମସାରି ଫେରୁଛି ଉତ୍ତର ମୁହାଁ ଜୋର ପବନ ଖିଆଲ ନାହିଁ । ଚାଦର କାନ୍ଧରୁ ଖସି ଚେନ ସାଙ୍ଗରେ କ୍ରାଙ୍କ୍‌ରେ ଅଟକିଛି । କଷ୍ଟେ ମଷ୍ଟେ ବାହାର କଲି । ନିଜର କାନ୍ଦିଲି, ସୁଦର୍ଶନଙ୍କୁ ବୁଝାଇଲି । ଚାଦର ଦରଜି ପାଖରେ ମରାମତି କରିବା ମୋର ଦାୟିତ୍ୱ ମାତ୍ର ଏହା ଫଳରେ ଚାଦରର ଗୋଟିଏ ଅଂଶ ୪/୬ ବର୍ଗ ଇଞ୍ଚ କଟାଯିବ ସାଦା କନା ପଡିବ । ସେ ଚାଦର ମୁଁ ନେଇ ଦାମ ଦେବାକୁ ଅଡି ବସିଲେ । ମୋର ସେଇ ଅନୂତାପ ଓ କାନ୍ଦ । ପୂଜ୍ୟପିତା ଚାଦର ନେଇ ତାଙ୍କ ବରାଦିରେ ଦରଜି ପାଖେ ମରାମତି କରି ଆଣି ତାକୁ ଫେରାଇଲେ । ସେ ବୁଝିଗଲା । ସୁଦର୍ଶନ ମାଟ୍ରିକ ପାସ୍ କରି ଜଗତସିଂହପୁରରେ ବ୍ୟବସାୟ କଲେ । ପାଖ ଗାଁ ରସୁଲପୁରରେ ବାହା ହେଲେ । ଏବେ ସେ ସେଠାରେଏକ ନମ୍ବର ବ୍ୟବସାୟୀ । ନାନା ପ୍ରକାର କାରବାର ଅଛି । ଘରଦ୍ୱାର କରି ସ୍ଥାୟୀ ବାସିନ୍ଦା । ମୋର ଧାରଣା ହେଲା ସବୁ ସାବଧାନତା ସତ୍ତ୍ୱେ ମଣିଷ ବେଳେବେଳେ ଦୁର୍ଭାଗ୍ୟକୁ ଏଡାଇ ପାରେ ନାହିଁ ।

ପ୍ରଦେଶରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ାହେଲା । ଜଗତସିଂହପୁରର ବ୍ୟବସ୍ଥାପକ ନିତ୍ୟାନନ୍ଦ କାନୁନଗୋ ତିନିଜଣିଆ ବିଶ୍ୱନାଥ ଦାସ ମନ୍ତ୍ରୀମଣ୍ଡଳରେ ରାଜସ୍ୱ ଓ ପୂର୍ତ୍ତବିଭାଗର ମନ୍ତ୍ରୀ ହେଲେ । ମହାନଦୀରେ ଅତ୍ୟଧିକ ପାଣି ହେତୁ କାଠଯୋଡି (ତଳ ଆଡକୁ ନାଁ ଦେବୀ) ନଦୀରେ ବହୁତ ପାଣି ଆସିଲା । ଦଳେଇ ଘାଇ ବନ୍ଧ ଟଳମଟଳ ହେଲା, ଏହି ବନ୍ଧ ଭାଙ୍ଗିଥିଲେ କଟକ ଜିଲ୍ଲାର ବିସ୍ତୀର୍ଣ୍ଣ ଜନାକୀର୍ଣ୍ଣ ଅଞ୍ଚଳର ଭୟାବହ କ୍ଷତି ହୋଇଥାନ୍ତା । ଏହି ଆଶଙ୍କାରେ ପୂର୍ତ୍ତ ବିଭାଗର ବଡ ବଡ ଇଂଜିନିୟରମାନେ ବନ୍ଧରକ୍ଷା ପାଇଁ ସବୁ ପ୍ରକାର ଉଦ୍ୟମ କରିବାକୁ ଆସିଥାଆନ୍ତି । ଆମେ ଛାତ୍ରମାନେ ଏହା ଦେଖିବାକୁ ଜଣେ ଶିକ୍ଷକଙ୍କର ଅଧକ୍ଷତାରେ ଗଲୁ । ସାହେବ ଇଂଜିନିୟର 'ସ'ଓ ଗ୍ରୀନ କର୍ଯ୍ୟନିବ୍ରାହୀ ଓ ସୁପିରଟେଣ୍ଡିଂ ଇଂଜିନିୟର । ଭାଇପନ ଏକା ବୋଧହୁଏ ସାହେବ ନ ଥିଲେ । ସେ ଚିଫ ଇଂଜିନିୟର କି କଣ । ସେମାନେ ଘଳିଆ ବନ୍ଦ କରିବାକୁ ତଳିଆ କର୍ମଚାରୀଙ୍କୁ ଦାୟିତ୍ୱ ନ ଦେଇ ନିଜେ ଉଦ୍ୟମ କଲେ । ଆମେ ଲୋକ ଗହଳି ଭିତରେ ଦେଖିଲୁ 'ସ' ସାହେବଙ୍କ ପିଠିରେ ବାଲିବସ୍ତା ଲଦା ହେଲା । ସେ ପାଣି ଭିତରେ ବୁଡିଲେ । ତାଙ୍କୁ ବୋଧହୁଏ ଅକ୍‌ସିଜେନ

ଯୋଗାଇଦେବାକୁ ଗୋଟିଏ ଫମ୍ପି ଭଳିଆ ଯନ୍ତ୍ର ଥାଏ ଯାହା ତାଙ୍କ ମେମ ସାହେବ ନିଜେ ଧରି ଚଳଉଥାଆନ୍ତି । ଚାରିଆଡେ ହରିବୋଲ ହୁଳହୁଳି ଧ୍ୱନି ମଧ୍ୟରେ ବୁଡାଳି ଘଳିଆରେ ବାଲିବସ୍ତା ରଖି ଉପରକୁ ଉଠିଲେ । ତୁରନ୍ତ କାର୍ଯ୍ୟାନୁଷ୍ଠାନ ଫଳରେ ଘାଇ ହେଲା ନାହିଁ । ମାତ୍ର ଲୋକମାନେ ଜାଣିଲେ ସାହେବମାନଙ୍କର ଦାୟିତ୍ୱଜ୍ଞାନ । ଅନ୍ୟ ଉପରେ ଦାୟିତ୍ୱ ଲଦି ଦେଇ ନିଜେ ଆରାମରେ ବସି 'ସୁପରଭାଇଜ' ତଦବିର କରିବାଦ୍ୱାରା କାମ ହୁଏ ନାହିଁ । ଆଜିକାଲି ସେ ପ୍ରକାର ନିଜେ ଦାୟିତ୍ୱ ନେଇ କାର୍ଯ୍ୟନିର୍ବାହ କରିବା ବିରଳ ହେଲାଣି । ଆମ ଶିକ୍ଷକ ଆମକୁ ସାହେବମାନଙ୍କର ଚରିତ୍ରର ଏଇ ବିଶେଷ ଗୁଣ ଶୁଣାଇ ଆସିଲେ । ଆମେ ସେଠାକୁ ସାଇକେଲରେ ଜଣେ ଦିଜଣ ଲେଖା ବନ୍ଧ ଦେଖିବାକୁ ଯାଇଥିଲୁ ପ୍ରାୟ ୧୦ ମାଇଲ ବାଟ କଟକ ରାସ୍ତାରେ ।

ଦଳେଇ ଘାଇ ରକ୍ଷା ପାଇଗଲା, ମାତ୍ର କଟକ ଜିଲ୍ଲାରେ ଅନ୍ୟତ୍ର ବନ୍ୟାରେ ବହୁ କ୍ଷୟକ୍ଷତି ହେଲା । କଂଗ୍ରେସ ମନ୍ତ୍ରୀମଣ୍ଡଳ ଏଇଥିପାଇଁ ସାର ବିଶ୍ୱେଶ୍ୱରିୟାଙ୍କ ଭଳି ବିଖ୍ୟାତ ଇଂଜିନିଅରଙ୍କ ଶରଣାପନ୍ନ ହେଲେ । ସେ ମହୀଶୂରରୁ ଆସି କି ପ୍ରକାର ଓଡ଼ିଶାକୁ ମହାନଦୀ ବନ୍ୟାର ପ୍ରକୋପରୁ ରକ୍ଷା କରାଯାଇପାରିବ ତାହା ପରାମର୍ଶ ଦେଲେ । ପରବର୍ତ୍ତୀ କାଳରେ ହୀରାକୁଦ ବନ୍ଧ ନିର୍ମାଣ ଏହାର ଫଳ । ବନ୍ୟା ବିପନ୍ନ ଲୋକଙ୍କର ସାହାଯ୍ୟ ନିମିତ୍ତ ଆମେ ଛାତ୍ରମାନେ ଆଖପାଖ ଗାଁ ମାନଙ୍କୁ ଯାଇ ସେଠାରୁ ଅର୍ଥ, ଚୂଡ଼ା, ଚାଉଳ, ପୁରୁଣା ଲୁଗାପଟା ଆଦି ସଂଗ୍ରହକରି ତାହା କଟକର ଓଡ଼ିଶା ରିଲିଫ କମିଟି ପାଖକୁ ପଠାଇଲୁ । ସହପାଠୀ ବାଇଧରର ସେଇ ବରଷ ବାହାଘର ହୋଇଥାଏ । ତା ବାପା ବାମନ ଡିହାଡି ବଳରାମପୁରର ଜଣେ ବଡ ଚାଷୀ । ତାଙ୍କର ଚାଷଜମି ଗୁଆ, ନଡିଆ ବଗିଚା, ମାଛ ପୋଖରୀ ଅନେକ ଗୁଡିଏ ଥାଏ । ଧାନ ବ୍ୟତୀତ ରବି ଫସଲ ମଧ୍ୟ ତାଙ୍କ ଦୋଫସଲି ଜମିରୁ ଭଲ ଆଦାୟ ହେଉଥାଏ । ତାର ବାହାଘର ତିର୍ତ୍ତୋଲ ଥାନା କୋଠିନିର୍ମଳର ବିଖ୍ୟାତ ମହାଜନ ଓ ଚାଷୀ ନନ୍ଦ ଘରେ ହୋଇଥାଏ । ବାଲ୍ୟ ବିବାହ । ପୂର୍ବରୁ ବଡ ଭଉଣୀ କାଦୁଅପଡାର ବିଦ୍ୟାଧର ମିଶ୍ରଙ୍କୁ ବିବାହ କରିଥିଲେ । ସେ ପରେ ଉତ୍କଳ ବିଶ୍ୱବିଦ୍ୟାଳୟର ଗ୍ରାମ୍ୟ ଅର୍ଥନୀତିରେ ବିଖ୍ୟାତ ଅଧ୍ୟାପକ ଓ କୁଳପତି ହେଲେ । ବାଇଧର ଆମକୁ ବାହାଭୋଜି ନିମନ୍ତ୍ରଣ

କରିଥିଲେ । ଆମେ ସହପାଠୀ କେହି ଯାଇ ନଥିଲୁ । ଏହି ଅବସରରେ ତାଙ୍କ ଘରେ ପହଞ୍ଚି ବାକିଥିବା ଭୋଜି ଖାଇଲୁ । ତାଙ୍କ ଘରୁ ସବୁଠାରୁ ବେଶି ଚାନ୍ଦା ଟଙ୍କା ଓ ଚାଉଳ ଆକାରରେ ସଂଗ୍ରହକରି ଆମ୍ଭେମାନେ ଫେରିଲୁ ।

ପ୍ରଧାନ ଶିକ୍ଷକ ହରିହର ମହାପାତ୍ର ବାରିପଦାରେ ଚାକିରି ପାଇଁ ଚାଲିଗଲେ । ଅସ୍ଥାୟୀ ପ୍ରଧାନଶିକ୍ଷକ ସଦ୍ୟ ବି.ଏ. ପାସ ଲୋକନାଥ ଦାସ ରାଞ୍ଚି କଂପଟ୍ରୋଲର ପରେ ଓଡ଼ିଶାର ଆକାଉଣ୍ଟାଣ୍ଟ ଜେନେରାଲ ଅଫିସର ଚାକିରି ପାଇ ଚାଲିଗଲେ । ଓଡ଼ିଶାକୁ ନ ଆସି ଅଫିସ ରାଞ୍ଚିରେ ସେତେବେଳେ ଥାଏ । ତାଙ୍କ ସହପାଠୀ ନୀଳାମ୍ବର କର ଆସି ଦାୟିତ୍ୱ ଗ୍ରହଣ କଲେ । ସେ ଉତ୍ତମ ଛାତ୍ର ଥିଲେ । ଇତିହାସରେ ଅନର୍ସ ପାଇ ବିଏ ପାସ୍ କରିଥାଆନ୍ତି । ମାଟ୍ରିକରେ ଖୋର୍ଦ୍ଧା ସ୍କୁଲରୁ ବୃତ୍ତି ପାଇଥିଲେ । ଶିକ୍ଷାଦାନ ଅଭିଜ୍ଞତା ନଥିଲେ ମଧ୍ୟ ଇଂରେଜୀ ଓ ଇତିହାସ ପଢ଼ାଇବାରେ ସେ ଦକ୍ଷତା ହାସଲ କଲେ । ଆମ୍ଭେମାନେ ଖୁସି ହେଲୁ ।

୧୯୩୮ରେ ଦଶମଶ୍ରେଣୀ ଖୋଲିଲା । ଜିଲାବୋର୍ଡ ଘରେ ହାଇସ୍କୁଲର ହେଉଥିବା ଦୁଇଟି ଶ୍ରେଣୀ ବଡବଜାର ଫିରିଙ୍ଗକୁଦ ଉପରେ ତିଆରି ଦି ଧାଡି ଘରକୁ ଉଠେଇ ନିଆଗଲା । ସେଠାରେ ପ୍ରତି ଧାଡିରେ ୪ଗୋଟି କୋଠରୀ ଥାଏ । ତିନୋଟିରେ ଶ୍ରେଣୀ ଗୃହ ଅନ୍ୟ ଗୋଟିକରେ ପ୍ରଧାନ ଶିକ୍ଷକଙ୍କର ଅଫିସ ଓ ପାଟିସନ ୱାଲ (ଅସ୍ଥାୟୀ କାଠପଟା) ଦ୍ୱାରା ଅଫିସ । ଜଣେ କିରାଣି ଓ ଶିକ୍ଷକମାନେ ସେଠାରେ ବସନ୍ତି । ଅନ୍ୟ କୋଠରୀଗୁଡ଼ିକ ଛାତ୍ରାବାସ ଓ ଶିକ୍ଷକମାନଙ୍କର ରହଣିସ୍ଥାନ ଭାବରେ ବ୍ୟବହୃତ ହେଉଥାଏ । ମୋର ବାଟଚଲା ସାଙ୍ଗ ସିଙ୍ଗାର (ଦିବ୍ୟସିଂହ) ମୃତ୍ୟୁ ଫଳରେ ମୁଁ ଏକା ଚାଲି କରି ଯାଏ ଓ ଫେରେ । ପୁଣି ନୂଆ କୋଠାକୁ ବିଦ୍ୟାଳୟ ସ୍ଥାନାନ୍ତରିତ ଫଳରେ ଦୂରତା ଆଉ ଏକ କିଲୋମିଟର ମଧ୍ୟ ବଢ଼ିଯାଇଥାଏ । ମୋଟରେ ଯିବାକୁ ପାଞ୍ଚ/ଛଅ କିଲୋମିଟର ଚାଲିବାକୁ ପଡୁଥାଏ । ବାଇଧର ଶଶୁରଘରୁ ଗୋଟାଏ ନୂଆ ଗ୍ରିନ ମଡେଲ ରାଲେ ସାଇକେଲ ଯୌତୁକ ଭାବେ ପାଇଥାଏ । ସାଇକେଲ ଚଳାଇବାରେ ଆମଠାରୁ ତାର ଦକ୍ଷତା ଭଲ ଥାଏ । ସେ ହାତଛାଡି ଗାଡି ଚଳାଏ । ଆମେ ଆଉ କେହି ସେ କରାମତି ଦେଖାଇ ପାରୁନାହିଁ । ଜୟକୃଷ୍ଣ ତ ମୋଟେ ସାଇକେଲ ଶିଖିଲା ନାହିଁ । ଜୀବନଯାକ ସେମିତି ରହିଗଲା । ଯଦିଓ ଗାଡି ମାଲିକ

ହେବା ପରେ ଫିଆଟ ଗାଡ଼ି ଚଳେଇବା ଟିକେ ଶିଖିଯାଇଥିଲା । ଆଲ୍ଲାହାବାଦରୁ ୧ମ ଶ୍ରେଣୀରେ ଏମ୍.ଏ ପାସ କରି ଅର୍ଥନୀତି ଅଧ୍ୟାପକ ହେଲା । ମଝିରେ ଜାତିସଂଘ ଆନୁକୂଲ୍ୟରେ ଅର୍ଥନୈତିକ ପରାମର୍ଶଦାତା ଭାବେ ଜାମ୍ବିଆ ଆଫ୍ରିକାକୁ ଯାଇ ରାଜଧାନୀ ଲୁଶାକାରେ ୩ ବରଷ ରହି ଆସିଲା । ଦିନେ ଦିନେ ବାଇଧର ମତେ ତାର ପଛ ସିଟ୍‌ରେ ବସାଇ ଅଧାରୁବେଶିବାଟ ଆଣି ଚରଚିକାଇ ଛକ ପାଖରେ ଛାଡ଼େ । ବେଳେ ବେଳେ ଆମ୍ଭେମାନେ ଗପକରି ଗୋଟାଏ ଦଳହୋଇ ଆସିଲେ ସେ ସାଇକେଲ ଧରି ଆମ୍ଭମାନଙ୍କ ସାଙ୍ଗରେ ଚାଲେ ।

ନୀଳାମ୍ବର ବାବୁ ବିଦ୍ୟାଳୟରେ ଡିବେଟର ପ୍ରବର୍ତ୍ତନ କଲେ । ମୁଁ କହିବାକୁ ଉଦ୍ୟମ କଲି ମାତ୍ର ପାଟି ଖନି ମାରିଗଲା । ତାଙ୍କର ପ୍ରୋତ୍ସାହନ ସତ୍ତ୍ୱେ ଆଉ ଉଦ୍ୟମ କଲିନାହିଁ । ସେମିତି ଲାଜକୁରା ରହିଗଲି । କଂଗ୍ରେସ ମନ୍ତ୍ରୀମଣ୍ଡଳ ବିରୁଦ୍ଧରେ ମେଡ଼ିକାଲ ସ୍କୁଲରେ (କଲେଜ ହୋଇ ନଥାଏ) ଛାତ୍ର ଆନ୍ଦୋଳନ ହେଲା । ଛାତ୍ରମାନେ ଧର୍ମଘଟ କଲେ । ପିକେଟିଂକଲେ । ଅନ୍ୟ ବିଦ୍ୟାଳୟରୁ ଛାତ୍ରମାନେ ଆସି ତାଙ୍କୁ ନୈତିକ ସମର୍ଥନ ଜଣାଇଲେ । ସେକ୍ରେଟେରିଏଟ ଆଗରେ ପିକେଟିଂ କଲେ । ପୋଲିଶ ସେମାନଙ୍କୁ ଧରି ଅନୁତାପ କଲେ ଥାନାରେ କିଛି ସମୟ ଅଟକ ରଖି ଛାଡ଼ିଦିଏ । କେତେଜଣଙ୍କୁ ଜେଲ ପଠାଇ ଦିଆଯାଉଥାଏ । ଆମ ସ୍କୁଲରେ ଛାତ୍ର ଫେଡେରେସନର ଗୋଟିଏ ଶାଖା ନୂଆ ଖୋଲିଥାଏ । ତାର ପ୍ରଭାବରେ କେତେଜଣ ଛାତ୍ର କଟକ ଆସିଲେ ପିକେଟିଂ କରିବାକୁ। ଜୟକୃଷ୍ଣ ତା ଭିତରେ ଜଣେ ଥିଲା । ତାର ପିଉସା ଶ୍ରୀପତି ନନ୍ଦ ପରେ ଆଇ.ପି.ଏସ୍. ସେତେବେଳେ କଟକର ପୁଲିସ ଇନ୍ସିପେକ୍ଟର ତାଙ୍କୁ ଟେକି ଦେଇ ଥାନାକୁ ଓ ପରେ ଘରକୁ ପଠାଇଦେଲେ । ଏସବୁ ଦେଖି ସେ ଡରି ଯାଇଥିଲା ।

ସେଇ ବର୍ଷ ଡେଲାଙ୍ଗରେ ସର୍ବସେବା ସଂଘର ବାର୍ଷିକ ସମ୍ମିଳନୀ ହେଲା । ମହାତ୍ମାଗାନ୍ଧି ଓ ଅନ୍ୟାନ୍ୟ ତୁଙ୍ଗନେତାମାନେ ଆସିଥାଆନ୍ତି । ସମ୍ମିଳନୀର ପ୍ରଧାନ ଉଦ୍‌ଯୋକ୍ତ ରମାଦେବୀ ଓ ଗୋପବନ୍ଧୁ ଚଉଧୁରୀ ଜଗତସିଂହପୁର ଖେରସର । ଆଚାର୍ଯ୍ୟ ହରିହର ସମାଜସେବୀ ଭାବରେ ଛାତ୍ର ସମାଜରେ ସୁବିଦିତ । ତାଙ୍କୁ ସବୁ ଦେଖିବାକୁ ଅନେକଙ୍କର ଇଛା ଥାଏ । ଦଳେ ଛାତ୍ର ଗଲେ । ମୋର ଯିବାରେ ପ୍ରଧାନ

ପ୍ରତିବନ୍ଧକ ଅର୍ଥ ଥିଲେ ମଧ ତାହା ସବୁ ସହପାଠୀଙ୍କ ସାଙ୍ଗରେ ମିଶି ଦୂର କରାଯାଇ ପାରିଥାଆନ୍ତା । ମାତ୍ର ମୋର ଡର ଭାଙ୍ଗିନଥାଏ । ପାଠପଢ଼ା ବନ୍ଦ କରି କୁଆଡେ ଦିନେ ବି ଯିବାକୁ ଆଉ ଜୀବନରେ ସାହସ କରିନାହିଁ । ପ୍ରତିଷ୍ଠାତା ସଂପାଦକ ଦେଓ୍ୱାନ ବାହାଦୁର ଅମୃତ ବଜାର ପତ୍ରିକାରେ ପ୍ରଧାନ ଶିକ୍ଷକପାଇଁ ବିଜ୍ଞାପନ ଦେଲେ । ଜଣେ ଢ଼ାକା ଅଧିବାସୀ କିରଣଚନ୍ଦ୍ର ସାହା ବୟସ ୪୫/୫୦ ଏମ୍.ଏ.ବି.ଟି ମନୋନୀତ ହୋଇ ଆସି ଆମର ଦଶମ ଶ୍ରେଣୀବେଳେ ଯୋଗଦାନ କଲେ ମାତ୍ର ଶିକ୍ଷାଦାନ ସେ କେବେ କରିଥିଲେ ଏହା ତାଙ୍କ ରଙ୍ଗଢ଼ଙ୍ଗରୁ ଜଣାଗଲା ନାହିଁ । ଶ୍ରେଣୀ ପାଠ ସେ ବହିରୁ ଗଦ୍ୟ ପଦ୍ୟ ପଢ଼ି ଦେଇ କଣ ଦିପଦ ବଙ୍ଗଳା ମିଶା ଇଂରେଜୀରେ ଅର୍ଥ କହି ଦିଅନ୍ତି । ଘରେ କରିବାକୁ ରଚନା ବ୍ୟାକରଣ ଆଦି ଦିଅନ୍ତି । ଆମେ ଖାତାରେ ଲେଖି ଦେଉ । ତାକୁ ସେ ଦିନେ ଦିଦିନ ରଖି ଗୋଟାଏ ରବର ସିଲ କେ.ସି.ସାହା ଛାପା ମାରି ଯେମିତି ନେଇଥାନ୍ତି ସେମିତି ଫେରାଇ ଦିଅନ୍ତି । ଫଳରେ ନୀଳାମ୍ବର କର ଯେତିକି ପାଠ ପଢ଼ାଇଥିଲେ ଆମେ ସେତିକିରେ ରହିଗଲୁ । ସଂପାଦକ ବୋଧହୁଏ ଜାଣିପାରିଲେ । ସେ ବିଦା ହୋଇଗଲେ । ଛ ମାସରୁ ବେଶି ରହି ନଥାନ୍ତି । ପୁଣି ଜଣେ ପ୍ରଧାନ ଶିକ୍ଷକ ଆସିଲେ, ସେ କଟକର ମୁସଲିମ ସେମିନାରୀ (ବର୍ତ୍ତମାନ ସୟଦ ସେମିନାରୀ)ର ପ୍ରଧାନ ଶିକ୍ଷକ ଥିଲେ ନାଁ ଫଜଲୁର ରହମନ, ବି.ଏ, ବି.ଟି । ଅଳ୍ପ କେତେମାସ ରହିଲେ ।

ଇଂରେଜୀ ପଢ଼ାଇବା ବେଳେ ସିଲାବସ ନିର୍ଦ୍ଧାରିତ ବିଷୟ ନ ପଢ଼ାଇ ସେ ଆମକୁ କଟକ ଜିଲା ଜେଜେଟିଆରରେ ବର୍ଣ୍ଣିତ ମରହଟ୍ଟା ଶାସନ, ଇଂରେଜ ଆଗମନ, ଫିରିଙ୍ଗି କୁଦରେ ଅବସ୍ଥାନ, କଟକରେ ନବାବଙ୍କ ଦର୍ଶନ ଓ ନଜରାନା ପ୍ରଦାନ ଆଦି ଶୁଣାନ୍ତି । ସେ ମଧ କିଛି ମାସ ରହି ଚାଲିଗଲେ । କିଶୋରୀ ବାବୁ ସ୍କୁଲ ପ୍ରତିଷ୍ଠା ଦିନଠାରୁ ଥିଲେ । ସେ ପ୍ରଥମରୁ ବିଦ୍ୟାଳୟର ପରିଚାଳନା ଓ ଛାତ୍ର ସମସ୍ୟା ସହିତ ପରିଚିତ ଥିଲେ । ସଂପାଦକଙ୍କର ମଧ ଅତି ବିଶ୍ୱସ୍ତ ଥିଲେ ମାତ୍ର କଣ ହେଲା ହଠାତ୍ ମୋର ଦଶମ ଶ୍ରେଣୀରେ ସେ ଇସ୍ତଫା ଦେଇ ପୂର୍ବରୁ ଥିବା କୁଜଙ୍ଗର ବନବିହାରୀ ଉଚ୍ଚ ବିଦ୍ୟାଳୟକୁ ଚାଲିଗଲେ । ଶିକ୍ଷାଦାନ ତାଙ୍କର ଜୀବିକା ନଥିଲା, ଏହା ତାଙ୍କ ପାଇଁ ସତଚରିତ୍ର ମେଧାବୀ ଛାତ୍ର ସୃଷ୍ଟି କରିବା ନିମିତ୍ତ ଏକ ପ୍ରକାର ଆହ୍ୱାନ, ଏକ

ଯଜ୍ଞ ପରି ଥିଲା । ସେ ଯାହା ସାମାନ୍ୟ ଦରମା ନେଉଥିଲେ ନିଜେ ଅବିବାହିତ ଓ ପରିବାର ଦାୟିତ୍ୱ ମୁକ୍ତ ଥାଇ ଛାତ୍ରମାନଙ୍କର ହିତାକାଂକ୍ଷୀ ଭାବରେ ବେଶିଭାଗ ଖରଚ କରୁଥିଲେ । ମାସରେ ଦୁଇଟା ନିର୍ଜଳା ଏକାଦଶୀ କରନ୍ତି । ଦ୍ୱାଦଶୀ ପାରଣାରେ ଗୋଟିଏ ଶ୍ରେଣୀର ପିଲାଙ୍କୁ ଡାକି ପୁରୀ ତରକାରୀ କ୍ଷିରି ଖାଇବାକୁ ଦିଅନ୍ତି । ଆମ ଭିତରୁ ଯିଏ ଛୁଞ୍ଚିଏ ପୁରୀ ଖାଇପାରୁଥିଲା ତାକୁ ଆଉ ଥରେ ଖାଇବାକୁ ଡାକୁଥିଲେ । ଛୁଞ୍ଚିଏ ଅର୍ଥ ସେତେବେଳେ ଗୋଟାଏ ବଡ ଛୁଞ୍ଚି ଖାତା ସିଲେଇରେ ବ୍ୟବହାର ହେଉଥିଲା । ପୁରୀ ତା ଦେହରେ ଗୁନ୍ଥିଲେ ଯାହା ହେଉଥିଲା ପ୍ରାୟ ୧୨/୧୫ଟା । ମୋର ପରମ ହିତୈଷୀ, ତାଙ୍କ ବିଦାୟ ମତେ ଖୁବ୍ ବାଧିଲା । ଗଣିତରେ ମୁଁ ତ ସହଜେ ଦୁର୍ବଳ ହୋଇଯାଇଥିଲି ତାଙ୍କଠାରେ ଭରସା ଥିଲା । ପରୀକ୍ଷା ପୂର୍ବରୁ ପାଖରେ ବସି ସବୁ ବୁଝିନେବି । ତାହା କେବଳ ଆଶାରେ ରହିଲା ଗଣିତ ଶିକ୍ଷକ କେହି ରହିଲେ ନାହିଁ । ତାଙ୍କ ଗାଁ ବାଉଦପୁରର ଚନ୍ଦ୍ରଶେଖର ପଣ୍ଡା କିଛିଦିନ ଗଣିତ ଶିକ୍ଷକ ଭାବେ କାମଚଳାଇଲେ । ସେ ଆଇ.ଏ. ରେ ଗଣିତ ବିଷୟ ପଢ଼ିଥିଲେ । ୧୯୩୮ରେ ଦଶମ ଶ୍ରେଣୀରେ ଗଣିତକୁ ଡରଯୋଗୁ ସଂସ୍କୃତ ଇଚ୍ଛାଧିନ ବିଷୟ ଭାବେ ବାଛିନେଲି । ପଣ୍ଡିତ ଗଦାଧର ମହାପାତ୍ର ବିଦ୍ୟାଳୟ ଆରମ୍ଭରୁ ଥିବା ଏକମାତ୍ର ଶିକ୍ଷକ । ତେଣୁ ପ୍ରତେକ୍ୟକର ଯୋଗ୍ୟତା ବିଷୟରେ ଅବଗତ ଥିଲେ । ସେହି ବର୍ଷ ମାଟ୍ରିକ ଟ୍ରେନିଂ ପ୍ରାପ୍ତ ଜଣେ ଯୁବକ ଆର୍ତ୍ତତ୍ରାଣ ପ୍ରହରାଜ ଆସି ଯୋଗଦେଲେ । ସେ ଟ୍ରେନିଂ ସ୍କୁଲରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ଓଡ଼ିଆ ପଢ଼ାଇବାରେ ଧୁରନ୍ଧର ଥିଲେ । ସାହିତ୍ୟ ବହି ଶେଷକରି ଚିଲିକା କାବ୍ୟ ମୂଳରୁ ଶେଷଯାଏ ଅତି ପ୍ରାଞ୍ଜଳଭାବେ ଶବ୍ଦାର୍ଥ ଭାବାର୍ଥ ସହ ବୁଝାଇଦେଲେ । ସେତେବେଳେ ସେ ଘରୋଇଭାବରେ ଆଇ.ଏ. ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଉଥିଲେ । ଏହା ତାଙ୍କ ପାଇଁ ଋଭିଜନ ଥିଲେ ମଧ ଆମ୍ଭମାନଙ୍କୁ ଓଡ଼ିଆ କାବ୍ୟ, ସାହିତ୍ୟର ରସାସ୍ୱାଦନରେ ଆଗ୍ରହୀ କରାଇଲା । ସାଙ୍ଗରେ ଯେଉଁମାନେ କଲେଜର ଓଡ଼ିଆ ନେଲେ ଚିଲିକା କାବ୍ୟ ତାଙ୍କର ପାଠ୍ୟ ପୁସ୍ତକ ଥିଲା । ମାତ୍ର ସେମାନେ ତାହା ଭଲ କରି ପଢ଼ି ସାରିଥିଲେ ।

ଓଡ଼ିଆରେ ଇଂରେଜୀରୁ ଓଡ଼ିଆ ଅନୁବାଦ ନିମିତ୍ତ ଗୋଟିଏ ପ୍ରଶ୍ନ ଥାଏ । ଆର୍ତ୍ତବାବୁ ବାଣୀଭୂଷଣ ପଣ୍ଡିତ ମୃତ୍ୟୁଞ୍ଜୟ ରଥ କାବ୍ୟତୀର୍ଥଙ୍କ ଓଡ଼ିଆ ରଚନା ଅନୁବାଦ

ବହିର ଆମୂଳଚୂଳ ଆମ୍ଭମାନଙ୍କୁ ବୁଝାଇ ଦେଉଥିଲେ । ଫଳରେ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଆମ୍ଭମାନଙ୍କୁ ଓଡ଼ିଆ ପାଠ୍ୟ ନେଇ କୌଣସି ଚିନ୍ତା କରିବାକୁ ପଡିଲା ନାହିଁ । ସେ ବରଷେ ଖଣ୍ଡେ ରହି ସରକାରୀ ଚାକିରି ପାଇ ଚାଲିଗଲେ । ସଂସ୍କୃତ ପଣ୍ଡିତେ ଓଡ଼ିଆ ପଢ଼ାଇଲେ କାମଚଳାଭାବେ । ଆର୍ତ୍ତତ୍ରାଣ ପ୍ରହରାଜ କଲେଜିଏଟ ସ୍କୁଲରେ ସାହିତ୍ୟ ପଢ଼ାଉଥିଲେ । ଜଣେ ଛାତ୍ରବତ୍ସଳ ଦକ୍ଷ ଶିକ୍ଷକ ଥିଲେ । ୧୯୪୪ ମସିହାରେ ଘରୋଇ ଭାବରେ ବିଏ ପାସ୍ କରିବାର ଅଳ୍ପଦିନ ପରେ ଖୁବ୍ ଅଳ୍ପ ବୟସରେ ମରିଗଲେ । ଏକ ଉଦୀୟମାନ ପ୍ରତିଭାର ଅନ୍ତ ଘଟିଲା । ଏକାଦଶ ଶ୍ରେଣୀକୁ ପ୍ରମୋସନ ପାଇବା କିଛିଦିନ ପରେ ଜଣେ ଅଭିଜ୍ଞ ପ୍ରଧାନ ଶିକ୍ଷକ ଦିଗମ୍ବର ଭୂୟାଁ ସାଲେପୁର ହାଇସ୍କୁଲରୁ ଆସି ଯୋଗଦେଲେ । ଅବଶ୍ୟ ପୂର୍ବ ବର୍ଷମାନଙ୍କରେ ରଘୁନାଥ ମହାନ୍ତି, ରାଜକିଶୋର ରାୟ, ଉଭୟ ଏମ୍.ଏ. ଗଣିତ ଓ ଇଂରେଜୀ ଶିକ୍ଷକ ଭାବେ ଯୋଗଦେଇଥିଲେ ମାତ୍ର ଅତି ଅଳ୍ପ ସମୟ ପରେ ସେମାନେ ଚାଲିଯାଇଥିଲେ । ସେମାନଙ୍କ ଭଳି ଶିକ୍ଷକଙ୍କ ଶିକ୍ଷାର ମାନ ଆମ ଶିକ୍ଷାଦାନ ଉପରେ କୌଣସି ପ୍ରଭାବ ପଡିବା ପୂର୍ବରୁ ସେମାନେ ବିଦାୟ ନେଲେ । ତେଣୁ ନୂତନ ପ୍ରଧାନ ଶିକ୍ଷକ କେତେଦିନ ରହିବେ ଆମ୍ଭମାନଙ୍କର ସନ୍ଦେହ ରହୁଥାଏ । ଦିଗମ୍ବର ଭୂୟାଁ, ଜଣେ କୃତୀ ଛାତ୍ର ଥିଲେ । ସେ ମାଟ୍ରିକ୍ ପରୀକ୍ଷାରେ ଆଠଶରୁ ଛଅଶହ ତେୟାଅଶୀ ନମ୍ବର ରଖିଥିଲେ । ତାଙ୍କର ସହପାଠୀମାନେ ମଧ୍ୟ ତାଙ୍କ ବିଦବତ୍ତା ଓ ଅଧ୍ୟୟନ ଶୈଳୀର ପ୍ରଶଂସକ ଥିଲେ । ପୂର୍ବରୁ ସେ ଦେବଗଡ଼ ସାଲେପୁର ଓ ଅନ୍ୟତ୍ର ଶିକ୍ଷକ ଥିଲେ । ଜଣେ ସାହିତ୍ୟିକ ଭାବେ ଓଡ଼ିଶାରେ ତାଙ୍କର ସୁଖ୍ୟାତି ଥିଲା । ମୋର ବାରବୁଲା ଜୀବନ ଏକ ଅନୁବାଦିତ ଉପନ୍ୟାସ 'ସହକାର'ର ମାସିକ ସଂଖ୍ୟାରେ କ୍ରମାଗତ ପ୍ରକାଶିତ ହୋଇ ଶେଷରେ ପୁସ୍ତକ ଆକାରରେ ଉପଲବ୍ଧ ଥିଲା । ତାଙ୍କ ଚରିତ୍ରର ବିଶେଷତ୍ୱ 'ଗଙ୍ଗା କହିଲେ ଥିବି ଗାଙ୍ଗୀ କହିଲେ ଯିବି' । ଏହା ସମସ୍ତେ ଚର୍ଚ୍ଚା କରୁଥାଆନ୍ତି । ତାଙ୍କ ସାଙ୍ଗରେ ସାଲେପୁରର ହାଇସ୍କୁଲରୁ ଜଣେ ବିଶିଷ୍ଟ କୃତୀଛାତ୍ର ହରିହର ମିଶ୍ର ମଧ୍ୟ ଟ୍ରାନ୍ସଫର ସାର୍ଟିଫିକେଟ ଧରି ଆସି ପ୍ରସ୍ତାବିତ ହାଇସ୍କୁଲରେ ନାମ ଲେଖାଇଲେ । ଏକ ସମୟରେ ଅଗରପଡା (ଭଦ୍ରଖ) ଓ ଜଗତସିଂହପୁରରେ ଉଚ୍ଚ ବିଦ୍ୟାଳୟ ଖୋଲା ଯାଇଥିଲା । ଅଗରପଡା ବିଦ୍ୟାଳୟର ପ୍ରତିଷ୍ଠାତା କଂଗ୍ରେସ ନେତା ହରେକୃଷ୍ଣ ମହତାବ,

ତାଙ୍କର ଅନୁମତି ମିଳିଲା ପରେ ଜଗତସିଂହପୁରକୁ ମଧ ଦଶମ ଏକାଦଶ ଶ୍ରେଣୀ ଖୋଲିବା ଅନୁମତି ମିଳିଲା । ପାଟଣା ବିଶ୍ୱବିଦ୍ୟାଳୟରୁ ମଧ ପରୀକ୍ଷା ଦେବାନିମିତ୍ତ ସହବନ୍ଧନ ମିଳିଗଲା ଓ ଜଗତସିଂହପୁର ପ୍ରଥମ ବ୍ୟାଚ ୧୯୩୯ ଫେବୃୟାରୀ ମାସରେ ପରୀକ୍ଷା ଦେଲେ । ଦିଗମ୍ବର ବାବୁ ଛାତ୍ରମାନଙ୍କର ପାଠପଢ଼ା ଜନିତ ତ୍ରୁଟି ସଂପୂର୍ଣ୍ଣ ଭାବରେ ଅବଗତ ଥିଲେ । ସେମାନଙ୍କୁ ଯେତେଦୂର ସମ୍ଭବ ଅଳ୍ପ ସମୟ ମଧ୍ୟରେ ଆଗେଇ ନେବାକୁ ସେ ଉଦ୍ୟମ କଲେ । ଇଂରେଜୀ ସାହିତ୍ୟ ଗଣିତ ଓ ଭୂଗୋଳ ସେ ଏକାଦଶ ଶ୍ରେଣୀରେ ପଢ଼ାଇଲେ । ଆଗରୁ ଦଶମର ପାଠ୍ୟ ମଧ ଅନେକ ନ ଜାଣିଥିବା ଜାଣି ତାହା ବୁଝାଇବାରେ ତ୍ରୁଟି କଲେ ନାହିଁ । ଯାହାହେଉ ମାଟ୍ରିକୁଲେସନ ପରୀକ୍ଷା ଦେବା ପାଇଁ ଦଶମ ଓ ଏକାଦଶ ଶ୍ରେଣୀରେ ନିର୍ଦ୍ଧାରିତ ସିଲାବସ ସେ ପଢ଼ାଇ ଶେଷ କଲେ । ଆମେ ସବୁ ପଛୁଆ ପିଲା । ମାତ୍ର ହରିହର ମିଶ୍ର ରୂପ ଯେମିତି ଆଖିରେ ପଡିବା ପରି ଗୋରାତକ ପାଠରେ ସେମିତି ଆମଠାରୁ ଢ଼େର ଆଗରେ । ସେ ପ୍ରଧାନ ଶିକ୍ଷକଙ୍କ ସହିତ ରହୁଥିଲେ । କେବଳ ଶ୍ରେଣୀରେ ତାଙ୍କ ସହିତ ଆମ୍ଭମାନଙ୍କର ସାକ୍ଷାତ ଓ ସାମାନ୍ୟ ବାକ୍ୟାଳାପ ହୁଏ । ଡିସେମ୍ବର ମାସ ପ୍ରଥମ ସପ୍ତାହରେ ବଛାବଛି ପରୀକ୍ଷା ହେଲା । ପରୀକ୍ଷାର୍ଥୀ ୧୦/୧୫ଜଣ ବଛାଗଲେ । ପରୀକ୍ଷା ୧୯୪୦ ଫେବୃୟାରୀ ମାସରେ ହେବାର ଥାଏ । ପରୀକ୍ଷା ଫିଜ ପନ୍ଦର ଟଙ୍କା, ସହିତ ବିଦ୍ୟାଳୟର ଅନ୍ୟ ଫିଜ ଦେବାକୁ ପଡିଲା । ମୋର ତ ଦରମା ଛାଡ । ତେଣୁ ଏକାବେଳେକ ୩/ ୪ ମାସର ଦରମା ଦେବାରୁ ମୁଁ ତ୍ରାହି ପାଇଲି । ମୋର ପରୀକ୍ଷା ଫିଜ ପନ୍ଦରଟଙ୍କା ଦେବାରେ ମୋର ଧର୍ମପିତାଙ୍କ ବ୍ୟତୀତ ଅନ୍ୟ କେତେଜଣ ସ୍ଥାନୀୟ ସରକାରୀ ବେସରକାରୀ ବ୍ୟକ୍ତି ମଧ ସାହାଯ୍ୟ କଲେ । ପାଟଣା ବିଶ୍ୱବିଦ୍ୟାଳୟ ଅଧିନରେ ବିହାର ଓଡ଼ିଶା ଦୁଇ ପ୍ରଦେଶର ସମସ୍ତ ହାଇସ୍କୁଲର ଛାତ୍ରମାନେ ଏହି ପରୀକ୍ଷା ଦେଉଥିଲେ । ଏହି ହାଇସ୍କୁଲ ସଂଖ୍ୟା ଷାଠିଏରୁ ସତୁରୀ ଭିତରେ ।

ପ୍ରତି ବିଦ୍ୟାଳୟର ଟେଷ୍ଟ ପରୀକ୍ଷାରେ ପ୍ରଶ୍ନ ଓ ବିଗତ ପାଞ୍ଚ ବର୍ଷର ବିଶ୍ୱବିଦ୍ୟାଳୟର ପ୍ରଶ୍ନ ଏକାଠି କରି ପାଟଣାର ଏକ ପ୍ରକାଶକ ପାଟଣା ଇଉନିଭରସିଟି ମାଟ୍ରିକ ଟେଷ୍ଟ ପେପର ୧୯୪୦ ବାହାର କରୁଥାଆନ୍ତି । ଆଠଟି ପତ୍ରର ପ୍ରଶ୍ନମାନ ଏଥିରେ ଥାଏ । ଟେଷ୍ଟ ପରୀକ୍ଷା ପରେ ମୁଁ ଏଥିରୁ ଖଣ୍ଡେ କିଣି ଉତ୍ତର ଦେବାରେ

କେତେଦୂର ସମର୍ଥ ତାହା ଜାଣି ମୋର ଯୋଗ୍ୟତା ନିଜେ ନିର୍ଣ୍ଣୟ କଲି । ପ୍ରଧାନ ଶିକ୍ଷକ ମଧ ମୋର ଗଣିତର ଦୁର୍ବଳତା ଲକ୍ଷ୍ୟ କରି କିପରି ଅତି କମରେ ସହଜରେ ଚଳିଶରୁ ପଚାଶ ନମ୍ବର ପାଇ ପାରିବି ତାହା ବତେଇ ଦେଲେ ।

ପ୍ରଥମ ଶ୍ରେଣୀ ପାଇବାକୁ ଗଣିତର ଉଚ୍ଚା ମାର୍କ ସାଧାରଣତଃ ସହୟକ ହୋଇଥାଏ । ତାହା ମୋର ନଥିବା ହେତୁ ମୁଁ ୨ଟି ସଂସ୍କୃତ ପତ୍ର ବାଧତାମୂଳକ ଓ ଇଚ୍ଛାଧିନରେ ଅଣିଲେଖା ରଖିବା ଉଦ୍ୟମରେ ରହିଲି । ପ୍ରଧନ ଶିକ୍ଷକ ଏ ଦିଗରେ ମଧ ସହାୟକ ହେଲେ । ଦିଗମ୍ବର ବାବୁଙ୍କ ଏକାଦଶ ଶ୍ରେଣୀରେ ପାଠପଢ଼ାର ଗୋଟିଏ ଉଦାହରଣ ଦେଉଛି । ସେ ପ୍ରଥମ ପିରିଅଡରୁ କ୍ଲାସରେ ବସିବେ । ରୁଟିନ ଅନୁସାରେ କ୍ରମାନ୍ୱୟରେ ଇଂରେଜୀ ଗଣିତ, ଓଡ଼ିଆ, ଇଂରେଜୀ ୨ୟ ପତ୍ର, ପଢ଼ାଇ ଯାଉଥିବେ । ଛାତ୍ରମାନଙ୍କର ମାନ ମଧ ନିର୍ଣ୍ଣୟ କରୁଥାଆନ୍ତି । ଦିନେ ଏହିପରି ଚାରି ପିରିଅଡ ପଢ଼ାଇଲେ । ତାପରେ ଖେଳ ଛୁଟି । ୫ମ ପିରିଅଡରେ ଇଂରେଜୀ ବ୍ୟାକରଣ ପଢ଼ାଇଲେ । ଘଣ୍ଟା ବାଜିଲା, ତାପରେ ଇଚ୍ଛାଧିନ ପିରିଅର୍ଡ । ଆମର ସଂସ୍କୃତ । ଜୟକୃଷ୍ଣ ମତେ ଚୁପ କରି ଶୁଣାଇଲେ ଏବେ ରକ୍ଷା ପାଇଲେ । ପ୍ରଧାନ ଶିକ୍ଷକଙ୍କ ଦୃଷ୍ଟି ପଡିଗଲା । ମତେ ପଚାରିଲେ ମିଶ୍ରେ କଣ କହିଲେ । ମୁଁ ସେଇକଥା ଶୁଣାଇଲି । ସେ କହିଲେ ଆଚ୍ଛା । ପିଅନକୁ ଡାକି କହିଲେ ପଣ୍ଡିତଙ୍କୁ କହ ଇଚ୍ଛାଧିନ ଶ୍ରେଣୀକୁ ଯିବେ ନାହିଁ ମୁଁ ସେ କ୍ଲାସ ନେବି । ଇଚ୍ଛାଧିନ ପାଇ ଅନ୍ୟ ଗୋଟାଏ କକ୍ଷକୁ ଯିବାକୁ ପଡୁଥିଲା । ଶ୍ରେଣୀରେ ସେ ଭୋଜରାଜ, ଉପାଖ୍ୟାନ ପଢ଼ାଇଲେ । ବ୍ୟାକରଣ ଚର୍ଚ୍ଚା ମଧରେଗୋଟାଏ ଜାଗାରେ ଭାବେ ସପ୍ତମୀର ପ୍ରୟୋଗ ସହିତ ଇଂରେଜୀରେ **Nominative absolute** ର ବ୍ୟବହାର ପ୍ରାଞ୍ଜଳ ଭାବରେ ବୁଝାଇଦେଲେ । ସତୁରି ବରଷ ପରେ ମଧ ମୋର ବ୍ୟାକରଣର ଏ ଦୁଇଟି ପାଠ ବିସ୍ମୃତ ହୋଇ ନାହିଁ ।

ଚାନ୍ଦୁରାରେ ଟେଷ୍ଟ ପେପର ଉତ୍ତରକରେ । ଟ୍ୟୁସନ ମଧ ତା ସାଙ୍ଗରେ ଚାଲିଥାଏ । ଗେଣ୍ଟୁର ସପ୍ତମ ଶ୍ରେଣୀ । ବିଦ୍ୟାଳୟର ଶିକ୍ଷକମାନେ ମଧ ସେଥିପାଇଁ ତାକୁ ବିଶେଷ ଦୃଷ୍ଟି ଦେଉଥାଆନ୍ତି । ମୁଁ ମଝିରେ ମଝିରେ ବିଦ୍ୟାଳୟକୁ ଆସି ଅସମାଧିତ କଷ୍ଟ ପ୍ରଶ୍ନମାନଙ୍କର ଉତ୍ତର ପ୍ରଧନ ଶିକ୍ଷକ ବା ଛାତ୍ରାବାସରେ ଥିବା ସହଧ୍ୟାୟୀ ମାନଙ୍କଠାରୁ ବୁଝିଯାଏ । ୧୯୪୦ ମସିହା ପ୍ରଥମ ଭାଗରେ ଓଡ଼ିଶାରା ଗଡଜାତ ସମୂହର ମୁଖ୍ୟ

କର୍ମକର୍ତ୍ତା ସମ୍ବଲପୁରରେ ଅବସ୍ଥିତ ପଲିଟିକାଲ ଏଜେଣ୍ଟ, ମେଜର ବେଢ୍ଢେଲଗେଟ ସାହେବଙ୍କୁ ରଣପୁରରେ ବିଦ୍ରୋହୀ ପ୍ରଜାମାନେ ନିର୍ମମ ଭାବରେ ହତ୍ୟା କଲେ । ଓଡ଼ିଶାରେ ଜଣେ ଉଚ୍ଚ ପଦାଧିକାରୀ ପୁଣି ଗୋରା ସାହେବଙ୍କର ହତ୍ୟା ଅଭୂତପୂର୍ବ ଓ ଅଶ୍ରୁତପୂର୍ବ । ତେଣୁ ପରୀକ୍ଷା ଘୁଞ୍ଚିଯାଇପାରେ ବୋଲି ଖବର କାଗଜରୁ ଓ ଲୋକମୁଖରେ ଚର୍ଚ୍ଚାର ବିଷୟ ଥାଏ । ମାତ୍ର ତାହା ହେଲା ନାହିଁ । ଠିକ୍ ସମୟରେ ପରୀକ୍ଷା ହେଲା । କଟକ କଲେଜିଏଟ ସ୍କୁଲ ପରୀକ୍ଷା କେନ୍ଦ୍ର । ଏହାର ପ୍ରଧାନ ଶିକ୍ଷକ ସୁପରିଟେଣ୍ଡ । ମାଇନର ପରୀକ୍ଷା ବେଳେ ଆମେ ସବୁ ପରୀକ୍ଷାର୍ଥୀ ଜଣେ ଶିକ୍ଷକଙ୍କ ତତ୍ତ୍ୱାବଧାନରେ କଟକ ଯାଇ ସେଠାରେ ଏକାଠି ରହି ପରୀକ୍ଷା ଦେଇଥିଲୁ । ମାତ୍ର ଏଥର ତାହା ନଥାଏ । ପ୍ରତ୍ୟେକ ନିଜ ନିଜର ରହଣି ସ୍ଥାନ ଠିକ୍‌କରି ପରୀକ୍ଷା କେନ୍ଦ୍ରକୁ ଯିବେ । ଅବଶ୍ୟ ପ୍ରଥମଦିନ ଜଣେ ଶିକ୍ଷକ ଉପସ୍ଥିତ ଥାଇ ସେମାନଙ୍କର ଚିହ୍ନୋଟ କରିବେ ଯେପରି ସେହି ନାମରେ ପ୍ରକୃତ ଛାତ୍ର ଛଡା ଅନ୍ୟ ଜଣେ ନକଲି ପରୀକ୍ଷାର୍ଥୀ ହେବ ନାହିଁ ।

ବାଙ୍କାବଜାରରେ ନୂଆହୋଇ ନିର୍ମିତ ଗିରିଧାରୀ ଲାଲ ମୋଡା ଧର୍ମଶାଳାରେ ଗୋଟିଏ କୋଠରୀ ମତେ ରହିବାକୁ ମିଳିଗଲା । ସାଙ୍ଗରେ ବାଉରିବନ୍ଧୁ ମହାପାତ୍ର । ସେ ଚାକିରିରେ ପଶି ଶେଷରେ ଓଏଏସ୍‌ରୁ ଅବସର ନେଲେ । ମୋଠାରୁ ବୟସ ଓ ଅଭିଜ୍ଞତାରେ ବଡ । ହୋଟେଲରେ ଦି ବେଳା ଖାଇବା ଚଳେଇ ନେଉ । ଯୁଦ୍ଧ ଲାଗି ଗଲାଣି । ତେଣୁ ବଜାର ଦର ପୂର୍ବପରି ସ୍ଥିର ନ ରହି ବଢ଼ିବାକୁ ଆରମ୍ଭ କଲାଣି । ମୋର ସିଟ୍ ଏଥର ମଧ୍ୟ କଲେଜିଏଟ ସ୍କୁଲରେ ନପଡ଼ି ପାଖ ଟ୍ରେନିଂ ସ୍କୁଲରେ ଗୋଟିଏ କକ୍ଷରେ ପଡ଼ିଥିଲା । ୫ ଦିନରେ ପରୀକ୍ଷା ସରିଗଲା । ପରୀକ୍ଷା ଦେଇସାରି ଗାଁକୁ ଲେଉଟି ଗଲି । ବାପାଙ୍କର ମନ ଖୁସି । ମୋର ପାସ କରିବାରେ ସନ୍ଦେହ ନଥାଏ । ବୟସ ଅଠର ହେଲାଣି । ଏଣିକି ମୁଁ ଉପାର୍ଜନ କ୍ଷମ ହୋଇ ତାଙ୍କ ଦୁଃଖ ଦୂର କରିବାରେ ସକ୍ଷମ ହେବି ।

ନିୟତିର ବିଧାନ ଅନ୍ୟ ପ୍ରକାର । ମୋର ଧର୍ମପିତା କୁହନ୍ତି ଗଣିତ ମୋର ଇଚ୍ଛାଧିନ ନଥିବାରୁ ଇଂଜିନିଅର ବା ମେଡିକାଲରେ ସ୍ଥାନ ମିଳିବ ନାହିଁ । ଦୁଇଟାଯାକ ସ୍କୁଲ । ଓଡ଼ିଶାରେ ଇଂଜିନିଅରିଂ ବା ମେଡିକାଲ ଶିକ୍ଷା ପାଇଁ କଲେଜ ନଥାଏ । ତେଣୁ

ତାଙ୍କର କଳ୍ପନା ମୋର ଇଂରେଜୀରେ ଦକ୍ଷତା ଯୋଗୁ ଟ୍ରେନିଂ ସ୍କୁଲରେ ବରଷକିଆ Shorthand type writing course ସମାପ୍ତି କରି ଷ୍ଟେନୋଗ୍ରାଫର ହେବାକୁ । ନୂତନ ଓଡ଼ିଶାରେ ଦକ୍ଷ କ୍ଷିପ୍ରଲେଖକ ଘୋର ଅଭାବ ହେତୁ ମାନ୍ଦ୍ରାଜ ପ୍ରଦେଶରୁ ସେମାନଙ୍କୁ ଅଣା ଯାଉଥିଲା । ମାତ୍ର ସେଠାରେ ସିଟ୍ ସଂଖ୍ୟା ୨୫ କି ୩୦ । ସମଗ୍ର ଓଡ଼ିଶାରୁ ପ୍ରାର୍ଥୀମାନଙ୍କ ପାଇଁ । ତାହା ନ ପାଇଲେ ମୁକ୍ତ୍ୟାରି ପଢ଼ିବାକୁ । ଏହି ମୁକ୍ତ୍ୟାର ମାନଙ୍କୁ ଲକ୍ଷ୍ୟକରି ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀଙ୍କର ଜହ୍ନମାମୁଁରେ ପ୍ରକାଶିତ ୧୯୩୭ରେ ଗୋଟିଏ କବିତା ଥିଲା । ଏମିତି -

ଓକିଲ ମୁକ୍ତିଆର
କଳାକୁ ଧଳା କରିବା ପାଇଁ ଏଗୁଡିକ ତିଆର
ମିଥ୍ୟାଖାଲି ଆଶ୍ରାକରି ପକେଟ ଯାଏ ଅର୍ଥଭରି
ନିଦ୍ରା ଯାଏ ନେତ୍ରୁ ହରି କାଟୁ ମିଥ୍ୟା ସିଆର
ଓକିଲ ମୁକ୍ତିଆର ।

ଓକିଲ ମୁକ୍ତିଆର
ଦାଣ୍ଡଘରେ ସଜାଇ ଦେଇ, ଟେବୁଲ ବେଞ୍ଚ ଚେୟାର
ଜମାଇ ଦେବେ ବଢ଼ିଆ ଆଡା, ଆଲମିରାରେ କାଟର ବାଡା
ଭିତରେ ରହେ, ବହିରୁ ଖାତା ବାହାରକୁ ବାହାର
ଓକିଲ ମୁକ୍ତିଆର ।

ଓକିଲ ମୁକ୍ତିଆର
ହାବୁଡେ ଥରେ, ପଡିଲେ ତାଙ୍କ ନାହିଁରେ ନିସ୍ତାର
ମଥାରେ ଦେବେ, ମିଥ୍ୟା ଭରି, କଥାରେ ଦେବେ ପାଗଳ କରି
ବୃଥାରେ ଗୁଡେ କଉଡି ହରି ହରିନେବେ ଆହାର
ଓକିଲ ମୁକ୍ତିଆର ।

ଓକିଲ ମୁକ୍ତିଆର
ବାହାର ଝଳି କଳି ନ ପାରି ଲେଖନୀ ମାନେ ହାର

ଅତର ବୋଳା ସତରବେଶ, ଲହରିତୋଳା ସହରୀବେଶ
ଗାଉନ ଗଳା ସ୍କନ୍ଧ ଦେଶ ଅତି ଚମତ୍କାର
ଓକିଲ ମୁକ୍ତିଆର ।

ଓକିଲ ମୁକ୍ତିଆର
ସ୍ୱାଧୀନଭାବେ ଅଧୀନ ଭାବେ କିମ୍ଭୂତ କିମାକାର
ଭୃତ୍ୟନୋହିଁ ଭୃତ୍ୟବର, ଯେତେ ଓକିଲ ମୁକ୍ତିଆର
ସବୁରି ପାଇଁ ମୁକ୍ତ ଦ୍ୱାର, ଏହାଙ୍କ ଦରବାର
ଓକିଲ ମୁକ୍ତିଆର ।

ଓକିଲ ମୁକ୍ତିଆର
ଦେଶର ହିତେ ଏଥିରୁ କେତେ ନିତ୍ୟ ଅଗ୍ରସର
ଧନ ଜୀବନ ଦେଶର ହିତେ, ଲଗାଇ ଭାଇ ଏଥିରୁ କେତେ
ଆମର ଆଜି ଚରଣ ପୂତେ କୋଟି ନମସ୍କାର
ଓକିଲ ମୁକ୍ତିଆର ।

ମୁକ୍ତାରି ପାଠ ଏକବରଷ । କଟକ ସରକାରୀ ହାଇସ୍କୁଲରେ ସନ୍ଧ୍ୟାବେଳେ ପଢ଼ାଯାଉଥାଏ । ବିହାର ଓଡ଼ିଶାର ଏକ ଆଇନ ବୋର୍ଡ ଏହି ପରୀକ୍ଷା କରୁଥିଲା । ସେମାନେ ପାସ କରି ଜିଲ୍ଲାମାଜିଷ୍ଟ୍ରେଟଙ୍କଠାରୁ ଲାଇସେନ୍ସ ପାଇ ସବୁପ୍ରକାର ରାଜସ୍ୱ ଓ ଜଜକୋଟ ସେସନ ବ୍ୟତୀତ ଅନ୍ୟ ସବୁ ଫଉଜଦାରୀ କୋର୍ଟରେ ଆଇନ ଅଭ୍ୟାସ କରିପାରିବେ । କଟକରେ ରଘୁ ମୁକ୍ତ୍ୟାର, ଦଳବେହେରା, କେଦାରରାୟ, ରାମମହାନ୍ତି, ରସାନନ୍ଦ କାନୁନଗୋ ପ୍ରଭୃତି ନାମଜାଦା ମୁକ୍ତାର । ସେମାନଙ୍କର ରୋଜଗାର ସେ ଯୁଗରେ ପାଞ୍ଚ ସାତ ଶହ ଟଙ୍କାଯାଏ ଯାଉଥିଲା । ପାସ କରି ଜଣେ ପୁରୁଣା ମୁକ୍ତ୍ୟାରଙ୍କ ସିରସ୍ତାରେ କାମ କରିବାକୁ ପଡୁଥିଲା । ଧର୍ମପିତାଙ୍କର ବିସ୍ତୃତ ପରିଚିତି ପରିସର ହେତୁ ଏପ୍ରକାର ଶିକ୍ଷା ନବୀସ ହେବାରେ ମଧ୍ୟ କୌଣସି ଅସୁବିଧା ଦେଖା ଦେଇ ନଥାଆନ୍ତା । ମୁଁ ମହାଆନନ୍ଦରେ ଗାଁରେ ବୁଲୁଥାଏ । ବଡ ଦାଦି ରାଘବାନନ୍ଦ ମହାନ୍ତି ମାଛଗାଁ ଆଗକୁ ଗୋଟିଏ ଗାଁ ଅନ୍ନହରବେଲାରିରେ ଚାଟଶାଳୀ କରିଥାଆନ୍ତି । ତାଙ୍କ

ସାଙ୍ଗରେ ଯାଇ ସେଠାରେ କିଛିଦିନ ରହିଲି । ସମୁଦ୍ରରୁ ଇଲିଶି ମାଛ ଖାଡି ବା ନାସି ମଧ୍ୟ ଦେଇ କୋହଲା ଉତ୍ତରା ପବନରେ ଉପରକୁ ଉଠି ଆସନ୍ତି ଯେତେବେଳେ ଜୁଆର ଉଠେ । ଜୁଆର ପରେ ଭଟା ପଡିଲେ ଗୋଖାମାନେ ଜାଲରେ ଏହି ମାଛର ମୁଖ ବନ୍ଦ କରିଦିଅନ୍ତି । ମାଛମାନେ ଯାଇ ନ ପାରି ପଡି ଛଟପଟ ହୁଅନ୍ତି । ବହୁତ ସଂଖ୍ୟାରେ ମାଛ ଧରାଯାଏ । ମାତ୍ର ଏହାର ବିକ୍ରିର କୌଣସି ବ୍ୟବସ୍ଥା ନଥାଏ । ନିକଟବର୍ତ୍ତୀ ଗ୍ରାମରୁ କେତେକ ବ୍ୟକ୍ତି ଆସି କିଛି କିଣି ନିଅନ୍ତି । ଦାମ୍ ଅତି ଶସ୍ତା । ବାକିତା ଶୁଖୁଆ କରାଯାଏ । ସମୁଦ୍ର ପାଣିରୁ କିଆରିକରି ନେଇ ପଟାଳିରେ ଲୁଣମରା ସେଠାରେ ସମୁଦ୍ରକୂଳରେ ହୁଏ । ତେଣୁ ଶୁଖୁଆ କରି ରଖିବା ଓ ଭବିଷ୍ୟତରେ ବିକିବା ଲାଭଦାୟକ ଥାଏ । ମୋଟ ଉପରେ ଏହି ପ୍ରକୃତିଦତ୍ତ ସଂପଦରେ ଗୋଖାମାନେ ବିଶେଷ ଲାଭବାନ ହୁଅନ୍ତି ନାହିଁ । ସେମିତି ଦରିଦ୍ର ରହିଯାଆନ୍ତି । ସରକାରୀ ପ୍ରଚଳିତ ବ୍ୟବସ୍ଥା ଏଥିପାଇଁ ଦାୟୀଥିଲା । ଗାଁକୁ ଫେରି ଆସିଲି । ପରୀକ୍ଷାଫଳ କେବେ ବାହାରିବ ତା ପରେ କଅଣ କରାଯିବ ଏସବୁ ଜାଣିବାକୁ ଚାନ୍ଦୁରା ଲେଉଟିଲି । ଦୀର୍ଘ ୪ ବରଷ ୨ ମାସ ସେଠାରେ ରହିବା ପରେ ତାହା ମୋତେ ନିଜ ଗାଁ ପରି ଆକର୍ଷଣୀୟ ଥିଲା ।



# କଲେଜ ପଢ଼ା ଯୋଗ

ସେଠାରେ ଜାଣିଲି ମୋର କଲେଜରେ ଉଚ୍ଚଶିକ୍ଷାର ବ୍ୟବସ୍ଥା ହୋଇଛି । ପାସକଲେ ମୋ ସାଙ୍ଗରୁ ଜୟକୃଷ୍ଣ, ବାଇଧର, ଚାଙ୍ଗରାର ସଚ୍ଚିଦାନନ୍ଦ ଚଉଧୁରୀ ଆଦି କଲେଜରେ ପଢ଼ା ନିଷ୍ପତ୍ତି କରିଥାଆନ୍ତି । ମାତ୍ର ମୋର ଭବିଷ୍ୟତ ଅଜ୍ଞେୟ ଥାଏ । ଚାନ୍ଦୁରା ପାଖରେ ଆଉ ଗୋଟିଏ ବଡ ଜନବହୁଳ ଗାଁ ମରିଚାପଦା । ଏ ଗ୍ରାମର ବହୁତ ଲୋକ କଟକ ଓ ଅନ୍ୟତ୍ର ସରକାରୀ ଓ ଘରୋଇ ଅଫିସରେ କାମ କରନ୍ତି । ସେ ଗାଁର ଜଣେ ଓକିଲ ଉଦୟନାଥ ମହାନ୍ତି । ତାଙ୍କୁ ସମସ୍ତେ ଉକବାବୁ ଓକିଲ ଭାବରେ ଜାଣନ୍ତି । ସାଧାରଣ ପ୍ଲିଡର ଥିଲେ । ଜଜ କୋର୍ଟଠାରୁ ତଳ ଦେୱାନି ଫୌଜଦାରୀ କୋର୍ଟମାନଙ୍କରେ ମକଦ୍ଦମା ଚଳାଉଥିଲେ । ହାଇକୋର୍ଟ ତ ପାଟଣାରେ । କଟକରେ ବର୍ଷକୁ ସରକିଟ କୋଟ ୨/୪ ଥର କାମ ଦେଖି ବସେ । ପାଟଣାରୁ ଜଣେ ଦିଜଣ ଜଷ୍ଟିସ ଆସି ଏଠାରେ ରହି ମକଦମା ଫଏସଲା କରନ୍ତି । ଆଡଭୋକେଟ ହେଲେ ସେଠାରେ ଓକିଲାତି କରିହେବ । ଉକବାବୁ ୧୯୪୦ରେ ଆଡଭୋକେଟ ହୋଇଥାଆନ୍ତି । ସେ ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତିଙ୍କର ଜୁନିଅର ଥିଲେ । ଲକ୍ଷ୍ମୀଧର ପାଟଣାରେ ଲାଟସଭା ମେମ୍ବର ହେବା ପରେ ଜୁନିଅର ଭାବେ ଉକବାବୁ ତାଙ୍କର ସିରସ୍ତା ସମ୍ଭାଳି ବେଶି ରୋଜଗାର କଲେ । କଟକରେ ରାଜାବଗିଚାରେ ଗୋଟିଏ ବାଣ ଗୋଦାମ ଥିଲା କାଠଯୋଡି ବନ୍ଧର ଉତ୍ତରକୁ ଓ ନୃସିଂହ ନାଥ ମଠ ସାମନା ରାସ୍ତାର ପୂର୍ବକୁ । ଜନବସତି ବଢ଼ିବାରୁ ସେଠାରେ ଗୋଦାମ ନିମିତ୍ତ ଅନୁମତି ମିଳିଲା ନାହିଁ । ଘରଟି ବିକ୍ରି ହେଲା । ଉକବାବୁ ତାକୁ ଖରିଦ କରି ନିଜ ପସନ୍ଦ

ମୁତାବକ ଗଢ଼ି ବାସଯୋଗ୍ୟ କଲେ । ରନ୍ଧାଘର ଭଣ୍ଡାର ଘର ବ୍ୟତୀତ ଆଉ ୩/୪ ଗୋଟି କୋଠରୀ ଥାଏ । ମାଲିକଙ୍କର ଶୟନାଗାର ଏହା ବାଦ ଗୋଟିଏ ବଡ କୋଠରୀ ଥିଲା । ସିରସ୍ତା ଘର ଅଲଗା । ପକ୍ଷ ଓ ମୋହରୀର ସେଇଠି ବସିବାର ବ୍ୟବସ୍ଥା ଥାଏ । ଉକବାବୁଙ୍କ ପରିବାର କହିଲେ ତାଙ୍କ ସ୍ତ୍ରୀ ମନୋରମା ଦେଈ, ୧୦/୧୨ ବରଷର ପୁଅ ଟୁକୁ (ରବି) ଓ ଦେଢ଼ବରଷର ଝିଅ ବିନି । ରାନ୍ଧୁଣିଆ ସୋମନାଥ (ସମନାଭାଇ) ଓ ବୋଲହାକକରା ଟାକର ବାଉରିଆ (ବାଉରିବନ୍ଧୁ ବେହେରା ସରକାରୀ ଚାକିରିରେ ପଶି ସଚିବାଳୟରେ ମୁଖ୍ୟ ଶାସନ ସଚିବଙ୍କ ଜମାଦାରଭାବେ ଅବସର ନେଲା) । ତାଙ୍କ ଶ୍ୱଶୁର ମଙ୍ଗଳପୁର (ଜଗତସିଂହପୁର ନିକଟ)ର ଉପେନ୍ଦ୍ରନାଥ କାନୁନଗୋ । ସେ ବହୁଦିନ ଧରି କଟକ ଓ ପୁରୀରେ ସଦର କାନୁନଗୋ ଥିଲେ । ପରେ ସବଡେପୁଟି କଲେକ୍ଟର ହୋଇ ଅବସର ନେଲେ । ସେ ଅଧିକାଂଶ ସମୟ ଗାଁରୁ ଆସି ଏକମାତ୍ର କନ୍ୟା, ମନ୍ନା ପାଖରେ ରହନ୍ତି । ତାଙ୍କର ସଉକ ବହିପଢ଼ିବା । ଦେବସାହିତ୍ୟ କୁଟୀର ନାମରେ ଏକ ବଙ୍ଗଳା ପ୍ରତିଷ୍ଠାନର ସେ ସଭ୍ୟ ଥାଆନ୍ତି ଓ ପ୍ରତି ମାସରେ ଡାକଯୋଗେ ସେମାନଙ୍କର ପ୍ରକାଶିତ ଉପନ୍ୟାସ ଖଣ୍ଡେ ଦିଖଣ୍ଡ ତାଙ୍କ ପାଖକୁ ଆସେ । ଏହା ବ୍ୟତୀତ ଭାଓୟାଲ ସନ୍ନ୍ୟାସୀ ମର୍ଡର କେଶର ହାଇକୋଟ ଜଜମେଣ୍ଟ, ୩ ଜଣ ଜଷ୍ଟିସ, ଲଜ କଷ୍ଟେଲୋ ଓ ବିଶ୍ୱାସଙ୍କର ଛୋଟ ଅକ୍ଷରରେ ଛପା ପ୍ରାୟ ଚାରିଶହ ପୃଷ୍ଠାର ଏକ ବିରାଟ ଗ୍ରନ୍ଥ ପଢ଼ିବା ତାଙ୍କର ଦୈନନ୍ଦିନ କାର୍ଯ୍ୟଥାଏ । ତାଙ୍କର ୨ୟ ପୁତ୍ର ହେମେନ୍ଦ୍ର ନାଥ । ସେ ଇଂରାଜୀ ଅନର୍ସ ନେଇ ପାଟଣାରେ ପଢ଼ିଲେ । ସେଠାରୁ ସସମ୍ମାନେ ପାସ କଲେ ମାତ୍ର ପାରିବାରିକ କାରଣରୁ ଏମ୍.ଏ. କଟକରେ ପଢ଼ିଲେ । ପାଟଣାରେପଢ଼ିବା ବେଳେ ସେ ରେଭେନ୍ସା କଲେଜର ଇଂରେଜୀ ଅଧାପକମାନଙ୍କର ଶିକ୍ଷାଦାନ ଉପରେ କିଛି ଅରୁଚିକର ମନ୍ତବ୍ୟ ଦେଇଥିଲେ ଯାହା ପରବର୍ତ୍ତୀକାଳରେ ତାଙ୍କୁ ଖୁବ୍ ମହଙ୍ଗା ପଡିଲା । ସେ କଟକରେ ଏମ୍.ଏ.ରେ ତୃତୀୟ ଶ୍ରେଣୀ ପାଇଲେ । ଏମ୍.ଏ. ଏବଂ ଲ (ଆଇନ) ରେଭେନ୍ସା କଲେଜରେ ଏକାଠି ପଢ଼ିଲେ ୩ ବରଷ ଲାଗୁଥିଲା । ସେ ଆଇନ ପଢ଼ି ପରୀକ୍ଷା ଦେଇ ନଥାନ୍ତି । ଉଚ୍ଚତର ଶିକ୍ଷା ସକାଶେ ସେ ବିଲାତି ଯିବାକୁ ଠିକ୍ କଲେ । ଅକ୍ସଫୋର୍ଡ ବିଦ୍ୟାଳୟରେ ତାଙ୍କୁ ସିଟ୍ ମିଳିଲା । ଜାହାଜରେ ଥମାସ ବୁକ କମ୍ପାନି ଯିବା ବ୍ୟବସ୍ଥା କଲା । ସେ

୧୯୩୯ ସେପ୍ଟେମ୍ବର ମାସରେ ଜଳଯାତ୍ରା କରିବାର ଠିକ୍ ହୋଇଥାଏ । ସବୁ ଆତ୍ମୀ ବିଦାୟ ଭୋଜି ଖାଇ ୨ ବରଷ ପାଇଁ କଟକ ଛାଡି କଲିକତାରେ ଟ୍ରେନ ଯୋଗେ ପହଞ୍ଚିଲେ । ଜାହାଜ କମ୍ପାନୀ ତାଙ୍କ ରହିବାର ବ୍ୟବସ୍ଥା କରିଥାଏ । ତାଙ୍କ ସାଙ୍ଗେ ଆଉ ଜଣେ ମଧ ସେଇ ଜାହାଜରେ ଇଂଜିନିଅରିଂ ପଢ଼ିବାକୁ ବିଲାତ ଯାଉଥାନ୍ତି । ଘର କଟକ ସହରରେ । ନାମ ସୟଦ ଗୋଲାମୁଦ୍ଦିନ ନବି । ବି.ଏସ୍‌ସି.ର ପଦାର୍ଥ ବିଜ୍ଞାନରେ ସସମ୍ମାନେ ସ୍ନାତକ ପାସ କରି ଇଂଜିନିୟରିଂରେ ଆଗ୍ରହୀ ଥାଆନ୍ତି । ତିନି ତାରିଖ ସେପ୍ଟେମ୍ବର ୧୯୩୯ ମସିହା ଦିନ ଜାହାଜ କଲିକତା ବନ୍ଦର ଛାଡି ଯିବାର ଥିଲା । ସେଇଦିନ ଇଂରେଜମାନେ ଜର୍ମାନର ହିଟଲର ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ଖବରକାଗଜରେ ଖୁବ୍ ବଡ ବଡ ଅକ୍ଷରରେ ବାହାରିଲା । Mediterinean closed to British shipping ଭୂମଧ ସାଗର ଦେଇ କୌଣସି ବ୍ରିଟିଶ ଜାହାଜ ଇଂଲାଣ୍ଡ ଯିବା ମନା । ଇଟାଲି ଜର୍ମାନି ଗୋଟିଏ ଅକ୍ଷଶକ୍ତି ଭାବରେ ଯୁଦ୍ଧରେ ଯୋଗ ଦେଇଥାଆନ୍ତି । ଜାହାଜ କମ୍ପାନି ମାହାସୁଲ ଫେରାଇ ଦେଲା । ଦୁଇବନ୍ଧୁ ଅତ୍ୟନ୍ତ ମନଦୁଃଖରେ କଟକ ଫେରି ଆସିଲେ । ଗୁଲାମ ନବି ପରେ ସରକାରୀ ଚାକିରି କରି ୧୯୪୬/୪୭ରେ ପ୍ରାଦେଶିକ ସ୍ୱଳ୍ପ ସଂଚୟ ଅଧିକାରୀ ଥିଲେ । ଦେଶ ବିଭାଜନ ପରେ ସେ ପୂର୍ବ ପାକିସ୍ଥାନ ଚାଲି ଯାଇ ସେଠାରେ ଗୋଟିଏ ଅତି ଗୁରୁତ୍ୱପୂର୍ଣ୍ଣ ପଦରେ ଅଭିଷିକ୍ତ ହୋଇଥିଲେ । ହେମେନ୍ଦ୍ର କଳାହାଣ୍ଡି ଭବାନିପାଟଣା ହାଇସ୍କୁଲରେ ଇଂରାଜୀ ଶିକ୍ଷକ ଥିଲେ । ସେଠାକୁ ଫେରି ନ ଯାଇ ଆଇନ ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଲେ ଓ ଭଉଣୀଙ୍କ କଟକ ଘରେ ରହିଲେ । ପରେ ସେ ଜଣେ ବିଶିଷ୍ଟ ଫୌଜଦାରୀ ଓକିଲ, ଜିଲାଜଜ ଓ ଇସ୍ତଫାଦେଇ ପୁଣି ଆଡଭୋକେଟ ହେଲେ ।

ମୋର ଧର୍ମପିତାଙ୍କର ଉଦୟନାଥବାବୁଙ୍କ ସହିତ ଘନିଷ୍ଠ ସଂପର୍କ ଥାଏ । ତାଙ୍କୁ କେହି ଆଇନ ସହାୟତା ନିମିତ୍ତ ଉପଦେଶ ମାଗିଲେ ସେ ତାଙ୍କୁ ଭବବାବୁଙ୍କ ସିରସ୍ତାକୁ ପଠାଇ ଦେଉଥିଲେ । କଟକରେ ଝାଙ୍କିଂରି ମଙ୍ଗଳାରେ ନିଜର ଘର ତିଆରି ହେବା ପୂର୍ବରୁ କଟକ ରହଣି ତାଙ୍କର ଉକବାବୁଙ୍କ ଘରେ ହେଉଥିଲା । ଗାଁରେ ଉକବାବୁଙ୍କ ଜମିବାଡି ଚାଷ ଅମଲ ଆଦି ହାତୁବାବୁ ମଧ ଦରକାରବେଳେ ବୁଝନ୍ତି । ଏକମାତ୍ର ପୁଅ ଟୁକୁ ଷଷ୍ଠ ଶ୍ରେଣୀରୁ ସପ୍ତମ ଶ୍ରେଣୀ ପ୍ରମୋସନ ପାଇ କଲେଜିଏଟ ସ୍କୁଲରେ

ପଢୁଥାଏ । ମୁଁ ତାଙ୍କ ଘରେ ରହିବି । ଟୁକୁ ପାଠପଢ଼ାରେ ସାହାଯ୍ୟ କରିବି ଓ କଲେଜ ପଢ଼ା ଏହା ସହିତ ସମ୍ପନ୍ନ କରିବି । ଏହି ପ୍ରସ୍ତାବ ଉକବାବୁଙ୍କ ଗ୍ରହଣୀୟ ହେଲା । ଅପ୍ରେଲ ମାସରୁ ମୁଁ ଟ୍ୟୁସନ ଆରମ୍ଭ କରିବି । ଜୁଲାଇରେ କଲେଜରେ ନାମ ଲେଖା । ମୋର ନାମ ଲେଖା ଖରଚ ଉକବାବୁ ବହନ କରିବେ । ଏହି ପ୍ରସ୍ତାବ ମତେ ଜଣାଇ ଦେବା ପରେ ମୁଁ ଅତି ଆଗ୍ରହରେ ଏହା ଗ୍ରହଣ କଲି । ଅପ୍ରେଲ ପହିଲା ଦିନ କଟକରେ ତାଙ୍କ ଘରେ ଆସି ରହିଲି । ତାଙ୍କ ଘରେ ବାବୁ, ମାଆ ଦିଜଣ ଝିଅ ଦିଇଟାକୁ ଛାଡି । ମୋ ପାଇଁ ରହିବାକୁ ଗୋଟାଏ କୋଠରୀରେ ଖଟ ସତରଂଞ୍ଚି ତକିଆ ବ୍ୟବସ୍ଥା ହୋଇଥିଲା । ମାଆ ମନୋରମା ମୋତେ ନିଜ ବଡପୁଅ ଭଳି ଶ୍ରଦ୍ଧା ଦେଖାଇ ମୋର ସବୁ ସୁବିଧା ଦିଗରେ ତତ୍‌ପର ଥିଲେ ।

କଲେଜ ଖୋଲିବାକୁ ଚାରିମାସ ଥାଏ । ମୁଁ ନୂଆ ହୋଇ ବାଆନ ବଜାର ତେପନ ଗଳି କଟକକୁ ଆସି ବୁଲି ସହର ଦେଖିଲି । ସହାଧ୍ୟାୟୀ ଖୋଜିଲି । ଉକବାବୁଙ୍କ ଘର ଉତ୍ତରକୁ ଦଶପଲ୍ଲୀର କୁଖ୍ୟାତ ଦେଉନ ୪ ଭାବଗ୍ରାହୀ ବିଶ୍ୱାଳଙ୍କ ଘରଥାଏ । ତାଙ୍କ ଜ୍ୱାଇଁ ଓଡ଼ିଶାର ଦ୍ୱିତୀୟ ଆଇ.ସି.ଏସ୍. କୃପାସିନ୍ଧୁ ମିଶ୍ର ଆଲ୍ଲାହାବାଦ ଜିଲ୍ଲାପାଳ ଥାଆନ୍ତି । ତାଙ୍କ ତିନିପୁଅଙ୍କ ମଧ୍ୟରୁ ଡ଼ ହିମାଦ୍ରି ବି.ଏ. ପାସ୍ କରି ସେକ୍ରେଟେରୀଏଟରେ କାମ କରୁଥାଆନ୍ତି । ୨ୟ ସିମାଦ୍ରି ସେଇ ବର୍ଷ ଆଇ.ଏ. ପାସ୍‌କଲେ ପରେ ଅନୁଶାସନ ଶଚିବ ଭାବେ ଅବସରନେଲେ । ସାନ ଉମାଦ୍ରି ହାଇସ୍କୁଲରେ ପଢୁଥାଆନ୍ତି । ତାଙ୍କ ଘରକୁ ଲାଗି ପୂର୍ବକୁ ଗୋଟିଏ ବସାଘର । ପଦବାବୁ ମୋହରୀଙ୍କର । ସେଠାରେ ତାଙ୍କ ଜ୍ୱାଇଁ ଗୌରାଙ୍ଗଚରଣ ପରେ ପ୍ରସିଦ୍ଧ ଇଂଜିନିୟର ପଦ୍ମଶ୍ରୀ ନଳିନୀକାନ୍ତ ମହାନ୍ତିଙ୍କର ପିତା । ସେ ଆଇ.ଏ. ପରୀକ୍ଷା ଦେଇଥାଆନ୍ତି । ପ୍ୟାରୀମୋହନ ଏକାଡେମୀରୁ ମୋରି ଭଳିଆ ମାଟ୍ରିକ ଦେଇଥାଏ ତାଙ୍କର ପୁତୁରା କମଳଲୋଚନ ମହାନ୍ତି । ପରେ ବିଖ୍ୟାତ ନାଟ୍ୟକାର ଓ ଆନ୍ତର୍ଜାତିକ ଖ୍ୟାତିସପନ୍ନା ନୃତ୍ୟଶିଳ୍ପୀ ଅରୁଣାଙ୍କର ପିତା କଲେ ପଢ଼ିବା ଆଶାରେ ଥାଏ । ତାଙ୍କ ଗାଁ ସୁଦକଣ୍ଠିରୁ ମୋର ଚିହ୍ନା ଥିଲା । ବସା ଘରର ପଶ୍ଚିମକୁ ମୁନିସିପାଲଟି ରାସ୍ତା । ତାପରେ ନୃସିଂହନାଥ ମଠ । ମଠରେ ମଧ କେତେକ ସବୁପ୍ରକାର ସୁବିଧା ଥିବା ଏକକ ଭଡାଘରଥାଏ । କେତେକ ସହଧ୍ୟାୟୀ ସେଠାରେ ରହୁଥାନ୍ତି । ନରହରି ପଟ୍ଟନାୟକ ସେଇ ବରଷ ବି.ଏ.ରେ ଇଂରାଜୀ

ଅନର୍ସ ନେଇ ପାସ୍ କଲେ । ସରକାରୀ ଓଡ଼ିଆ ଅନୁବାଦକ ଭାବେ ଚାକିରିରେ ପଶି ଓ.ଏ.ଏସ୍. ହୋଇ ଶେଷରେ ବନ୍ଦୋବସ୍ତ ଅଧିକାରୀଭାବେ ଅବସର ନେଲେ । ତାଙ୍କ ଭାଇ ଲୋକନାଥ ପଟ୍ଟନାୟକ । ବି.ଏ.ବି.ଇଡି ପାସ୍‌କଲେ । କଲେଜିଏଟ ସ୍କୁଲରେ ଶିକ୍ଷକରେ ପଶି ଶିକ୍ଷା ବିଭାଗର ଇନ୍‌ସ୍ପେକ୍ଟର ଭାବରେ ଅବସରନେଲେ । କଲେଜଛାତ୍ର ଆଉ କେତେଜଣ ମଧ ଥାଆନ୍ତି । ପରୀକ୍ଷା ପରେ ଘରକୁ ଯାଇଥାଆନ୍ତି । ଏମାନଙ୍କ ସହିତ ମୋର ପରିଚୟ ହେଲା । କମଳଲୋଚନ ଘନିଷ୍ଠ ସହପାଠୀ ହେଲେ । ନରହରି, ଲୋକନାଥ, ଗୌରାଙ୍ଗ ମୋର ଅଭାବୀ କଲେଜ ପାଠପଢ଼ା ଜୀବନରେ ନନା ପ୍ରକାର ସାହାଯ୍ୟ କରିଥିଲେ । ମୁଁ ସେଥିପାଇଁ କୃତଜ୍ଞ । ଚାକିରି ଜୀବନରେ ମଧ ସହକର୍ମୀଭାବରେ ନରହରି ମୋତେ ବଡ଼ଭାଇ ପରି ଦିଗ୍‌ଦର୍ଶନ ଦେଇ ଆସିଅଛନ୍ତି ।



# କଲେଜ, ଫୁଲ ଅଫ ନଲେଜ

ଲୋକ ମୁଖରେ ଏଇଆ କୁହାଯାଉଥାଏ । ଜ୍ଞାନ ବିଛୁରି ହୋଇ ପଡିଛି, ଯେଉଁ କେତେ ବର୍ଷ ପଢ଼ିବ ତାକୁ ଆଞ୍ଜୁଳୀ କରି ଗୋଟେଇ ଆଣିବା କଥା । କବି ଉପେନ୍ଦ୍ର ତ୍ରିପାଠୀ ଗାଇଥିଲେ -

ଆଇ.ଏ. ଗଲେ ବି.ଏ.
ବି.ଏ. ଗଲେ ଏମ୍.ଏ.
ଶ୍ରେଣୀଗୁଡିକ ସପନକୁଞ୍ଜ ସତେକି ସ୍ୱର୍ଗଧାମେ
ବିଜୁଳି ତହିଁ ବ୍ୟଜନ କରେ, ସମୀର ବୁଲି ସୁବାସ ହରେ
ଗ୍ରନ୍ଥ କୁସୁମ ଦାମେ, ବିଏ ପଛକୁ ଏମ୍.ଏ. ।
ଆଇ.ଏ ଗଲେ ବିଏ
କିଛି ନ ହେଲେ ଗ୍ରାଜୁଏଟଟା କହିବ ହେଲେ କିଏ
ଡେପୁଟିଗିରି ମିଳିଲେ ଖଣ୍ଡେ
ଆଉ କେ ଦେଖେ ଗାଉଁଲି ଦାଣ୍ଡେ
ମଥାରେ ଥିଲେ ଆଇନ କାଣ୍ଡେ
ବହୁତ କାମ ଦିଏ, ଆଇ.ଏ ଗଲେ ବି.ଏ. ।
ଆଇ.ଏ ଗଲେ ବି.ଏ.
ଏତିକ ଥିଲେ ଅତିକମରେ କିରାଣି ବାବୁଟିଏ
ତାହେଲେ ଆଉ ଚିନ୍ତା କଣ ?

ଯାଉଛି ଯାଉ ବାପାର ଧନ
କଲେଜ ପରି ରମ୍ୟସ୍ଥାନ
ସ୍ୱର୍ଗେ ପାଏ କିଏ
ଆଇ.ଏ ଗଲେ ବି.ଏ. ।
ଆଇ.ଏ ଗଲେ ବି.ଏ.
ପାଠକୁ ଚାହିଁ ଦେହକୁ ପୁଣି ଲୋଡା ପୋଷାକଟିଏ
କୁଞ୍ଚୁକୁଞ୍ଚିଆ କଜଳ.କେଶ
ନାକ ତଳକୁ ଅଳପ ନିଶ
ପର ଚକ୍ଷୁରେ ଆପଣା ବେଶ
ନୟନ ମୋହି ନିଏ
ଆଇ.ଏ ଗଲେ ବି.ଏ. ।
ଆଇ.ଏ ଗଲେ ବି.ଏ.
ବରଷଦୁଇ କଲେଜ ପାଠ ମଥା ବିଗାଡି ଦିଏ
ପାହାଡ ପରି କିତାପ ଗଦା
ସାହେବୀ ଭାଷା ଅସଲ ବାଧା
ଭାଷାରେ ଖାଲି ଆୟୁର ଅଧା
କଲେଜ ଟାଣି ନିଏ
ଆଇ.ଏ ଗଲେ ବି.ଏ. ।
ଆଇ.ଏ ଗଲେ ବି.ଏ.
ହାସଲ କରି ଆସିଲେ ଫେରି ମୂଲ୍ୟ କଲେ କିଏ
ବି.ଏ.ର ଗୋଟେ ମାର୍କା ଥିଲେ
ବାହା ବେଦୀରେ ବାଇକ ମିଲେ
ସୁନାର ଘଡି ବକ୍ଷେ ଦୋଳେ
ନଗଦ ଥଳିଟିଏ
ଆଇ.ଏ ଗଲେ ବି.ଏ. ।

ସେତେବେଳେ କଲେଜ କହିଲେ ଓଡ଼ିଶାର ଏକମାତ୍ର ପ୍ରଥମ ଶ୍ରେଣୀ ପାଟଣା ବିଶ୍ୱବିଦ୍ୟାଳୟ ଅନୁବନ୍ଧିତ ରେଭେନ୍ସା କଲେଜକୁ ବୁଝାଉଥାଏ । ରେଭେନ୍ସା ଗାର୍ଲ୍ସ କଲେଜରେ ଆଇ.ଏ. ଶ୍ରେଣୀ ଥାଏ । ବ୍ରହ୍ମପୁରର ଖଲିକୋଟରେ ଆଇ.ଏ. ଶ୍ରେଣୀ ପାରଳାଖେମୁଣ୍ଡିରେ ବି.ଏ, ଶ୍ରେଣୀ ଥିବା ଅନ୍ୟ ଦୁଇଟି କଲେଜ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ସହ ଅନୁବନ୍ଧିତ । ବାଲିକୁଦା ଅଞ୍ଚଳରୁ ଆଇ.ଏ.ରେ ବାଲିସାହି ବିପିନବାବୁ ପରେ ଏମ୍.ଏଲ୍.ଏ. ଖମ୍ବାକୁଳର ରାଜକିଶୋର ମହାନ୍ତି, ତିତିରାର ଚକ୍ରଧର ମହାନ୍ତି, ପଢୁଥାଆନ୍ତି । ମୋର ବରଷେ ଉପରେ । ମୋ ସହିତ ପୂର୍ବ ସହପାଠୀ ଭବାନିପାଟଣାରୁ ପାସ କରି ଆସି ନାମ ଲେଖାଇ ଥାଆନ୍ତି ତିଗିରିଆର ସୂର୍ଯ୍ୟକାନ୍ତ ଦାସ, ବଡରୋଡଙ୍ଗର ସଚ୍ଚିଦାନନ୍ଦ ପଟ୍ଟନାୟକ (ତାଙ୍କ ଭଉଣୀ ପରେ ମୋର ସହ ଧର୍ମଣୀ) ଅପ୍ରେଲରେ ମାଟ୍ରିକ ପରୀକ୍ଷା ଫଳ ବହାରିଲା ଦିନ ମୁଁ କଟକରେ ଥିଲି । ପାଟଣାରୁ ପରୀକ୍ଷାଫଳ 'ସମାଜ' ଅଫିସକୁ ଆସିଗଲା । ସ୍କୁଲର ସଂପାଦକ ଦେଓ୍ୱାନ ବାହାଦୁର ଆମ ଫଳ ବୁଝିଲେ । ହରିହର ଓଡ଼ିଶାରେ ୨ୟସ୍ଥାନ ଅଧିକାର କରିଥାଆନ୍ତି, ମୋର ୩ୟ ଶ୍ରେଣୀ । ଜୟକୃଷ୍ଣର ସେଇଆ, ବାଇଧରର ୩ୟ ଶ୍ରେଣୀ, ଜୟକୃଷ୍ଣର ପ୍ରଥମ ଡିଭିଜନ ପାଇବାକୁ ତିନିନମ୍ବର କମ ଥାଏ ୪୭୭ ରଖି । ମୋର ଆଠ ନମ୍ବର କମ ଥାଏ ୪୭୨ ରଖି । ମାର୍କଲିଷ୍ଟ ଆସିଲା ପରେ ଏହା ଜଣାଗଲା । ଅନ୍ୟ କ୍ଷେତ୍ରରେ ସଫଳ ବାଇଧର ସବୁବେଳେ ପରୀକ୍ଷା ଫଳରେ ହତଭାଗା ହୁଏ । ମାଟ୍ରିକରେ ଅଙ୍କ କେଇନମ୍ବର ପାଇଁ ୨ୟ ଡିଭିଜନ, ଆଇ.ଏ.ରେ ମଧ୍ୟ ସେମିତି ୨ୟ ଡିଭିଜନ ହରାଇଲା । ବି.ଏ.ରେ ଇଂରାଜୀରେ ଅନର୍ସ ପାଇ ଗୋଟିଏ ଗ୍ରୁପ ବିଷୟରେ ଫେଲ ହୋଇଥିବାରୁ ଅନର୍ସ ହରାଇ ଖାଲି ପାସ ଡିଗ୍ରି ପାଇଲା । ପରୀକ୍ଷାଫଳ ସନ୍ତୋଷ ଜନକ ଥିଲା । ବିଦ୍ୟାଳୟର ଓ ବ୍ୟକ୍ତିଗତ ନାନା ଅସୁବିଧା ସତ୍ତ୍ୱେ ମୁଁ ପାସ କରିଛି ଜାଣି ସଂପାଦକ ମୋତେ ତାଙ୍କ ଲିଖିତ ସଦ୍ୟ ପ୍ରକାଶିତ 'ଯୁଦ୍ଧର କଥା' ପୁସ୍ତିକା ଖଣ୍ଡେ ଉପହାର ଦେଲେ । ଓଡ଼ିଶା ସରକାର ଯୁଦ୍ଧ ସାମ୍ମୁଖ୍ୟର ସେ ଜଣେ ବଡ କର୍ମକର୍ତ୍ତା ଥିଲେ ।

ଓଡ଼ିଶାରୁ ପୁରୀ ଜିଲ୍ଲା ସ୍କୁଲର ସର୍ବେଶ୍ୱର ଦାସ ପ୍ରଥମ ହୋଇ ପଚିଶ ଟଙ୍କା ବୃତ୍ତି ପାଇଲେ । ତାଙ୍କଠାରୁ ୫ ନମ୍ବର କମ ରଖି ହରିମିଶ୍ରେ ଜଗତସିଂହପୁର ହାଇସ୍କୁଲର ନାମ ସ୍ୱର୍ଣ୍ଣାକ୍ଷରରେ ଲେଖି ଓଡ଼ିଶାରେ ୨ୟ ହେଲେ । କୋଡିଏ ଟଙ୍କା ବୃତ୍ତି ପାଇଲେ ।

ପରବର୍ତ୍ତୀ କାଳରେ ସର୍ବେଶ୍ୱର ବିଶିଷ୍ଟ ଗାନ୍ଧିବାସୀ ଇଂରେଜ ଅଧ୍ୟାପକ ହେଲେ । ଆମେରିକାରୁ ଏମ୍.ଏ.. ଡିଗ୍ରି ପାଇଲେ । ହରି କଲିକତାରୁ ପଦାର୍ଥ ବିଜ୍ଞାନରେ ଏମ୍.ଏସ୍‌ସି. ପାସ ପରେ ଆମେରିକାର ବିଖ୍ୟାତ ଷ୍ଟାନ ଫୋର୍ଡରୁ ପିଏଚ୍.ଡି. କଲେ ଓ ବିଶିଷ୍ଟ ଅଧ୍ୟାପକ ହେଲେ ରେଭେନ୍ସା କଲେଜରେ । ହରି ବିଖ୍ୟାତ ପଦାର୍ଥବିଜ୍ଞାନୀ ଥିଲେ ମଧ୍ୟ ଅବସରପରେ ବାଲ୍ମିକୀ ସଂସ୍କୃତ ରାମାୟଣ ସାତକାଣ୍ଡର ଆକ୍ଷରିକ ଭାଷାନୁବାଦ ପ୍ରକାଶକରି ଅକ୍ଷୟ ସାହିତ୍ୟିକ କୃତି ରଖିଗଲେ । ଓଡ଼ିଶାରେ ପନ୍ଦର ଟଙ୍କିଆ ବୃତ୍ତି ପାଇଲେ ଯାମିନୀ କାନ୍ତ ଦାସ ପରେ ନାମଜାଦା ଭୂଷଣ ବିଦ୍ୟୁତ ବିଭାଗର ମୁଖ୍ୟଯନ୍ତ୍ରୀ ଓ ପ୍ରହଲ୍ଲାଦ ରଥ (ମୋର ସହକର୍ମୀ ଅବସରପ୍ରାପ୍ତ ଅତିରିକ୍ତ ଜିଲ୍ଲାପାଳ) । ଏହା ବାଦେ ପ୍ରତି ଜିଲ୍ଲାରୁ ଗୋଟିଏ ଲେଖାଁ ଦଶ ଟଙ୍କିଆ ବୃତ୍ତିଧାରୀ ମଧ୍ୟ ଥାଆନ୍ତି । କଟକ ଜିଲ୍ଲାରୁ ଗଙ୍ଗାଧର ରଥ, ବିଶିଷ୍ଟ ଲେଖକ ଆଡଭୋକେଟ ଜେନେରାଲ, ପୁରୀ ଜିଲ୍ଲାରୁ, ଗୋବିନ୍ଦଚନ୍ଦ୍ର ତ୍ରିପାଠୀ ସ୍ୱାଧୀନତା ସଂଗ୍ରାମୀ, ବାଲେଶ୍ୱରରୁ ଶେଖ ଅବଦୁଲ ମନାନ (ଦର୍ଶନର ଅଧ୍ୟାପକ ଓ ଅଧ୍ୟକ୍ଷ) ସମ୍ବଲପୁରରୁ ନିତ୍ୟାନନ୍ଦ ଦରଜି (ଦର୍ଶନ ଅଧ୍ୟାପକ କଟକ ଖ୍ରୀଷ୍ଟ କଲେଜ) । ବିହାର ଓଡ଼ିଶାରେ ସର୍ବେଶ୍ୱର ଦ୍ୱିତୀୟ ମାତ୍ର ପାଟଣା ବିଶ୍ୱବିଦ୍ୟାଳୟରେ ସେ ବର୍ଷ ପ୍ରଥମ ହୋଇଥିଲେ ସୁଭାଷ ଚନ୍ଦ୍ର ମୁର୍ଖାର୍ଜୀ । ସେ ଆଇ.ଏସ୍.ସି. ପଢ଼ି ପୁଣି ବି.ଏ.ରେ ଇଂରାଜୀ ଅନର୍ସ ନେଇ ପାସକଲେ ୧୯୪୪ରେ । ଏମ୍.ଏ.ରେ ଆଲାହାବାଦରୁ ଅର୍ଥନୀତିରେ କୃତୀତ୍ୱର ସହ ପାସକରି ଭାରତୀୟ ପ୍ରଶାସନିକ ସେବାରେ ଯୋଗଦାନ କଲେ । ବିହାରର ମୁଖ୍ୟ ଶାସନ ସଚିବ ଭାବେ ଅବସର ନେଲେ । ବୃତ୍ତିଧାରୀମାନଙ୍କର କୃତୀତ୍ୱ ଖବରକାଗଜରୁ ପଢ଼ି ଆମ୍ଭେମାନେ ପରବର୍ତ୍ତୀକାଳରେ ସେମାନଙ୍କର ଜୀବନଚର୍ଚ୍ଚା ଲକ୍ଷ୍ୟ କଲୁ । ଆମର ଦୁଃଖ ହେଉଥାଏ ଶିକ୍ଷାଦାନର ସୁବ୍ୟବସ୍ଥା ଆମର ଚାରିବର୍ଷ ଧରି ଥିଲେ ସେମାନଙ୍କ ପରିଆମେ କୃତୀତ୍ୱ ଦେଖାଇ ପାରିଥାଆନ୍ତୁ ।

ତିନିମାସ ଟ୍ୟୁସନ କଲାପରେ ଜୁଲାଇ ମାସରେ କଲେଜ ଖୋଲିଲା । ଆଇ.ଏ.ରେ ମାସିକ ଦରମା ଛଅଟଙ୍କା । ଉକବାବୁ ମୋର ନାମ ଲେଖା ଖରଚ ଦେଲେ । ନାମଲେଖା ବେଳେ ଫିଜ ପଡୁଥିଲା ୨ ମାସର ଦରମା ଟ. ୧୨.୦୦, ବାଦ ନାମଲେଖା ଫି ଟ. ୬.୦୦, ବିଶ୍ୱବିଦ୍ୟାଳୟ ରେଜିଷ୍ଟ୍ରେସନ ଫି ଟ. ୨, କଲେଜ

ପରୀକ୍ଷା ଫି ଟ. ୨, ଖେଳ ପାଇଁ ଟ. ୨, କମନ ରୁମ୍ ଓ ମାଗାଜିନ ଟ. ୧, ଚଉଦ ଅଣା (୮୮ ପଇସା), ନାଟ୍ୟ ସଂଘପାଇଁ ଦଶ ଅଣା (୬୨ ପଇସା) ଦିବାଧୟୀ ସଂଘ (୮୮ ପଇସା), ଡାକ୍ତରୀ ପରୀକ୍ଷା ଟ. ୧, ଦିବାଧାୟୀମାନେ କଲେଜ ଡାକ୍ତରଖାନାରୁ ଔଷଧ ନେବାକୁ ଫିଜ ଟ. ୨ ବାରପଇସା ମୋଟ ତିରିଶ ଟଙ୍କା ପଚିଶ ପଇସା । କଲେଜର ନିଜ ଡାକ୍ତରଖାନା ରୁମ ନଂ ୧ ଓ ୨ରେ । ସଦ୍ୟ ପାସକରା ଜଣେ MBBS ଡାକ୍ତର ଔଷଧ ଦିଅନ୍ତି, ରୋଗ ପରୀକ୍ଷା କରନ୍ତି । ସେ ମଧ୍ୟ ପ୍ରତିଦିନ ହଷ୍ଟେଲରେ ବୁଲି ଛାତ୍ରମାନଙ୍କର ସ୍ୱାସ୍ଥ୍ୟାବସ୍ଥା ଦେଖନ୍ତି । ମୋର ଲାଇବ୍ରେରୀ ଡିପୋଜିଟ ପାଞ୍ଚଟଙ୍କା ନିଅଣ୍ଟ ପଡିଲା । ତାଙ୍କଠାରୁ ଚିଠି ନେଇ ପ୍ରିନ୍ସପାଲ ପରିଜା ସାହେବଙ୍କୁ ଦେଲାରୁ ସେ ଉକ୍ତ ଡିପୋଜିଟ ଦେଲେ । ମୋର ପ୍ରଥମ ଶ୍ରେଣୀହୋଇ ନଥାଏ ତେଣୁ କଲେଜରେ ଫ୍ରିସିପ ପାଇବା ସମ୍ଭବ ନୁହେଁ । ତାହା ମଧ୍ୟ ଅତି ସୀମିତ । ମୋଟ ଆଇ.ଏ. ଓ ଆଇ.ଏସ୍.ସି. ପଢୁଥିବା ଛାତ୍ରସଂଖ୍ୟାରୁ ଶତକଡା ପାଞ୍ଚ ଭାଗରୁ ଏକ ଭାଗ ନିଆଯାଏ । ତାହାର ପ୍ରାୟ ଶତକଡା ଏକ ଭାଗ ଛାତ୍ର ଦରମା ଛାଡ ପାଆନ୍ତି । ମୋଟ ସେ ବର୍ଷ ଦଶ ବା ଏଗାରଜଣ ପାଇବା ହିସାବ କରାଯାଇଥାଏ ।

କଣ ଅନ୍ୟ ସାହାଯ୍ୟ ମିଳିବ ଏଥିପାଇଁ ମାଆ ମନୋରମା ମତେ ସଂସ୍କୃତ ଅଧ୍ୟାପକ ଓ କଲେଜ ପରିଚାଳନା ସମିତି ସଭ୍ୟ ରାୟ ସାହେବ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ନିକଟକୁ ନେଲେ । ତାଙ୍କର ପାରିବାରିକ ସଂପର୍କ ଥିଲା । ଆର୍ତ୍ତବାବୁ ପ୍ରଥମେ କୃତ୍ରିମ କୋପ ପ୍ରକାଶ କରି ଶେଷରେ ଅଧା ଦରମା ସମାଜସେବା ସାହାଯ୍ୟକାରୀ ସଂସ୍ଥା Social Service Guild ରୁ ପାଇବା ବ୍ୟବସ୍ଥା କଲେ । ମୋର କଲେଜ ଦରମା ଛାଡ ହେବା ପର୍ଯ୍ୟନ୍ତ ମତେ ଏହି ସୁବିଧା ମିଳୁଥିଲା । ଅଧ୍ୟାପକ ଗୁରୁଚରଣ ମହାନ୍ତିଙ୍କଠାରେ ମୁଁ ଏଥିପାଇଁ ଚିର ଋଣୀ । ଟ୍ୟୁସନରୁ ଦରମାଟା ଦେଇହୁଏ । ମୋର ଅନ୍ୟାନ୍ୟ ନିଜ ଖରଚ ଲୁଗାପଟା ପାଇଁ ଏହି ମାସିକ ତିନିଟଙ୍କା ବହୁତ କାମରେ ଆସୁଥିଲା ।

କଲେଜରେ ନାମ ଲେଖାଇ ଏହାର ଚାକଚକ୍ୟ ଦେଖି ବିଭିନ୍ନ ବିଭାଗ ଲେବୋରେଟରି ଆଦି ବୁଲି କିଛି ଦିନ ଗଲା । କଲେଜରେ ସେତେବେଳେ ଆଇ.ଏ., ଆଇ.ଏସ୍‌ସି., ବି.ଏ., ବି.ଏସ୍‌ସି., ଇଂରେଜୀରେ ଏମ୍.ଏ ଓ ସକାଳେ ଆଇନ ଶିକ୍ଷାର

ବ୍ୟବସ୍ଥା ଥାଏ । କଳା ବିଭାଗରେ ବାଧ୍ୟତାମୂଳକ ଇଂରାଜୀ ଓ ମାତୃଭାଷା । ଇଚ୍ଛାଧିନ ଭାବେ ଅର୍ଥନୀତି, ତର୍କଶାସ୍ତ୍ର, ଦର୍ଶନଶାସ୍ତ୍ର, ଇତିହାସ, ଗଣିତ, ଓଡ଼ିଆ, ଓ ସଂସ୍କୃତ ଥାଏ । ସେଥିରୁ ତିନୋଟି ବିଷୟ ବାଛିବାକୁ ପଡ଼େ । ବିଜ୍ଞାନ ବିଭାଗରେ ରସାୟନ ପଦାର୍ଥବିଜ୍ଞାନ, ଉଦଭିଦ ବିଜ୍ଞାନ ଥାଏ । ପରେ ଜୀବ ବିଜ୍ଞାନ Zoology ଯୋଗ କରାଗଲା । ଅଧ୍ୟାପକମାନେ ଓଡ଼ିଶାରେ ସୁପରିଚିତ ବ୍ୟକ୍ତି । ଆମେ ସେମାନଙ୍କର ନାମ ଶୁଣିଥାଉ । ସେମାନଙ୍କଠାରୁ ବିଦ୍ୟାଶିକ୍ଷା କରିବାର ସୁଯୋଗ ଏକ ଗୌରବଭାବେ ଗ୍ରହଣ କଲୁ ।

ବର୍ତ୍ତମାନ ରେଭେନ୍ସା ବିଶ୍ୱବିଦ୍ୟାଳୟ ଦେଖି ସତୁରି ବରଷ ତଳର କଟକ ସହର ମଝିରେ ରେଭେନ୍ସା କଲେଜର ଅବସ୍ଥିତି ଓ ଗୁରୁତ୍ୱ କଳ୍ପନା କରିବା କଷ୍ଟ । କଲେଜର ବିରାଟ ଅଟ୍ଟାଳିକା । ୧୯୨୨ରେ ସେଠାକୁ କଲେଜ ଆସିବା ଆଗରୁ ରେଭେନ୍ସା କଲେଜିଏଟ ସ୍କୁଲ ପାଖରେ ଥିଲା । ସେଇଠି ଏବେ କଟକର ପୁରୁଣା କଲେଜ ଲେନ । ଉତ୍ତର ଦିଗରୁ ଦୁଇଟି ପ୍ରବେଶ ପଥ, ଗୋଟିକରେ ଛାତ୍ର ଓ ଅଧ୍ୟାପକମାନେ ଆସନ୍ତି । ଅନ୍ୟଟି ଠିକ୍ ସିଧା ବିରାଟ କଲେଜ ହଲର ସାମନାରେ । ହଲରେ ଓଡ଼ିଶା ପ୍ରଦେଶ ଗଠନ ପରେ ବିଧାନସଭା ବସୁଥିଲା । ତାର ଅଫିସ ମଧ୍ୟ ସେଠାରେ କାଠର ବିଭାଜନ ତିଆରି କକ୍ଷରେ ଚାଲୁଥାଏ । ଏହି ଫାଟକଟି ପ୍ରାୟ ବନ୍ଦ ଥାଏ । ଉତ୍ତର ଦିଗ ପାଚେରୀକୁ ଲାଗି ୩ଗୋଟି ଟେନିସ କୋର୍ଟ ଥାଏ । ସହଜରେ ତ ଏହା ଏକ ବଡ ଲୋକି ଖେଳ । ଦୁଇଗୋଟି ଅଧ୍ୟାପକମାନଙ୍କର, ଗୋଟିଏ ଛାତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ଥାଏ । ପ୍ରବେଶ ପଥରେ ଆସିଲେ ସିଧା କଲେଜ ଅଫିସ । ଉପର ମହାଲକୁ ଯିବା ସିଡି ପାଖରେ ଛତା ବ୍ୟାଗ ବର୍ଷାତି ରଖିଯିବାକୁ ବ୍ୟବସ୍ଥା । ପିଅନ ଚୈତନ୍ୟ ଏହାର ଦାୟିତ୍ୱରେ । ଛାତ୍ରମାନଙ୍କର କମନ ରୁମ୍‌ରେ ଦିବାଧ୍ୟାୟୀମାନଙ୍କ ପାଇଁ କେତେ ଗୁଡିଏ ଲକର ଥାଏ । ଆବଶ୍ୟକତା ଓ ବରିଷ୍ଠତା ଦୃଷ୍ଟେ ଏହା ବଣ୍ଟା ଯାଇଥାଏ । ଗୋଟିଏ ମତେ ମିଳିଲା, ଏଥିରେ ନିଜର ବହିପତ୍ର ପୋଷାକପତ୍ର ରଖି ଦିବାଧ୍ୟାୟୀମାନେ ଯାଇ ପାରୁଥିଲେ । ଛାତ୍ରମାନେ ସାଇକେଲରେ ଆସିଲେ ପ୍ରବେଶର ପଶ୍ଚିମ ଦିଗକୁ ସାଇକେଲଷ୍ଟାଣ୍ଡ ଥାଏ । ଦୈନିକ ସାଇକେଲ ସଂଖ୍ୟା ଷାଠିଏ ସତୁରୀରୁ ବେଶୀ ନଥାଏ । ଅଥଚ କଲେଜର ଛାତ୍ର ସଂଖ୍ୟା ହଜାରେ ଉପରେ । ପୂର୍ବ ପଶ୍ଚିମ

ଦୁଇ ଛାତ୍ରବାସରେ ୩୮୦ ଜଣ ଛାତ୍ରଙ୍କର ରହଣି ବ୍ୟବସ୍ଥା ଥାଏ । ଅଧିକାଂଶ ଛାତ୍ର ପଦଚାରୀ - ପାଖରେ ଥିବା ମେସ ମାନଙ୍କରୁ ହେଉ ନ ଦେଲେ ଦଳବଦ୍ଧ ଭାବରେ ଚାଲିଚାଲି କାଫଲା ଡଗରପଡ଼ା, ଚାନ୍ଦିନୀଚଉକ, ରାଣୀହାଟ ପାଖରୁ ଆସନ୍ତି । ଅଧ୍ୟାପକମାନେ ଘୋଡାଗାଡିରେ ଆସନ୍ତି, କାହାର ନିଜର ଥାଏ । କେହି ୨/୪ଜଣ ଏକାଠି ହୋଇ ଆସନ୍ତି । ଅଧକ୍ଷଙ୍କର ମଟରଗାଡ଼ି ଥାଏ, ଏହା ବାଦ ଗଣିତ ଅଧ୍ୟାପକ ବାମାଚରଣ ଦାସ ଗାଡିରେ ଆସନ୍ତି । ଛାତ୍ରମାନଙ୍କ ମଧରେ ଜଣେ ମାରୱାଡି ପିଲା ଗଜାନନ ଅଗରୱାଲା ଓ ତଦାନୀନ୍ତନ ଆଇନ ସଚିବ ଶ୍ରୀ କୋଏରୀଙ୍କର ପୁତ୍ର, ମୋଟର ଗାଡିରେ ବେଳେ ବେଳେ ଆବିର୍ଭୂତ ହୋଇ ସମସ୍ତଙ୍କର ଈର୍ଷା ପାତ୍ର ହୁଅନ୍ତି । କଲେଜ ଅଟ୍ଟାଳିକାର ପ୍ରଥମ ପରସ୍ତରେ ଆର୍ଟ୍ସବ୍ଲକ, ଏଠାରେ ସାଧାରଣ ଓ ଟ୍ୟୁଟରିଆ ଶ୍ରେଣୀମାନ ହୁଏ । ଛାତ୍ରମାନଙ୍କର କମନ ରୁମ ତଳ ମହଲାରେ । ପାଖକୁ ଲାଗି ଅଧ୍ୟାପକମାନଙ୍କର । ଛାତ୍ରୀମାନଙ୍କର ଉପରମହଲାରେ ଅଧକ୍ଷଙ୍କ ଅଫିସକୁ ଲାଗି । ସେମାନେ ଯିବା ଆସିବା କରିବାକୁ ସେଇ ପାଖରେ ଲୁହାର ଗୋଟିଏ Whirling Staircase ଘୁରା ସିଡି ଥାଏ । ୨ୟ ପ୍ରସ୍ତରେ ରସାୟନ ଓ ପଦାର୍ଥ ବିଜ୍ଞାନ ବିଭାଗ ପଛକୁ ଉଦ୍ଭିଦ ବିଜ୍ଞାନ ଓ ପ୍ରାଣୀବିଜ୍ଞାନ ବିଭାଗ ।

ମଝିରେ ବିରାଟ କନିକା ଲାଇବ୍ରେରୀ । ପଦାର୍ଥ ବିଜ୍ଞାନ ଓ ରସାୟନ ବିଜ୍ଞାନର ନିଜ୍ୱର ପ୍ରୟୋଗଶାଳା ବ୍ୟତୀତ ନିଜର Lecture Theater Gallery ଥାଏ । କଲେଜର ବଡବଡ ସଭାମାନ ଏଇଠାରେ ହୁଏ । ଧାଡି ଧାଡି ବେଞ୍ଚ ଉପରରୁ ତଳୁ ଢ଼ାଲୁହୋଇ ଥିବାରୁ ଦେଖିବା ଶୁଣିବା ସୁବିଧା ଜନକ ହୁଏ । କଲେଜ ହଲ କେବଳ ବାର୍ଷିକ ନାଟ୍ୟ ଅଭିନୟ ସମୟରେ ମିଳିଥାଏ । ପ୍ରଦେଶଗଠନ ପରେ ଓଡ଼ିଶାବିଧାନ ସଭାର ପ୍ରଥମ ଅଧିବେଶନ ୧୯୩୭ ମସିହା ଜୁଲାଇରେ ଏକ ତାରିଖରେ ଏଠାରେ ହୋଇଥିଲା ଓ ଭୁବନେଶ୍ୱରରେ ନୂତନଭାବରେ ହେବା ପର୍ଯ୍ୟନ୍ତ ତାହା ଏହିଠାରେ ବସୁଥିଲା । ବ୍ୟବସ୍ଥାପକ ସଭା ନ ଥିଲେ ମଧ ଓ ଲାଟଶାସନ ୯୩ ଧାରା ଚାଲୁଥିଲେ ବି ସେଠାରେ ଅଫିସ ଥାଏ ଓ ହଲ ବନ୍ଦ ଥାଏ । ଲାଇବ୍ରେରୀର ପାଠାଗାର ଅତି ବିରାଟ, ଛାତ୍ରମାନେ ନିଜର କାର୍ଡ ଦେଖାଇ ବହି ଆଣି ସେଠାରେ ବସି ପଢ଼ିପାରନ୍ତି । ଘରକୁ ମଧ ଶ୍ରେଣୀ ଅନୁସାରେ ଖଣ୍ଡକରୁ ଦୁଇ ଚାରିଖଣ୍ଡଯାଏ ବହି ନେବାକୁ ଅନୁମତି

ମିଳେ । ଜଣେ ଅଧ୍ୟାପକ ଲାଇବ୍ରେରୀ ଦାୟିତ୍ୱରେ ଥାଆନ୍ତି । ସେତେବେଳେ ଲାଇବ୍ରେରୀଆନ ଦାମୋଦର ମିଶ୍ର ବୟସ୍କ ଓ ଅଭିଜ୍ଞ । କେଉଁ ଶ୍ରେଣୀର କେଉଁ ବହି ପଢ଼ିବା ଉପାଦେୟ ତାହା ପରାମର୍ଶ ଦିଅନ୍ତି । ସେତେବେଳ ଲାଇବ୍ରେରୀରେ ପ୍ରାୟ ୩୦ ହଜାର ବହିଥାଏ । ଓଡ଼ିଶାରେ ଏହାଠାରୁ ବଡ କୌଣସି ଲାଇବ୍ରେରୀ ନଥାଏ । ସକାଳ ସାଢ଼େ ଆଠଟାରୁ ସାଢ଼େ ଚାରିଟାଯାଏ ଲାଇବ୍ରେରୀ ଖୋଲା ରହେ । କନିକାର ରାଜା ଏହି ବିରାଟ ଅଟ୍ଟାଳିକାର ସମସ୍ତ ବ୍ୟୟଭାର ବହନ କରିଥିବାରୁ ଏହା ତାଙ୍କ ନାମରେ କନିକା ଲାଇବ୍ରେରୀ ନାମିତ । ଆର୍ଟ୍ସ ବ୍ଲକରୁ ବିଜ୍ଞାନ ବ୍ଲକକୁ ଯିବା ରାସ୍ତାର ଉଭୟ ପାର୍ଶ୍ୱରେ ସବୁଜ ଘାସ ପଟାଳି ଥାଏ । ଧାଡ଼ିଭାବେ ଫୁଲଗଛ ସବୁ ସମୟରେ ଲାଗିଯାଏ । ମଝିରେ ସୂର୍ଯ୍ୟଘଡି । ଅଧକ୍ଷ ନିଜେ ଖ୍ୟାତନାମା ଉଦ୍‌ଭିଦବିଦ୍ । ତେଣୁ ସେ ମାଳିମାନଙ୍କୁ ଯଥୋଚିତ ନିର୍ଦ୍ଦେଶ ନିଜେ ଦେଇଥାନ୍ତି । ଲନ୍ ମଝିରେ ଘାସରେ ଚାଲିବା, ଫୁଲ ଛିଣ୍ଡାଇବା ନିୟମ ବିରୁଦ୍ଧ ଓ ଏଥିପାଇଁ ଜୋରିମନା ବ୍ୟବସ୍ଥା ଥାଏ । କଲେଜ ଅଟ୍ଟାଳିକା ଦୁଇ ପ୍ରସ୍ତ ମଧ୍ୟରେ ପୂର୍ବ ଓ ପଶ୍ଚିମ ଛାତ୍ରବାସ ଏଥିରେ ପ୍ରତ୍ୟେକରେ ପ୍ରାୟ ଦୁଇଶ ଛାତ୍ର ରହୁଥାନ୍ତି । ୩୨ ଗୋଟି ଜଣିକିଆ କୋଠରୀ ଓ ବାକି ସବୁ ଚାରିଜଣିକିଆ। ଯୁଦ୍ଧ ସମୟରେ ଜଣିକିଆ ପ୍ରାୟ ଦୁଇ ଜଣିଆ ହୋଇଗଲା । ପୂର୍ବ ହଷ୍ଟେଲରେ ପ୍ରାୟ ପଶ୍ଚିମ ଓଡ଼ିଶା ଗଡଜାତ ଓ ଓଡ଼ିଶା ଉପାନ୍ତ ଅଞ୍ଚଳର ଛାତ୍ରମାନେ ରହୁଥାଆନ୍ତି । ଅନ୍ୟଟିରେ ଚାରିଆଡର ଛାତ୍ର ରହନ୍ତି । ଛାତ୍ରାବାସ ଦାୟିତ୍ୱରେ ଜଣେ ୱାର୍ଡେନ ଜଣେ ସୁପରିଟେଣ୍ଡ ଓ ଜଣେ ସହକାରୀ ସୁପରିଟେଣ୍ଡ ଥାଆନ୍ତି । ପୂର୍ବ ହଷ୍ଟେଲର ୱାର୍ଡେନ ଅଧ୍ୟାପକ ପି.ଏସ୍. ସୁନ୍ଦର ଓ ପଶ୍ଚିମର ପ୍ରଫେସର ଡକ୍ଟର ବଳଭଦ୍ର ପ୍ରସାଦ । ସେମାନଙ୍କର ବାସସ୍ଥଳି ବ୍ୟତୀତ କିଛି ବାହାର ଘର ଥାଏ । ୱାଡେନ ପଦବୀ ଉଠାଇଦେବା ପରେ ପଶ୍ଚିମ ୱାର୍ଡେନଙ୍କ ବାସ ଘର ନୂଆ ହୋଇ ପ୍ରତିଷ୍ଠିତ ଉତ୍କଳ ବିଶ୍ୱବିଦ୍ୟାଳୟର ଅଫିସ ଭାବେ ବ୍ୟବହାର କରାଯାଇଥିଲା । ଏଥିରୁ ଏହାର ଆୟତନ ଅନୁମାନ କରିହେବ । ହଷ୍ଟେଲରେ ଦିବେଳା ଦିବ୍ୟଭୋଜନ । ଅପରାହ୍ନରେ ପୁରୀ ତରକାରୀ ଜଳଖିଆ । ଏ ସବୁ ପାଇଁ ଦେୟ ମୋଟ ଅଠର ଟଙ୍କା ପଚାଶ ପଇସା ଥିଲା । ଉପରବେଳା ଜଳଖିଆ ଇଚ୍ଛାଧିନ ଥିଲା । ନଖାଇଲେ ଏଥିରୁ ଚାରିଟଙ୍କା କମ ଦେବାକୁ ପଡୁଥିଲା । ଦୈନିକ ସକାଳ ନଅଟା ଓ ସନ୍ଧ୍ୟା ନଅଟାରେ ପରିବେଷିତ

ଭୋଜନରେ ଭାତ ଡାଲି ସାଦା ତରକାରୀ ଓ ମାଛ ମିଳୁଥିଲା । ମିଲ ଗୋଟା ପଡୁଥିଲା ୨୦ ପଇସା (ତିନି ଅଣା) ଅପରାହ୍ନ ଜଳଖିଆ ଛ ପଇସା (ଅଣାଏ) ଶନିବାର ମାଂସ ମିଲ ପଚିଶ ପଇସା (ଚାରିଅଣା) ଓ ମାସର ଶେଷ ଶନିବାର ଭୋଜି ମିଲର ମୂଲ୍ୟ ପଚାଶ ପଇସା (ଆଠଅଣା) । କାହାକୁ ଅତିଥିଭାବରେ ଜଣେ ଅନ୍ତେବାସୀ ଖାଇବାକୁ ନିମନ୍ତ୍ରଣ କଲେ ସାମାନ୍ୟ ଅଧିକ ଏହାଠାରୁ ତାକୁ ଦେବାକୁ ପଡୁଥିଲା । ହଷ୍ଟେଲରେ ରହିବାକୁ ଅତି କମ୍‌ରେ କୋଡିଏ ଟଙ୍କା ସରକାରୀ ଦେୟ ଥିଲା । ନିଜ ଖରଚ ଅଲଗା ଥିଲା, ମାତ୍ର ଯାହା ସୁବିଧା ମିଳୁଥିଲା ତାହା ତୁଳନାରେ ଏହା ବେଶି ନଥିଲା । ପଚିଶଟଙ୍କା ଖରଚ କଲେ ଜଣେ ହଷ୍ଟେଲରେ ରହି ପାରୁଥିଲା । ମାତ୍ର ସେ ହଜିଗଲା ପଇସା ଯୁଗରେ ଖୁବ୍ ଅବସ୍ଥାପନ୍ନ ସରକାରୀ କର୍ମଚାରୀ, ପ୍ରତିଷ୍ଠିତ ଜମିଦାର ବା ବ୍ୟବସାୟୀଙ୍କ ସନ୍ତାନମାନଙ୍କ ବ୍ୟତୀତ ଅନ୍ୟମାନଙ୍କ ପାଇଁ ଏହା ବିଳାସମୟ ଥିଲା । ଆମ ବର୍ଷ ଜିଲ୍ଲା ବୃତ୍ତିଧାରୀମାନଙ୍କ ମଧ୍ୟରୁ ପୁରୀର ଗୋବିନ୍ଦ ତ୍ରିପାଠୀ ଓ ସମ୍ବଲପୁରର ନିତ୍ୟାନନ୍ଦ ଦରଜି ଦଶଟଙ୍କା ବୃତ୍ତିରେ ମିଶାଇବାକୁ ଟ୍ୟୁସନ କରି ଚଳୁଥିଲେ ଓ ସେ ଦୁହେଁ ହଷ୍ଟେଲରେ ରହିପାରୁ ନଥିଲେ । ବାହାର ମେସ୍‌ରେ ଥିଲେ । ମୟୂରଭଂଜର ମହାରାଜା କଲେଜ ପ୍ରତିଷ୍ଠା ନିମିତ୍ତ ବିପୁଳ ଅର୍ଥଦାନ କରିଥିଲେ ଓ ତାଙ୍କର ପ୍ରସ୍ତାବ ଅନୁସାରେ ୧୮୬୮ ମସିହାରେ କଲେଜ ଶ୍ରେଣୀ ଖୋଲାଯାଇଥିବା ଅନୁଷ୍ଠାନର ନାମ ରେଭେନ୍ସା (ଓଡ଼ିଶାର ନ ଅଙ୍କ ଦୁର୍ଭିକ୍ଷ ସମୟର କମିସନରଙ୍କ ନାମାନୁସାରେ) କରାଯାଇଥିଲା । ମହାରାଜା ମୟୂରଭଂଜ ଲକ୍ଷେ ଟଙ୍କା ଦେଲେ । ୧୯୨୫ରେ ସେଥିରେ କଲେଜରେ ବିଦ୍ୟୁତ ବ୍ୟବସ୍ଥା କରାଯାଇଥିଲା । ହଷ୍ଟେଲ ଛାତ୍ରମାନଙ୍କ ପାଇଁ ବିଦ୍ୟୁତ ଓ ପାଣିକଳର ସୁବିଧା ଥାଏ । ଶ୍ରେଣୀମାନଙ୍କରେ ପଙ୍ଖାସବୁ ଦଶରାଛୁଟି ପରେ ଗରମ ପଡିବା ପର୍ଯ୍ୟନ୍ତ କାଢ଼ି ନିଆଯାଏ । ଆମ୍ଭେମାନେ ନାମ ଲେଖାଇବା ବେଳକୁ କଲେଜର ହୀରକ ଜୁବୁଲି ୬୦ ବର୍ଷପୂର୍ତ୍ତି ୧୯୩୬ ମସିହା ଜାନୁଆରିରେ ମହା ସମାରୋହରେ ପାଳିତ ହୋଇ ସାରିଥାଏ । କଲେଜ ହତା ମଧ୍ୟରେ ଅଧ୍ୟାପକମାନଙ୍କ ପାଇଁ ୧୦/୧୨ ଗୋଟି ବାସଗୃହ ଥାଏ । କଲେଜ ସାମନା ଷ୍ଟେସନ ରାସ୍ତାକୁ ମୁହଁ କରି ପୂର୍ବ ହଷ୍ଟେଲ ଉତ୍ତାରେ ଥିବା ଘର ଗୁଡିକ ବଡ଼ । ଏଥିରେ ପୂର୍ବେ ଆଇ.ଇ.ଏସ୍. ଅଫିସର ରହୁଥିଲେ । ପରେ ଆଇ.ସି.ଏସ୍. ଓ ଆଇ.ପି.

ଅଫିସର ଆମ୍ଭମାନଙ୍କ ସମୟରେ ରହିଥିବାର ଦେଖାଗଲା । ଅଧ୍ୟାପକ ଡକ୍ଟର ପରଶୁରାମ ମିଶ୍ର କୁଳପତି ହେବା ପରେ ଏଥିରୁ ଗୋଟିକରେ ମଧ୍ୟ ଥିଲେ । ଅନ୍ୟ ବାସସ୍ଥଳି ଗୁଡିକ ତତ୍‌କାଳୀନ ମାଲଗୋଦାମକୁ ଯିବା ରାସ୍ତାର ପଶ୍ଚିମକୁ କଲେଜ ହତାକୁ ଲାଗିକରି । ସେତେବେଳର କଲେଜର ବିରାଟ ପଡିଆରେ ଏତେଗୁଡିଏ ଘର ହୋଇ ନଥାଏ । କଲେଜ ସମୟ ଅତିକ୍ରାନ୍ତ ହେଲେଏଥିରେ ଭଲି ଫୁଟବଲ ହକି ଖେଳ ଅଭ୍ୟାସ କରାଯାଉଥାଏ । ଟେନିସ କୋର୍ଟ କଲେଜ ପ୍ରବେଶପଥ ପାଖରେ ଥାଏ । କ୍ରିକେଟ ସେତେବେଳେ କଟକରେ ପରିଚିତ ଖେଳ ନଥାଏ । ପରିଡା ସାହେବ ଓ ଅନ୍ୟ ସାହେବଙ୍କ ପିଲାମାନେ ସମୟ ସମୟରେ ଏହା ଅଭ୍ୟାସ କରିବାର ଆମ୍ଭେମାନେ ଦେଖୁ । ସେମାନେ ଓଡ଼ିଶା ବାହାରେ ପଢୁଥାଆନ୍ତି । କଲେଜର ବାର୍ଷିକ କ୍ରୀଡା ମଧ୍ୟ ଏହିଠାରେ ହୋଇଥାଏ ।

ଆଇ.ଏ.ରେ ନାମ ଲେଖାଇ ପାଠ୍ୟ ବିଷୟ ନିର୍ବାଚନ କଲି । ବାଧ୍ୟତାମୂଳକ ଇଂରେଜୀ ତିନିଶ ଓ ଓଡ଼ିଆ ଏକଶହ ନମ୍ବରର ଥାଏ ଏହା ବ୍ୟତୀତ ଆଉ ତିନୋଟି ବିଷୟ ବାଛିବାକୁ ପଡେ । ଗ୍ରୁପମାନ ଏପରି ବଛାଯାଏ ସେ ତର୍କଶାସ୍ତ୍ର ପ୍ରାୟ ସବୁଥିରେ ମିଶିଥାଏ । ଏଥିରେ ମଧ୍ୟ ବେଶି ନମ୍ବର ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ମିଳେ । ତେଣୁ ବେଶି ପିଲା ଏହା ନିଅନ୍ତି । ଶେଷ ପରୀକ୍ଷାରେ ବିଜ୍ଞାନ ଛାତ୍ରମାନେ ବେଶି ନମ୍ବର ରଖନ୍ତି । ସେମାନଙ୍କୁ ମୁକାବିଲା କରିବାକୁ କଳାଛାତ୍ରମାନେ ଗଣିତ ସଂସ୍କୃତ ଓ ତର୍କଶାସ୍ତ୍ର ଗ୍ରୁପ MLS ନେଇଥାଆନ୍ତି । ଆମ ବର୍ଷର ଦୁଇଜଣ କୃତୀ ଛାତ୍ର ସର୍ବେଶ୍ୱରଦାସ ଓ ପ୍ରହଲ୍ଲାଦ ରଥ ଏହା ନେଇଥିଲେ । ଆଇ.ଏ. ଆଇ.ଏସ୍‌ସି.ରେ ମିଳିତ ଭାବରେ ବାର୍ଷିକ ପରୀକ୍ଷାରେ ପ୍ରଥମ ହେଉଥିବା ଛାତ୍ର ଡକ୍ଟର ଭୂଷଣଚନ୍ଦ୍ର ଭଟ୍ଟାଚାର୍ଯ୍ୟ ମେମୋରିଆଲ ପ୍ରାଇଜ Bhusan Chandra Bhattacharya Memorial Prize ପାଇଥାଆନ୍ତି । ୧୯୨୮ ମସିହାରେ କଲେଜର ଜଣେ ପୁରାତନ ଛାତ୍ର ରାୟବାହାଦୁର ଅମୂଲ୍ୟନାଥ ରାୟ ବଙ୍ଗଳାର ଡେପୁଟି ପୋଷ୍ଟ ମାଷ୍ଟର ଜେନେରାଲ ଥିବା ବେଳେ ତାଙ୍କର କଲେଜରେ ପରମ ହିତୈଷୀ ଡକ୍ଟର ଭୂଷଣଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ନାମରେ ଏହା ପ୍ରତିଷ୍ଠା କରିଥିଲେ । କୃତୀଛାତ୍ର ଏଥିପାଇଁ ଦଶଟଙ୍କା ପଚାଶ ପଇସାର ପୁରସ୍କାର ପାଇଥାଆନ୍ତି । ଏହାଛଡା କଲେଜରେ ଅନ୍ୟଗୁଡିଏ ପୁରସ୍କାରର ବ୍ୟବସ୍ଥା

ଥାଏ । ଅଧ୍ୟକ୍ଷ ପରିଜା ସାହେବଙ୍କ ଦାନରେ ୧୯୨୮ ଠାରୁ ତାଙ୍କ ପିତା ବିଶ୍ୱନାଥ ପରିଜା ଓ ମାତା ଜୟନ୍ତୀ ଦେବୀଙ୍କ ନାମ ଅନୁସାରେ ବିଶ୍ୱଜୟନ୍ତୀ ପ୍ରାଇଜ ଆଇ.ଏସ୍.ସିରେ ପ୍ରଥମ ହେଉଥିବା ଛାତ୍ରଙ୍କୁ ଟ. ୧୭ ପଚାଶ ପଇସା ଦିଆଯାଉଥିଲା । ଆମ ସହପାଠୀ ହରିହରମିଶ୍ର ୧୯୪୨ରେ ଏହା ପାଇଥିଲେ । ସର୍ବାପେକ୍ଷା ଗୌରବାନ୍ୱିତ ପୁରସ୍କାର ଥିଲା ୧୯୨୭ରୁ ଜାନକୀ ନାଥ ବୋଷ ପୁରସ୍କାର । ଦଶଟଙ୍କା ପଚାଶ ପଇସା ମୂଲ୍ୟର ଏହି ପୁରସ୍କାର କଲେଜର ଶ୍ରେଷ୍ଠ ଛାତ୍ରଙ୍କୁ ଦିଆଯାଉଥିଲା । ପରବର୍ତ୍ତୀ କାଳରେ ଓଡ଼ିଶାରେ ବିଭିନ୍ନ କ୍ଷେତ୍ରରେ ସୁପ୍ରତିଷ୍ଠିତ ଅନେକ ବ୍ୟକ୍ତି ଏହି ପୁସ୍କାର ପାଇବା ଗୌରବ ଅର୍ଜନ କରିଥିଲେ । ଏହା ଛଡା ବି.ଏ., ବି.ଏସ୍.ସି.ରେ ମିଳିତଭାବେ ସର୍ବୋଚ୍ଚ ନମ୍ବର ରଖିଥିବା ଛାତ୍ରଙ୍କୁ ଟ. ୨୦ ମୂଲ୍ୟର ଉଡବର୍ଣ୍ଣ ପ୍ରାଇଜ ଦିଆଯାଉଥିଲା । ୧୮୯୯ ମସିହାରେ ବଙ୍ଗଳାର ଲେଫ୍ଟନାଣ୍ଟ ଗଭର୍ଣ୍ଣର ସାରଜନ ଉଡବର୍ଣ୍ଣଙ୍କ ନାମରେ କଟକର ରାୟବାହାଦୁର ଯୋଗେଶ୍ୱର ଚନ୍ଦ୍ର ଏହା ପ୍ରତିଷ୍ଠା କରିଥିଲେ ।

୧୯୨୭ ମସିହାରେ ମହାମହୋପାଧ୍ୟାୟ ପଣ୍ଡିତ ଜଗନ୍ନାଥ ମିଶ୍ରଙ୍କ ନାମରେ ସତର ଟଙ୍କା ପଚାଶ ପଇସା ପୁରସ୍କାର ଆଇ.ଏ. ବା ବି.ଏ.ରେ ଯିଏ ସଂସ୍କୃତରେ ଶତକରା ଷାଠିଏ ରୁ ଅଧିକ ନମ୍ବର ରଖି ପ୍ରଥମ ହେଉଥିଲେ ତାଙ୍କୁ ମିଳୁଥିଲା । ଏହା ତାଙ୍କ ଛାତ୍ରମାନେ ପ୍ରତିଷ୍ଠା କରିଥିଲେ । ଓଡ଼ିଶା ମହମ୍ମଡାନ ହଷ୍ଟେଲ ଟ୍ରଷ୍ଟ ଫଣ୍ଡ ୧୯୨୮ରେ ସ୍ଥାପନା କରାଯାଇ ଏଥିରୁ ୨ଜଣ ମୁସଲମାନ ଛାତ୍ରଙ୍କୁ ଏଠାରେ ଆଇ.ଏ. ଆଇ.ଏସ୍.ସିରେ ପ୍ରଥମ ଥାଇ ବି.ଏ., ବି.ଏସ୍.ସି, ପଢ଼ିଲେ ଟ. ୧୫ ଓ ଟ. ୧୦ ମାସିକ ଦିଆଯାଉଥିଲା । ଶେଷରେ ବୋଡାସମ୍ବର ସେନାପତି ପୁରସ୍କାର ୧୯୩୪ ମସିହାରେ ପ୍ରତିଷ୍ଠା କରାଯାଇଥିଲା ଓ ଏହା କଲେଜର ଶ୍ରେଷ୍ଠ ବକ୍ତା ପାଉଥିଲେ । ଏହାର ମୂଲ୍ୟ ଟ. ୨୧ ଥିଲା । ପ୍ରଥମ ଓଡ଼ିଆ ଆଇ.ସି.ଏସ୍. ନୀଳମଣି ସେନାପତି ସମ୍ବଲପୁରର ଡେପୁଟି କମିସନର ଥିଲେ । ତାଙ୍କର ବଦଳି ସମୟରେ ଜିଲାବାସୀଙ୍କ ପକ୍ଷରୁ ବୋଡାସମ୍ବର ପଦ୍ମପୁରର ଜମିଦାର ଅର୍ଥଦାନ କରି ଏହା ପ୍ରତିଷ୍ଠା କରିଥିଲେ । ପ୍ରଥମେ ବଲାଙ୍ଗିରର ଆଡଭୋକେଟ ଯୁଧିଷ୍ଠିର ମିଶ୍ର ଏହା ପାଇଥିଲେ, ଅଧ୍ୟାପକ ଡକ୍ଟର ଶ୍ରୀ ରାମଚନ୍ଦ୍ର ଦାସ ଓ ଅଧ୍ୟାପକ ପ୍ରଫୁଲ୍ଲ କୁମାରପତି, ଏହା କ୍ରମାଗତ ୨ ବର୍ଷ

କରି ପାଇଥିଲେ । ଆମ ସମୟରେ ଦୁଇବର୍ଷ ପ୍ରଫୁଲ୍ଲବାବୁ, ୧୯୪୨ରେ, ବିରଞ୍ଚି ନାରାୟଣ ଦାସ (ପରେ ଓ.ଏ.ଏସ୍.) ଓ ୧୯୪୩ରେ ଅଧ୍ୟାପକ ସର୍ବେଶ୍ୱର ଦାସ ଏହା ପାଇଥିଲେ । ବିଶ୍ୱବିଦ୍ୟାଳୟର ଚାନସେଲର ଡିବେଟ କପ ପୂର୍ବରୁ ଏହି ପୁରସ୍କାର ବିଜେତା ଓଡ଼ିଶାରେ ଜଣେ ସୁବକ୍ତା ଭାବରେ ନିଜର ପ୍ରତିଷ୍ଠା ଜାହିର କରି ପାରୁଥିଲେ ।

ଏ ସବୁ ସାମୟିକ ପ୍ରାଇଜ । ଏହା ବାଦ ଆଇ.ଏ. ଓ ବି.ଏ. କଳା ଓ ବିଜ୍ଞାନ ନିମିତ୍ତ କେତେଗୁଡିଏ ବୃତ୍ତି ମିଳୁଥାଏ । ମେଧାବୀ ଛାତ୍ରମାନେ ଏହା ପାଇଥାଆନ୍ତି । ମାତ୍ର ଏହାର ସଂଖ୍ୟା ସୀମିତ । ପ୍ରଥମ ବର୍ଷ ମାଟ୍ରିକ ପରୀକ୍ଷାରେ ମାସିକ ପଚିଶ ଟଙ୍କା କୋଡିଏ ଟଙ୍କା, ପନ୍ଦର ଟଙ୍କା ଓ ଜିଲ୍ଲାର ଦଶଟଙ୍କିଆ ବୃତ୍ତିକଥା ଲେଖିଛି । ଅନୁଗୁଳ ଓଡ଼ିଶା ପ୍ରଦେଶ ଗଠନ ପରେ ଏହାର ଜିଲା ମାନ୍ୟତା ହରାଇଥିଲେ ମଧ୍ୟ ଅନୁଗୁଳ ସବଡିଭିଜନରୁ ଯେ ସର୍ବୋଚ୍ଚ ନମ୍ବର ରଖୁଥିଲେ ତାଙ୍କୁ ଗୋଟିଏ ଦଶଟଙ୍କିଆ ବୃତ୍ତି ମିଳୁଥିଲା । ଏହି ବୃତ୍ତିଗୁଡିକ କେବଳ ମୋଗଲବନ୍ଦୀ ଓଡ଼ିଶାର ହାଇସ୍କୁଲରୁ ଉତ୍ତୀର୍ଣ୍ଣ ଛାତ୍ରମାନଙ୍କୁ ମିଳୁଥିଲା । ଗଡଜାତର ପରୀକ୍ଷାର୍ଥୀ ଯେତେ ମେଧାବୀହେଲେ ମଧ୍ୟ ଏଥିରୁ ବଞ୍ଚିତ ହେଉଥିଲେ । ମୋର ବାଲ୍ୟବନ୍ଧୁ ସୂର୍ଯ୍ୟକାନ୍ତ ଭବାନି ପାଟଣାରୁ ପାସକରି କଳାହାଣ୍ଡି ମହାରାଜାଙ୍କ ବୃତ୍ତି ପାଇ ପଶ୍ଚିମ ହଷ୍ଟେଲରେ ଅନ୍ତେବାସୀ ଥିଲେ । ଢ଼େଙ୍କାନାଳ ମୟୁରଭଞ୍ଜ ଓ ସୋନପୁରର ଛାତ୍ରମାନଙ୍କ ପାଇଁ କେତେଗୁଡିଏ ବୃତ୍ତି ରହିଥିଲା । ସେହି ଗଡଜାତ ରାଜ୍ୟରୁ ଛାତ୍ର ନଥିଲେ ତାହା ଅନ୍ୟ ଗଡଜାତର ଅଧିବାସୀ ଛାତ୍ରକୁ ମିଳୁଥିଲା ।

ପୁରୀ ଜିଲ୍ଲାର ଛାତ୍ର ଜଣେ ମାସିକ ପାଞ୍ଚଟଙ୍କା ବେଙ୍କର ବୃତ୍ତି ପାଉଥିଲେ । ସମ୍ବଲପୁରରୁ ପାସ କରି ଆସୁଥିବା ଛାତ୍ର ମାନଙ୍କ ପାଇଁ ଏକ କାଳୀନ ବାର୍ଷିକ ଶହେ ଟଙ୍କାର ତିନିଗୋଟି ମାସିକ ସ୍ମୃତି ବୃତ୍ତି ଉପଲବ୍ଧ ଥିଲା । ଏ ବୃତ୍ତି ଓ ପୁରସ୍କାର ସବୁ ବର୍ତ୍ତମାନ ପରିବର୍ତ୍ତିତ ପରିସ୍ଥିତିରେ ଏହାର ଗୁରୁତ୍ୱ ହରାଇ ଅଛି । ପୁରସ୍କାରମାନ ଅଳ୍ପ ମୂଲ୍ୟର ହୋଇଥିବାରୁ ଓ ଏହା ଜମାକରାଯାଇଥିବା ଅର୍ଥର ସୁଧ ଉପରେ ନିର୍ଭର କରୁଥିବାରୁ ମୁଦ୍ରାସ୍ଫିତି ଫଳରେ ଏହାର ଉପାଦେୟତା ଓ ମର୍ଯ୍ୟାଦା ହ୍ରାସ ପାଇଅଛି । କ୍ରୀଡାରେ ପାରଦର୍ଶିତା ନିମିତ୍ତ ସେମିତି ଅନେକଗୁଡିଏ କପ ଦିଆଯାଉଥିଲା । ଦଉଡାରେ ଡିଭକ କପ, ଭଲିରେ ପରିଜା କପ, ସନ୍ତରଣରେ ହୀରାଖଣ୍ଡ କପ, ଟେନିସରେ

ମୋତି କପ୍, ଏହା ମଧ୍ୟରେ ବିଶେଷ ଲୋକପ୍ରିୟ ଥିଲା । ଶ୍ରେଷ୍ଠ ଖେଳାଳି ଚମ୍ପିଅନ କପ ଓ ବିଭିନ୍ନ ଶ୍ରେଣୀ ମଧ୍ୟରେ ଫୁଟବଲରେ ପ୍ରଥମ ପିନ୍ସପାଲ କପ ଲାଭର ଗୌରବ ଅର୍ଜନ କରୁଥିଲେ ।

ତ୍ରୈମାସିକ Ravenshavian କଲେଜର ମୁଖପତ୍ର । ଛାତ୍ର ଓ ଅଧ୍ୟାପକମାନଙ୍କର ବହୁ ଉପାଦେୟ ପ୍ରବନ୍ଧ କବିତା ଆଦି ଏଥିରେ ପ୍ରକାଶିତ ହୁଏ । ଏହା ବ୍ୟତୀତ ଅଧ୍ୟାପକ ଭି.ଭି.ଜନ ଯୋଗ ଦେଲା ପରେ College Weekly ନାମରେ ଗୋଟିଏ ସାପ୍ତାହିକ ୪/୬ ପୃଷ୍ଠାର ପତ୍ରିକା ପ୍ରତି ଶୁକ୍ରବାର ବାହାର କରୁଥିଲେ । ଏଥିରେ କଲେଜର ବିଭିନ୍ନ ସଂବାଦ ଅଧ୍ୟାପକ ଓ ବିଭିନ୍ନ ସମିତି ମାନଙ୍କର କାର୍ଯ୍ୟକଳାପ ବ୍ୟତୀତ କିଛି ହାଲୁକା ରଙ୍ଗରସ ଇଂରାଜୀ ଭାଷାରେ ପ୍ରକାଶ ପାଉଥିଲା । ଯୁଦ୍ଧ ଘନେଇବା ସହିତ ଛାପାକାଗଜ ଅଭାବ ଓ ଦରବୃଦ୍ଧି ସହିତ ଏହା ବୋଧହୁଏ ବନ୍ଦ ହୋଇଗଲା ।

ସହଜେ ମୁଁ ତ ଟ୍ୟୁସନ କରି ପଢୁଥିଲି । ନିଜର ବହିପତ୍ରର ଅଭାବ । ଯୁଦ୍ଧ ବଜାରରେ କେତେକ ବିଲାତି ଛାପା ବହି ମଧ୍ୟ ଦୁର୍ଲଭ ଥାଏ । ସାଙ୍ଗମାନଙ୍କପାଖରୁ ଓ ଦିବାଧ୍ୟାୟୀ ସଂଘ ଦେଉଥିବା ଧାର ବହି lending library ରେ ପଢ଼ି କାମ ଚଳାଇବା ଲକ୍ଷ୍ୟରେ ଅର୍ଥନୀତି ଇତିହାସ ଓ ତର୍କଶାସ୍ତ୍ର ନେଲି । ବାଇଧର ଇତିହାସ ଓ ତର୍କଶାସ୍ତ୍ର ନେଇଥାଏ । ଜୟକୃଷ୍ଣ ଅର୍ଥନୀତି ନେଲା । ଆମର ଇଂରେଜୀ ଅଧ୍ୟାପକ କୃତ୍ତିବାସ ସାମନ୍ତରାୟ ଜନାର୍ଥନ ମହାନ୍ତି, ନାରାୟଣ ମୋହନ ଦେ, ଗିରିଜା ଶଙ୍କର ରାୟ । ବିଭାଗୀୟ ମୁଖ୍ୟ ଅଧ୍ୟାପକ ପି.ଏସ୍. ସୁନ୍ଦରମ, ବିଏ ଲଣ୍ଡନ ତଳ ଶ୍ରେଣୀରେ ପଢ଼ାଉ ନ ଥାନ୍ତି । ନୂତନ ହୋଇ ଯୋଗଦାନ କରିବା ଅଧ୍ୟାପକ ଭି.ଭିଜନ ବିଏ ଲଣ୍ଡନ ଆମ୍ଭମାନଙ୍କୁ ନାଟକ Journey's End ଚିତ୍ତାକର୍ଷକ ଭାବେ ପଢ଼ାଇଲେ । ସାଧାରଣ କ୍ଲାସ ଛଡା ଟ୍ୟୁଟୋରିଆଲ କ୍ଲାସ ମାନଙ୍କରେ ମଧ୍ୟ ସେମାନେ ଆମ୍ଭମାନଙ୍କର ସନ୍ଦେହ ମୋଚନ କରି ଆମ୍ଭମାନଙ୍କର ରଚନା ସଂଶୋଧନରେ ବିଶେଷ ସହାୟକ ଥାଇ ପରୀକ୍ଷାରେ ଉତ୍ତରଦେବା କାଇଦା ଦଉଥିଲେ । ସେତେବେଳେ ଏତେପ୍ରକାର ପ୍ରଶ୍ନ ଉତ୍ତର ଯୁକ୍ତ test paper ମିଳୁ ନଥିଲା । Key book ଥାଏ, କଲିକତା ବା ପାଟଣାରେ ଛପା ହୋଇ

ଆସେ । ଓଡ଼ିଆରେ ଆର୍ତ୍ତବଲ୍ଲଭ ମହାନ୍ତି, କୁଞ୍ଜବିହାରୀ ତ୍ରିପାଠୀ । ଶେଷ ବର୍ଷ ସବୁଜକବି ବୈକୁଣ୍ଠନାଥ ପଟ୍ଟନାୟକ ଯୋଗଦେଲେ ।

ଓଡ଼ିଆ ପଦ୍ୟ ପଢ଼ାଇଲେ । କିଛିଦିନ ପାଇଁ ଡମ୍ବରୁ ଧର ଦାସ ମଧ୍ୟ ଯୋଗଦେଲେ । ଓଡ଼ିଆ କ୍ଲାସରେ ବହୁତ ଛାତ୍ର । କଳା ବିଜ୍ଞାନ ମିଶି ଦୁଇ ଶହରୁ ଅଧିକ ଏକାଠି ହୁଅନ୍ତି । ସେମାନଙ୍କର ବିଶୃଙ୍ଖଳ ଆଚରଣ କେବଳ ଅଧ୍ୟାପକ ଆର୍ତ୍ତବଲ୍ଲଭ ଏକା ମୁକାବିଲା କରିପାରୁଥିଲେ । ଓଡ଼ିଆ ସଂସ୍କୃତ ଗୋଟିଏ ବିଭାଗ । ବାଧ୍ୟତାମୂଳକ ଓଡ଼ିଆ କ୍ଲାସ ସପ୍ତାହକେ ଥରେ ଥାଏ । ଅର୍ଥନୀତିରେ ଅଧ୍ୟାପକ ଥିଲେ ଭୈରବ ନାଥ ରୋହାତର୍ଗୀ B.Sc. (Econ Lond), ପରେ ଦେଶ ସ୍ୱାଧିନ ହେବାରୁ ସେ ପ୍ରଶାସନିକ ସେବାରେ IAS ନିଯୁକ୍ତିପାଇ ବିହାରରେ କମିସନର ଓ ସାଧାରଣ ଲୋକ ସେବା ଆୟୋଗର ଅଧ୍ୟକ୍ଷ Chairman PSC ଭାବେ ଅବସର ନେଲେ । ବିଭାଗୀୟ ମୁଖ୍ୟ ସୁରେଶଚନ୍ଦ୍ର ବର୍ଦ୍ଧନ ଅଭିଜ୍ଞ । ଛାତ୍ରବତ୍ସଳ ପରିଣତ ବୟସର । ନୂତନଭାବେ ଅଧ୍ୟାପକ ହୋଇଥିବା ସଦାଶିବ ମିଶ୍ର ଶ୍ରେଣୀର ଶ୍ରେଷ୍ଠ ଆକର୍ଷଣ ଥାଆନ୍ତି । ତାଙ୍କ ବର୍ଣ୍ଣନାଶୈଳୀ ହେତୁ ଶ୍ରେଣୀରେ ବାହାର ଛାତ୍ରମାନେ ମଧ୍ୟ ଅର୍ଥନୀତିର ତତ୍ତ୍ୱ ଜାଣିବାକୁ ଆସି ବସନ୍ତି । ଇତିହାସରେ ଅଧ୍ୟାପକ ଘନଶ୍ୟାମ ଦାସ । BA (Lond) ଓ ଅଧ୍ୟାପକ ଜଗଦାନନ୍ଦ ମହାନ୍ତି ଯଥାକ୍ରମେ ଇଉରୋପ ଓ ଭାରତ ଇତିହାସ (୧୫୨୬ ପର୍ଯ୍ୟନ୍ତ) ପଢ଼ାନ୍ତି । ତର୍କଶାସ୍ତ୍ରରେ ଅଧ୍ୟାପକ ବିପିନ ବିହାରୀ ରାୟ ବିଭାଗ ମୁଖ୍ୟ । ତାଙ୍କର ଅବସର ନେବା ସମୟ ପାଖେଇ ଥାଏ । ସେ ବେଶିଦିନ ଛୁଟିରେ ଥାଇ ଆମ୍ଭମାନଙ୍କୁ ପ୍ରାୟ ପଢ଼ାଇ ନାହାନ୍ତି । ଅଧ୍ୟାପକ ରତ୍ନାକର ପତି ଓ ଅଧ୍ୟାପକ ଦାମୋଦର ମିଶ୍ର ଆମ୍ଭମାନଙ୍କୁ ସାଧାରଣ ଶ୍ରେଣୀରେ ପଢ଼ାଇବା ସହିତ ଟ୍ୟୁଟୋରିଆଲ ଶ୍ରେଣୀରେ ସନ୍ଦେହମୋଚନ କରନ୍ତି ।

ପରୀକ୍ଷା ଦେବା ପାଇଁ ଜଣେ ଛାତ୍ର ପ୍ରଦତ୍ତ ଲେକଚର ଟ୍ୟୁଟୋରିଆଲ ମଧ୍ୟରୁ ଶତକରା ୭୫ ଭାଗରେ ଯୋଗଦେବା ବାଧ୍ୟତାମୂଳକ । ଏହା ନ ହେଲେ ପରୀକ୍ଷାରେ ବସିବାକୁ ଅନୁମତି ମିଳୁ ନଥିଲା । ଦଶଭାଗ କମ ଥିଲେ ତାହା Condone ମାର୍ଜନା କରାଯାଉଥିଲା । ମାତ୍ର ତାଠାରୁ ବେଶି ଗରହାଜର ଅକ୍ଷମଣୀୟ ଥିଲା । ଶ୍ରେଣୀ ଓ କଲେଜରେ ଶୃଙ୍ଖଳା ରକ୍ଷାରେ ଏହାର ଗୁରୁତର ପ୍ରଭାବ ଥିଲା । ୨ୟ ଓ ୪ର୍ଥ ବର୍ଷ

ଶେଷରେ ବିଶ୍ୱବିଦ୍ୟାଳୟ ପରୀକ୍ଷା ହେଉଥିଲା । ଏହା ଫେବୃୟାରୀ ମାସରେ ହେବା ବରଷକ ଆଗରୁ ଜଣାଥାଏ । କଲେଜ କାଲେଣ୍ଡରରେ ଲେଖାଥାଏ । ଆଇ.ଏ. ପାଇ ଟ. ୩୦, ବି.ଏ. ରେ ପାସ ପାଇ ଟ. ୪୦ ଓ ଅନର୍ସ ପାଇ ଏହି ଫିଜ ପଚାଶ ଟଙ୍କା ଥିଲା । କଳା ଓ ବିଜ୍ଞାନ ଉଭୟ ପାଇଁ ଧାର୍ଯ୍ୟ ଫିଜ ଏକ ଥିଲା । ଏହା ବାଦେ ୧ମ ଓ ୩ୟ ବର୍ଷରେ କଲେଜରେ ଆଭ୍ୟନ୍ତରୀଣ ପରୀକ୍ଷା ହେଉଥିଲା । ୧ମ ବର୍ଷର ଛାତ୍ର ବଡ଼ଦିନ ଛୁଟି ଆଗରୁ ଅର୍ଦ୍ଧବାର୍ଷିକ ପରୀକ୍ଷା ଓ ଅପ୍ରେଲ ମାସରେ ବାର୍ଷିକ ପରୀକ୍ଷା ଦେଇ ୨ୟ ବର୍ଷକୁ ଯାଉଥିଲେ । ୩ୟ ବର୍ଷର ଛାତ୍ରମାନଙ୍କର ସେମିତି ପରୀକ୍ଷା ଥାଏ । ୨ୟ ଓ ୪ର୍ଥ ବର୍ଷର ଛାତ୍ରମାନେ ସେମାନଙ୍କର ପ୍ରିଟେଷ୍ଟ ପରୀକ୍ଷା ପୂଜା ଛୁଟି ଆଗରୁ ଦେଉଥିଲେ ଓ ସେମାନଙ୍କର ଟେଷ୍ଟ ପରୀକ୍ଷା ବଡ ଦିନ ଛୁଟି ଆଗରୁ, ନ ହେଲେ ଜାନୁଆରୀରେ ଦେଉଥିଲେ । ଏହି ପରୀକ୍ଷାର ଖାତା ସବୁ ମୂଲ୍ୟାୟନ ପରେ ଅଧ୍ୟାପକମାନେ ଛାତ୍ରମାନଙ୍କୁ ଫେରାଇ ଦେଉଥିଲେ ଓ ସେମାନେ ସହପାଠୀମାନଙ୍କର ଖାତା ଦେଖି ନିଜର ଦୋଷତ୍ରୁଟି ନିର୍ଣ୍ଣୟ କରି ଦୂର କରିବାକୁ ଉଦ୍ୟତ ଥିଲେ । ୨ୟ ଓ ୪ର୍ଥ ଶ୍ରେଣୀକୁ ପ୍ରମୋସନ ପାଇ ଏହି ପରୀକ୍ଷା ଓ ଟ୍ୟୁଟୋରିଆଲ କ୍ଲାସ ପରୀକ୍ଷାର ନମ୍ବର ମିଶାଇ ଯୋଗ୍ୟତା ନିର୍ଦ୍ଧାରଣ କରାଯାଉଥିଲା । ଏହି ପରୀକ୍ଷା ନ ଦେଲେ ପତ୍ର ପିଛା ଏକ ଟଙ୍କା ଜୋରିମାନା ଦେବାକୁ ପଡୁଥିଲା । ପ୍ରମୋସନ ମଧ୍ୟ ଏଥିପାଇଁ ବନ୍ଦ କରାଯିବାର ବ୍ୟବସ୍ଥା ଥିଲା । ଅଭିଜ୍ଞ ଦୂରଦୃଷ୍ଟି ସଂପନ୍ନ ଶିକ୍ଷାବିତ୍‌ମାନେ ପରବର୍ତ୍ତୀକାଳରେ ଏହିସବୁ ପରୀକ୍ଷା ଉଠାଇଦେଲେ ମଧ୍ୟ ଏହାର ଯୌକ୍ତିକତା ପୁରାତନ ଛାତ୍ର ଓ ଅଭିଭାବକମାନଙ୍କର ହୃଦବୋଧ ହେଲା ନାହିଁ । ବର୍ତ୍ତମାନପରି ଶ୍ରେଣୀପାଠ ଛାଡ଼ି ବାହାରେ କଲେଜରେ ଦାଦାଗିରି କରିବାର ସୁଯୋଗ ଏଥିରେ ପ୍ରାୟ ନଥିଲା । ଗଣ୍ଡା ଗଣ୍ଡା କୋଚିଂ ସେଣ୍ଟରରେ ଅଧ୍ୟାପକମାନେ ସମାନ୍ତରାଳ କଲେଜ ଚଳାଇ ଅର୍ଥର ଉପାର୍ଜନର ଏହା ବୋଧହୁଏ ପୂର୍ବାଭାସ ଥିଲା । ଟ୍ୟୁଟୋରିଆଲ ଶ୍ରେଣୀମାନ ୧୦/ ୧୨ ଜଣ ଛାତ୍ରଙ୍କୁ ନେଇ ଗଠିତ ହେତୁ ଏଥିରେ ଅଧ୍ୟାପକ ଓ ଛାତ୍ର ପରସ୍ପରକୁ ଆନ୍ତରିକ ଭାବେ ଜାଣିବାର ସୁଯୋଗ ମିଳୁଥିଲା । ସେମାନେ ମଧ୍ୟ Home Task ଦେଖିବାବେଳେ ଛାତ୍ରର ସୁବିଧା ଅସୁବିଧା ଜାଣି ତାହା ଅପନୋଦନ ନିମିତ୍ତ ଯତ୍ନଶୀଳ ଥିଲେ । କଲେଜ ହଷ୍ଟେଲରେ ଚାରିଶହ ପିଲା ପ୍ରାୟ ରହୁଥିଲେ । ଛାତ୍ରସଂଖ୍ୟା ପ୍ରାୟ

ବାରଶହ । ଅନ୍ୟ ଛାତ୍ରମାନଙ୍କ ପାଇଁ କଟକ ସହରରେ ବିଭିନ୍ନ ମେସ ଓ ବ୍ୟକ୍ତି ବିଶେଷଙ୍କର ଘର ପ୍ରଧାନ ଆଶ୍ରୟ ସ୍ଥଳୀ । ଯୁଦ୍ଧ ସମୟରେ ଲୁଗାପଟା, କାଗଜପତ୍ର, କେରୋସିନି, ଚିନି, ଚାଉଳର ଅଭାବ ଏହିମାନେ ବିଶେଷ ଅନୁଭବ କଲେ । ଏହି ସମସ୍ୟାର ସମାଧାନ ନିମିତ୍ତ ସମୁଦାୟ କଟକ ସହରରୁ କୋଡିଏ ନା କେତୋଟି ଟିଉଟରିଆର ଡିଭିଜନ Tutorial Division ରେ ବିଭକ୍ତ କରାଯାଇ ଜଣେ ଜଣେ ଅଧ୍ୟାପକଙ୍କୁ ଏହାର ଦାୟିତ୍ୱରେ ରଖାଯାଇଥାଏ । ସେ ସଂପୃକ୍ତ ଅଞ୍ଚଳରେ ରହୁଥିବା ଛାତ୍ରମାନଙ୍କ ସହିତ ବ୍ୟକ୍ତିଗତ ସଂପର୍କ ସ୍ଥାପନ କରି ତାଙ୍କର ସୁବିଧା ଅସୁବିଧା ବୁଝି ଏ ଦିଗରେ ସହାୟକ ଥିଲେ ।

ଏହିପରି ଦାୟିତ୍ୱରେ ଥିବା ଜଣେ ଅଧ୍ୟାପକ ରତ୍ନାକର ପତି । ଆମକୁ ଦର୍ଶନ ଶାସ୍ତ୍ର ଆଇ.ଏ.ରେ ତର୍କଶାସ୍ତ୍ର Logic ପଢ଼ାଉଥିଲେ । ପଢ଼ାଇବା ବେଳେ ତନ୍ମୟ ହୋଇ ପାରିପାର୍ଶ୍ୱିକ ଅବସ୍ଥା ଭୁଲିଯାଆନ୍ତି । ରାଞ୍ଚିରୁ ଏଠାକୁ ବଦଳି ହୋଇ ଆସିବାବେଳେ ଜଣେ ସାହେବ ଅଧ୍ୟକ୍ଷ TC Orgill I.E.S । ତାଙ୍କୁ କଲେଜ କୋଷାଧ୍ୟକ୍ଷ Bursar ର ଦାୟିତ୍ୱ ଦେଲେ । ସେ ଏହା ଗ୍ରହଣ କରବା ପୂର୍ବରୁ ଅଧ୍ୟକ୍ଷଙ୍କୁ ଜଣାଇଲେ ଯେ ସେ ଟଙ୍କା ପଇସା ଛୁଅଁନ୍ତି ନାହିଁ । ସାହେବ ଅଧ୍ୟକ୍ଷ ଏହା ଦାୟିତ୍ୱ ଖସାଇଦେବାର ଏକ ଛଳନା ବୋଲି ଭାବିଲେ । କଲେଜର ମୁଖ୍ୟ କିରାଣି ଜଗନ୍ନାଥ ମିଶ୍ର ତାଙ୍କର ବିଶ୍ୱସ୍ତ । ତାଙ୍କୁ ସେ ନିଜର ମତାମତ ରତ୍ନାକରଙ୍କ ଉପରେ ଏହି ପରିସ୍ଥିତିରେ ଶୁଣାଇଲେ । ଜଗନ୍ନାଥ ମିଶ୍ର ବୁଝାଇ ଦେଲେ ତାଙ୍କ ଦରମା ତାଙ୍କ ତରଫରୁ ସେ ନିଜେ ଗ୍ରହଣ କରନ୍ତି । ନିର୍ଦ୍ଧାରିତ ପରିମାଣ ଅର୍ଥ ତାଙ୍କ ଘରକୁ ପଠାନ୍ତି । ବର୍ଷକରେ ତାଙ୍କର ଦୁଇଜୋଡା ପାଇଜାମା ଦୁଇଯୋଡ଼ା ବେକ ଚିପା କୋର୍ଟ, ୪/୬ ଖଣ୍ଡ ଫତେଇ ଓ ସେମିତି କେତେଖଣ୍ଡ ଧୋତି ଗାମୁଛା ସେ କିଣି ନିଅନ୍ତି । ତାଙ୍କର ସଉକ ବିଭିନ୍ନ ବହି କିଣିବା । ବହି ରାଣୀହାଟ ବ୍ରଜବନ୍ଧୁ ମିଶ୍ରଙ୍କ ଉତ୍କଳବୁକ୍ ଏଜେନ୍ସିରୁ ସେ ଆଣନ୍ତି ଓ ବିଲ୍ ଦେୟ ଜଗନ୍ନାଥ ମିଶ୍ରେ ଦାଖଲ କରନ୍ତି । ବ୍ରଜବନ୍ଧୁ ମିଶ୍ର ଜଣେ ଜାତୀୟତାବାଦୀ ମାଇନର ସ୍କୁଲ ଶିକ୍ଷକ ଥିଲେ । ଅସହଯୋଗ ଆନ୍ଦୋଳନ ସମୟରେ ଚାକିରି ଛାଡ଼ିଦେଲେ । ଖଦଡ଼ ପିନ୍ଧନ୍ତି । ତାଙ୍କ ବହି ଦୋକାନ କଲେଜର ନିକଟତମ ପୁସ୍ତକ ଭଣ୍ଡାର । କଲେଜ ବହି ବ୍ୟତୀତ ସେ ମହାତ୍ମା ଗାନ୍ଧି ଓ ପଣ୍ଡିତ ଜହରଲାଲ ନେହେରୁଙ୍କ

ସମସ୍ତ ରଚନାବଳି ପ୍ରାୟ ବିକ୍ରୟ ପାଇଁ ରଖିଥାଆନ୍ତି । ଫଳରେ ଜାତୀୟତାବାଦୀ ସାହିତ୍ୟ ପ୍ରଚାରରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା । ଅଧ୍ୟାପକ ରତ୍ନାକର ଅନେକ ଛାତ୍ରଙ୍କୁ ସାହାଯ୍ୟ କରନ୍ତି । ସେମାନେ ଜଗନ୍ନାଥମିଶ୍ରଙ୍କୁ ଶୁଣାଇ ତାଙ୍କଠାରୁ ନିର୍ଦ୍ଦିଷ୍ଟ ଅର୍ଥ ମାସିକ ବା ଏକକାଳୀନ (ପରୀକ୍ଷା ଫିଜ ଆଦି) ଦେଇଥାଆନ୍ତି । ତାଙ୍କର କୌଣସି ମୁଦ୍ରା ଛୁଇଁବାର ଅବକାଶ ନଥାଏ । ସାହେବ ଶୁଣି ଆଶ୍ଚର୍ଯ୍ୟ ହେଲେ ଓ ତାଙ୍କୁ ଯଥୋଚିତ ମର୍ଯ୍ୟାଦା ଦେଲେ । ଅନେକ ପିଲାଙ୍କୁ ସେ ଦୁଃସ୍ଥ ଜାଣିଲେ ସାହଯ୍ୟ କରୁଥିଲେ । ନିଜେ ଏକ ଦୁଃସ୍ଥ ବ୍ରାହ୍ମଣ ପରିବାରରେ ଜନ୍ମହୋଇ ବୃତ୍ତିପାଇଁ ଏମ୍.ଏ. ପର୍ଯ୍ୟନ୍ତ ପଢ଼ିଲେ । ତାଙ୍କର ଚରିତ୍ରବତ୍ତାରେ ପ୍ରଭାବିତ ହୋଇ ସରକାରୀ କର୍ମଚାରୀ ଜାଣି ମଧ୍ୟ ପଣ୍ଡିତ ଗୋପବନ୍ଧୁ ଦାସ ତାଙ୍କୁ ନିଜର ଜାମାତାଭାବେ ବରଣ କରିଥିଲେ । ଆମ ଟିଉଟୋରିଆଲ ଡିଭିଜନର ସେ ଦାୟିତ୍ୱରେ । ମୁଁ ଅବଶ୍ୟ ଜଣଙ୍କ ଘରେ ଥାଏ । ଅସୁବିଧା ମୋରପ୍ରାୟ ସାମାନ୍ୟ ଥାଏ । ମେସରେ ଥିବା ବିଦ୍ୟାର୍ଥୀମାନେ ନାନା ସମସ୍ୟାର ସମ୍ମୁଖୀନ । ଅଧ୍ୟାପକ ସେହି ମେସରେ ପହଞ୍ଚି ସମସ୍ୟା ସମାଧାନର ସୂତ୍ର ବାହାର କରନ୍ତି । ଦିନେ ଜଣେ ଛାତ୍ର ଅନ୍ତେବାସୀ ନ ଥିବାର ଦେଖି ପ୍ରକୃତରେ ସେ ଟ୍ୟୁସନ କରିବାକୁ ଯାଇଛନ୍ତି ନା ଅନ୍ୟ କୁଆଡେ ତାହା ଯାଞ୍ଚ କରିବାକୁ ବସି ରହିଲେ । ଛାତ୍ର ଫେରିଲେ । ୨ୟ ବାର୍ଷିକ ଛାତ୍ର । ତାଙ୍କର ଆର୍ଥିକ ସ୍ଥିତି ପରିବାରର ଅର୍ଥନୈତିକ ବ୍ୟବସ୍ଥା ଆଦି ଜାଣିବା ପରେ ନିଜେ ମାସକୁ ତାଙ୍କୁ ବର୍ଷ ଶେଷ ଯାଏ ମାସିକ ଏକ ନିର୍ଦ୍ଦିଷ୍ଟ ଅର୍ଥ ସାହାଯ୍ୟ ପ୍ରତିଶ୍ରୁତି ଦେଲେ ଓ ପ୍ରତିମାସ ଆରମ୍ଭରେ ଜଗନ୍ନାଥ ମିଶ୍ରଙ୍କଠାରୁ ଏହା ଅଣିବାକୁ ବତାଇଲେ । ତାଙ୍କର ଜୀବନ ପ୍ରକୃତରେ ଥିଲା ଦାର୍ଶନିକର ଦୃଷ୍ଟି । ଅର୍ଥ ଅର୍ଜନ କରାଯାଇଛି ବ୍ୟୟ ନିମିତ୍ତ ଓ ଏହାର ସୁଉପଯୋଗ ଅର୍ଜନର ଆବଶ୍ୟକତା ପ୍ରତିପାଦନ କରିବ ।

ଆଉଜଣେ ସେମିତି ତର୍କଶାସ୍ତ୍ରର ଅଧ୍ୟାପକ ଦାମୋଦର ମିଶ୍ର । ସେ ଛାତ୍ରବତ୍ସଳ ଥାଇ ସେମାନଙ୍କର ଚିନ୍ତାଧାରାକୁ ପ୍ରଭାବିତ କରୁଥିଲେ । ସେ ଜଣେ ମେଧାବୀ ଛାତ୍ର ଥିଲେ । କଟକ କଲେଜିଏଟ ସ୍କୁଲ୍, ରେଭେନ୍ସା କଲେଜରେ ପଢ଼ି ଶେଷରେ ପାଟଣାରୁ ଦର୍ଶନଶାସ୍ତ୍ରରେ ଏମ୍.ଏ. ପାସ୍ କରିଥାନ୍ତି । ତାଙ୍କ ସହପାଠୀ ସୋମନାଥ ମିଶ୍ର ୧୯୩୬ ମସିହାରେ ଡେପୁଟି କଲେକ୍ଟର ହେଲେ । ସେ ବହୁବିଳମ୍ବରେ ରେଭେନ୍ସା କଲେଜରେ

ଦର୍ଶନ ଅଧ୍ୟାପକ ହେଲେ । ସାଧାରଣ ଓ ଟ୍ୟୁଟୋରିଆଲ ଉଭୟତ୍ର ସେ ନିଜ ପାଣ୍ଡିତ୍ୟର ପରିଚୟ ପ୍ରଦାନ କରୁଥିଲେ । ଛୋଟ କ୍ଲାସରେ ସେ ପ୍ରତି ଛାତ୍ରକୁ ଜାଣି ତାକୁ ବ୍ୟକ୍ତିଗତ ମେଧା ବା ଦୋଷଗୁଣର ବିଚାରକରି ପରାମର୍ଶ ଦେଉଥିଲେ । କେଉଁ ପୁସ୍ତକ ଅଧ୍ୟୟନ ଦରକାର, ଭବିଷ୍ୟତ ଜୀବନ ସୁଖମୟ ଓ ଋଦ୍ଧିମନ୍ତ କରିବାକୁ କଣ ଦରକାର ତାହା ସେ ଗ୍ରନ୍ଥକାରମାନଙ୍କ ଲେଖାରୁ ଉଦ୍ଧୃତ କରି ପ୍ରାଞ୍ଜଳ ଭାବରେ ବୁଝାଉଥିଲେ । ମୋର ବି.ଏ.ରେ ଦର୍ଶନ ନଥିବାରୁ ମାତ୍ର ୨ ବରଷ ତାଙ୍କର ଛାତ୍ର ଥିଲି । ସେ ପରେ ପାରଳାଖେମୁଣ୍ଡି ବଲାଙ୍ଗିର, ଭୁବନେଶ୍ୱର ସରକାରୀ କଲେଜରେ ଅଧକ୍ଷ ହୋଇଥିଲେ । କୌଣସି ରାଜନୈତିକ ଚାପରେ କଲେଜର ଛାତ୍ରମାନଙ୍କର ସ୍ୱାର୍ଥ ଯେପରି ବ୍ୟାହତ ନ ହୁଏ ଏଥିପ୍ରତି ସେ ସର୍ବଦା ସଜାଗ ଥିଲେ । ତାଙ୍କ ସମୟରେ ପାରଳାଖେମୁଣ୍ଡିରେ ଓଡ଼ିଆ ତେଲଗୁ ଛାତ୍ର ସଂଘର୍ଷ ସମୟରେ ତାଙ୍କ ବୌଦ୍ଧିକ ନିଷ୍ଠା ଓ ପ୍ରଶାସନିକ ଦକ୍ଷତା ପ୍ରମାଣିତ ହୋଇଥିଲା । ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେବାପରେ ସେ ଏହାର ପ୍ରଥମ ରେଜିଷ୍ଟ୍ରାର ଥିଲେ । ଦୁଇବର୍ଷ ବୃତ୍ତି ପାଇ ଆମେରିକାରେ ଉଚ୍ଚତର ଶିକ୍ଷାକରି ପରେ କଲମ୍ବୋ ବିଶ୍ୱବିଦ୍ୟାଳୟରୁ ସେ ଡକ୍ଟରେଟ ପାଇଥିଲେ । ମୋର ଏକ ଅଭିଜ୍ଞତା ଉଲ୍ଲେଖଯୋଗ୍ୟ ସେ ବଲାଙ୍ଗିରରେ ଅଧକ୍ଷ ୧୯୫୩ କି ୫୪ ହେବ, ମୁଁ ଟିଟିଲାଗଡରୁ ବସ୍‌ରେ ବଲାଙ୍ଗିର ଦେଇ କଟକ ଆସୁଥାଏ । ସେଇ ବସରେ ସେ ମଧ୍ୟ ଆସିଲେ । ମୁଁ ତାଙ୍କ ପାଖ ସିଟ୍‌ରେ ବସିଲି ।

ପ୍ରଥମ ସାଧାରଣ ନିର୍ବାଚନରେ କେତେକ ନିର୍ବାଚନ ଧର୍ତ୍ତବ୍ୟ ଅପରାଧରେ ଅଭିଯୋଗକାରୀଭାବରେ ମୋ କୋର୍ଟରେ ଟିଟିଲାଗଡରେସେ ସାକ୍ଷ୍ୟ ଦେଇଥାଆନ୍ତି । ଅନ୍ୟ କେହି ହୋଇଥିଲେ ସେ ଅପରାଧକୁ ଦୃଷ୍ଟିକୁ ଆଣି ନଥାନ୍ତା । ଏହା ମୋର ମତ । ସେ ଗ୍ରହଣ କଲେ ନାହିଁ । କଥା ପ୍ରସଙ୍ଗରେ ମୁଁ କହିଲି ସେ ନିଜର ଏକ ବିରାଟ ପରିବାର ଛାଡି ଦୁଇ ବରଷ ଆମେରିକାରେ ରହି ଡକ୍ଟରେଟ ନ ଆଣି ଆସିବାରୁ ଯିବାର ପ୍ରୟୋଜନିୟତା ମୁଁ ଦେଖି ପାରିଲି ନାହିଁ । ଏହାର ଉତ୍ତର ସେ ମୋତେ ଦେଲେନାହିଁ । ମୋ ସାଙ୍ଗରେ ଗୋଟିଏ ଛୋଟ ବେଡିଂ ଓ ଛୋଟ ସୁଟକେଶ ଥିଲା, ଯାହା ଅତି ସହଜରେ ମୋ ପରି ଜଣେ ସୁସ୍ଥ ସବଳ ଯୁବକ ଗାଡିରୁ ଧରି ଓହ୍ଲାଇ

ପାରିଥାନ୍ତା ଓ ପୁଣି ଅନ୍ୟଗାଡି ବା ମେରାମଣ୍ଡଳି ରେଲ ଷ୍ଟେସନରେ ଟ୍ରେନରେ ଚଢ଼ି ପାରିଥାନ୍ତି । ତାଙ୍କର ଦୁଇଟି ବଡ ହାଭରସ୍ୟାକ ବ୍ୟାଗ ଦୁଇ କାନ୍ଧରେ ଥାଏ -ଗାଡିରେ ଚଢ଼ିବା ଓ ଓହ୍ଲେଇବା ବେଳେ । ଆମେ ସକାଳେ କଟକ ରେଲଷ୍ଟେସନରେ ବିଦାୟ ନେଲାବେଳେ ସେ ମୋତେ କୁଲିଖରଚ କେତେ ହେଲା ବୋଲି ପଚାରିଲେ । ତାଙ୍କର ଦୁଇଟି ବ୍ୟାଗ ମତେ ଧରାଇ ଓଜନ ଅନୁମାନ କରିବାକୁ କହିଲେ । ଏହା ଓଜନ ପ୍ରାୟ ମୋର ଦୁଇଟି ଲଗେଜଠାରୁ ବହୁଗୁଣ ବେଶିଥାଏ । ସେ କୁଲିକୁ ଅପେକ୍ଷା କରୁ ନ ଥାନ୍ତି ବା କିଛି ପଇସା ଖରଚ କରି ନଥାଆନ୍ତି । ମତେ ଶୁଣାଇଲେ ତମ ପ୍ରଶ୍ନର ଉତ୍ତର ପାଇ ଗଲ । ଆମେରିକାରେ ୨ ବରଷ ନଥିଲେ ଶ୍ରମର ମୂଲ୍ୟ ଓ ନିଜ କାମ ନିଜେ କରିବା ମୁଁ ଶିଖି ପାରି ନଥାନ୍ତି । ତମ ପରି କୁଲି କୁଲି ହେଉଥାଆନ୍ତି । ମୁଁ ଲଜ୍ଜିତ ହେଲି । ସାକ୍ଷାତ ସମୟରେ ପ୍ରତିଥର ସେ ଜଣେ ହିତାକାଂକ୍ଷୀ ଭାବରେ ମୋର ବ୍ୟକ୍ତିଗତ ଓ ବୃତ୍ତିଗତ ସବୁ ଖବର ବୁଝି ଥାଆନ୍ତି ।

୧ମ ବର୍ଷରେ ଆଉଗୋଟିଏ ଟ୍ୟୁଟୋରିଆଲ ଶ୍ରେଣୀର ଅଭିଜ୍ଞତା ସବୁବେଳେ ମନେ ରହିବ । ପୂଜାଛୁଟି ପରେ ସେ କ୍ଲାସ ପ୍ରଫେସର ରୋହତଗୀ ନେଉଥାଆନ୍ତି । ଆମକୁ ନିଜ ଗ୍ରାମର ଅର୍ଥନୈତିକ ଚିତ୍ର ବର୍ଣ୍ଣନା କରିବାକୁ ୨୫ ମିନିଟ ସମୟ ଦେଲେ ଲେଖିସାରି ଦେଖାଇବାକୁ । ଶ୍ରେଣୀରେ ଆମେ ୧୦/୧୨ ଜଣ ଥାଉ । ମୋର ମନେ ପଡେ ଆଠଗଡ ତିଗିରିଆର ରମେଶ ପରେ କଟକ ବ୍ୟବସାୟ ପ୍ରତିଷ୍ଠାନ ମିଶ୍ର ବ୍ରଦର୍ସର ପାର୍ଟନର ନାରାୟଣ ଚନ୍ଦ୍ର ପତି (ସିଂହଭୂମିର) ଦୟାନିଧି ପଟ୍ଟନାୟକ, ମୋର ପରେ ସହକର୍ମୀ ଓ ଅବସରପ୍ରାପ୍ତ ଜିଲ୍ଲା ମାଜିଷ୍ଟ୍ରେଟ, ଓ ଆଉ କେତେଜଣ ନାଁ ମନେ ପଡୁନାହିଁ । ଦୟାନିଧିଙ୍କ ଘର ରସଲକୋଣ୍ଡା ନିକଟରେ । ସେ ସ୍ଥାନୀୟ ଜିଲ୍ଲାବୋର୍ଡ ଉଚ୍ଚବିଦ୍ୟାଳୟରୁ ସେକେଣ୍ଡାରୀ ସ୍କୁଲ ଲିଭିଂ ସାର୍ଟିଫିକେଟ ପାସ କରି ନାମ ଲେଖାଇଥାନ୍ତି । ଓଡ଼ିଶା ପ୍ରଦେଶ ହେବା ୪ ବରଷ ମାତ୍ର ହୋଇଥାଏ । ଗଞ୍ଜାମ, କୋରାପୁଟର ଅଧିବାସୀମାନଙ୍କ ସହିତ ଆମର ଭାବ ଆଦାନ ପ୍ରଦାନ ଓ ସାଂସ୍କୃତିକ ସମନ୍ୱୟ ପର୍ଯ୍ୟାପ୍ତ ହୋଇ ନଥାଏ । ସେମାନେ 'ତାଙ୍କେ', ଥାଉଛି', 'ଡାବୁ', 'କିସ' 'ହେ', 'ବେଡା', 'ପାର୍କା' ଆଦି କଥାରେ ପ୍ରୟୋଗ କରନ୍ତି । ଚାରୁ, ଚଲ୍‌ହା ଖାଇବାରେ ଅଭ୍ୟସ୍ତ । ଟିକେ ବେଶୀ ଲଙ୍କା (ମିରପକାଇଲୁ) ଓ ଖଟା ଖାଆନ୍ତି ।

ଆମେ ତାଙ୍କୁ ଦକ୍ଷିଣିଆ କହୁଥାଉ । ଆମେ ମାଟ୍ରିକ ପାସ କଲେ ଯୋଗ୍ୟତା ନିଦର୍ଶନର ସ୍ୱରୂପ ପାଖରେ ଖୁବ୍ ବେଶୀ ବିଶ୍ୱବିଦ୍ୟାଳୟରୁ ପାଇଥିବା ମାର୍କସିଟ୍ କେବଳ ଥାଏ। ଅଥଚ ମାନ୍ଦ୍ରାଜର (ଆନ୍ଧ୍ରପ୍ରଦେଶ ହୋଇ ନଥାଏ) ୱାଲଟିଅର ବିଶ୍ୱବିଦ୍ୟାଳୟରୁ ପାସ କରିଥିବା ବିଦ୍ୟାର୍ଥିମାନଙ୍କୁ ଗୋଟିଏ ଖାତାରେ ଶେଷ ତିନିବରଷ ୯ମରୁ ଏକାଦଶର ସବୁ ପରୀକ୍ଷାରେ ପ୍ରାପ୍ତ ନମ୍ବର, କୌଣସି ପ୍ରାପ୍ତ ପୁରସ୍କାର, କ୍ରୀଡା ଅଭିନୟରେ କୁଶଳତା, ବାକକୁଶଳତା, ସଂଗୀତ, ସାହିତ୍ୟ, କଳା ଚିତ୍ରାଙ୍କନରେ ରଚି ଆଦି ପାଠ୍ୟ ବହିର୍ଭୂତ ବିଷୟରେ କୃତୀତ୍ୱ ବର୍ଣ୍ଣନା କରାଯାଇଥାଏ । ଦୟାନିଧି ଜଣେ କୃତୀ ଛାତ୍ର ଥିଲେ । ଆମ ମାପରେ ପ୍ରଥମ ଡିଭିଜନ ଛାତ୍ର । ଅଧ୍ୟାପକ ରୋହାତଗି ଖାତା ସବୁ ସଂଗ୍ରହକରି ନେଲେ । ପରବର୍ତ୍ତୀ ସପ୍ତାହରେ ମୂଲ୍ୟାୟନ କରି ଆମ୍ଭମାନଙ୍କୁ ଫେରାଇ ଦେଲେ । ମୋତେ ଦଶରୁ ଛଅ ଦେଇଥାନ୍ତି । ଦୟାନିଧି ସାଢ଼େ ପାଞ୍ଚ । ଏମିତି ଅନ୍ୟଙ୍କୁ । ମୋର ଯୋଗ୍ୟତା ୨ୟ ଡିଭିଜନ । ଦୟାନିଧି ଏଥିରେ ବିସ୍ମିତ ହେଲେ ମୋ ଖାତା ମାଗିନେଇ ଦେଖିଲେ ପଢ଼ିଲେ । ନିଜ ପ୍ରତିକ୍ରିୟା ଶୁଣାଇଲେ, ହଇହେ ମହାନ୍ତିଏ, ତମେ ଗୋଟାଏ ତବବା ମାରି ଦେଲ ହେ, ଗାଁ ଗୋଟାକରେ କେତେ କରଣ ହେ ? । How can there be more than one sword in a scabbard ଗୋଟିଏ ଖଣ୍ଡ ଖୋଳରେ ଏକାଧିକ ଖଣ୍ଡା କିପରି ରହିବ ହେ ? ମୁଁ ବୁଝି ନ ପାରି ତାଙ୍କ ମୁହଁକୁ ବଲାବଲ କରି ଅନାଇଥାଏ । ଆମ ଗାଁ ବିଷୟରେ ମୁଁ ଲେଖିଥାଏ ଗାଁରେ କୃଷିଜୀବି ଓ କୃଷି ଉତ୍ପାଦନ ତୁଳନାରେ ଜନବସତି ହେତୁ ଲୋକସଂଖ୍ୟା ବେଶି । ଗାଁରେ ପଚିଶ ତିରିଶ ଘର କରଣ ଥିଲେ ଯେଉଁମାନେ ଚାଷୀ ନୁହନ୍ତି । ପ୍ରତି ପରିବାରରେ ଜଣେ ଦିଜଣ ବାହାରେ ରହି କାମ କରନ୍ତି । ନିଜର ପରିବାରର ଭରଣ ପୋଷଣ ନିମିତ୍ତ ପ୍ରତି ମାସରେ କିଛି ଟଙ୍କା ମନିଅର୍ଡର କରି ପଠାନ୍ତି ଓ ସେଥିରେ କୁଟୁମ୍ବ ପ୍ରତିପାଳିତ ହୁଏ । ମୁଁ ଏହାକୁ ମନିଅର୍ଡର ଅର୍ଥନୀତି ବୋଲି ଲେଖିଥାଏ । ଦୟାନିଧିଙ୍କ ଗାଁ ରସେଲକୋଣ୍ଡା ନିକଟବର୍ତ୍ତୀ ଭାଲିଆଖାଇ । ତାଙ୍କ ବଡଭାଇ ଗାଁର କରଣ । ଗାଁର ଭୂରାଜସ୍ୱ ଜଳକର ଆଦି ସରକାରୀ ଦେୟ ତାଙ୍କର ମାରଫତରେ ଅସୁଲ ହୁଏ । କାରଜି କରଣ ଓ ତଲୱାରୀ (ଗ୍ରାମରକ୍ଷୀ)ରେ ଅଭ୍ୟସ୍ତ ଦୟାନିଧିଙ୍କ ଧାରଣା ଥାଏ ଗୋଟାଏ ଗାଁରେ ଜଣେ ମାତ୍ର କରଣ ଥିବ।

ତେଣୁ ମୋର ବର୍ଣ୍ଣନା କାଳ୍ପନିକ (ଢ଼ବ୍‌ବା) । କଟକ ଜିଲାରେ ବିଶେଷ କରି ସଦର ସବଡିଭିଜନରେ (ଜଗତସିଂହପୁର ସବଡିଭିଜନ ସୃଷ୍ଟି ହୋଇନଥାଏ) । କରଣ ବହୁଳ ଅନେକ ଗ୍ରାମ ଅଛି ଏହା ତାଙ୍କୁ ବୁଝାଇ ଦେବାକୁ ପଡିଲା । କାଳକ୍ରମେ ଦୟାନିଧି ସାଲେପୁରର ତହସିଲଦାର (ଅଞ୍ଚଳ ଅଧିକାରୀ) ହୋଇ ମୋର ଉକ୍ତିର ସତ୍ୟତା ନିର୍ଣ୍ଣୟ କଲେ । ଦୀର୍ଘ ୭୦ ସତୁରି ବରଷ ହେଲା ସେଇଦିନୁଁ ମୁଁ ତାଙ୍କୁ ମିଷ୍ଟର ଭାଲିଆଖାଇ ବୋଲି ଡାକି ଆସିଛି । ଦୟାନିଧି କଟକ ଜିଲ୍ଲାରେ ୪/୫ ଗୋଟି ବୈବାହିକ ସଂପର୍କ ସ୍ଥାପନ କରି ବର୍ତ୍ତମାନ ପୁରା କଟକୀ । ରହୁଛନ୍ତି ଭୁବନେଶ୍ୱର ଖାରବେଳ ନଗରରେ । ସୁପ୍ରିମ କୋର୍ଟର ଅନ୍ୟତମ ବିଚାରପତି ମାନ୍ୟବର ଅନଙ୍ଗ କୁମାର ପଟ୍ଟନାୟକ ତାଙ୍କର ଜ୍ୟେଷ୍ଠ ଜାମାତା ।

ଅର୍ଥନୀତିରେ ସଦାଶିବ ବାବୁ Civics ନଗରବିଜ୍ଞାନ ପଢ଼ାନ୍ତି । ରୋହାତଗି ଅର୍ଥନୀତିର ତତ୍ତ୍ୱ ଓ ଅଧ୍ୟାପକ ବର୍ଦ୍ଧନ ଅର୍ଥନୈତିକ ଭୂଗୋଳ ଓ ଇତିହାସ ପଢ଼ାନ୍ତି । ନଗର ବିଜ୍ଞାନ ପ୍ରଥମେ ଆମେ କଲେଜରେ ପଢ଼ିବାର ସୁଯୋଗ ପାଇଲୁ । ଅଧ୍ୟାପକ ବେଣୀ ପ୍ରସାଦଙ୍କ ଲିଖିତ ପାଠ୍ୟପୁସ୍ତକ ଥାଏ ମାତ୍ର ସଦାଶିବ ବାବୁ ନିଜେ ବୁଝି ନିଜ ଭାଷାରେପ୍ରଶ୍ନର ଉତ୍ତର ପରୀକ୍ଷା ଓ ଟ୍ୟୁଟୋରିଆଲ ଶ୍ରେଣୀରେ ଲେଖିବାକୁ ପରାମର୍ଶ ଦିଅନ୍ତି । ବେଣୀ ପ୍ରସାଦଙ୍କ ଗୋଟିଏ ଧାଡି ବହିରେ ଥାଏ plasticity is at the root of educability ଏହାର ଅର୍ଥ ନ ବୁଝି ଖାଲି ମୁଖସ୍ଥ କରି ପରୀକ୍ଷାରେ କିଏ କେମିତି ବିଚିତ୍ର ଲେଖିଥାନ୍ତି ତାହା ଶୁଣାଇ ସେ ସମସ୍ତଙ୍କୁ ହସାଇ ଥାଆନ୍ତି । ତାଙ୍କ ଶ୍ରେଣୀରେ ଅନ୍ୟ ପିଲାଏ ବସନ୍ତି ଓ ସମୟ ଜାଣି ହୁଏନାହିଁ । ଇଂରେଜି ୨ୟ ପ୍ରତରେ ୧୬ଗୋଟି ବହି ଥାଏ । ସେଥିରୁ ୬ଟିରୁ ପ୍ରଶ୍ନ ଉତ୍ତର କରିବାକୁ ପରୀକ୍ଷାରେ ହୁଏ । ସବୁ ବହି ପଢ଼ାଯାଇ ନଥାଏ । ଅଧ୍ୟାପକ ଜନ ଓ ଗିରିଜା ବାବୁ କେତେଖଣ୍ଡ ପଢ଼ାଇଥିଲେ, ମ୍ୟାକିଜ ଲଣ୍ଡନ ସାହାଯ୍ୟରେ ଥରେ ଅଧ୍ୟାପକ ପରିଜା ସାହେବ Lost World ବୁଝାଇଥିଲେ ।

ନାମଲେଖା ସରିବା ପରେ ଅଗଷ୍ଟ ମାସରୁ ପଢ଼ାପଢ଼ି ଜୋରସୋରେ ଆରମ୍ଭ ହେଲା । ଜୟକୃଷ୍ଣ MSE ଗଣିତ, ସଂସ୍କୃତ, ଅର୍ଥନୀତି ଗ୍ରୁପ ନେଇଥାଏ । କଲେଜ ସାମନା ମିନର୍ଭାମେସରେ ରହୁଥାଏ । ଏଠାରେ ଅନେକ ଗୁଡିଏ ଆଇ.ଏ. ବି.ଏ.

ଛାତ୍ର ରହୁଥାଆନ୍ତି । ସମସ୍ତେ ପରୀକ୍ଷାରେ କୃତୀତ୍ୱ ହାସଲ କରନ୍ତି ବୋଲି ମେସର ସୁନାମ ଥାଏ । ପରିଚାଳନା ଅନ୍ତେବାସୀମାନେ ନିଜର ମନୋନୀତ କର୍ମକର୍ତ୍ତାଙ୍କ ହାତରେଛାଡି ଦେଇଥାଆନ୍ତି । ଜୟକୃଷ୍ଣ ଅର୍ଥନୀତି ୨ଟି ପତ୍ରର ବହି ମତେ ଦେଇ ଉପକୃତ କରେ । ବାଇଧର ପୂର୍ବ ହଷ୍ଟେଲର ୱାଡେନ ପ୍ରଫେସର ସୁନ୍ଦରମଙ୍କର ବାହାର ଘର ଗୋଟିଏ କୋଠରୀରେ ଥାଏ । ୱାଡେନଙ୍କର ଏହି ଆଉଟହାଉସରେ ୪/୫ ଗୋଟି କୋଠରୀ ଥାଏ । ସେମାନଙ୍କର ପାଇଖାନା ପାଣି ପାଇପ ଓ ବିଜୁଳି ଆଲୁଅ ମଧ୍ୟ ଥାଏ । ସେଠାରେ ଆଗରୁ ୱାର୍ଡେନଙ୍କର ଖାନସମା, ବର୍ଚ୍ଚିଚି, ଖିଦମଦଗାର, ଆଦି ରହୁଥିଲେ । ଏଥିରେ ବିଜୁଳି ଆଲୁଅ ପାଣି ସୁବିଧା ସହିତ ପ୍ରତ୍ୟେକ କୋଠରୀରେ ଗୋଟିଏ ତକ୍ତପୋଷ ଖଟ ଥାଏ । ବାଇଧର ବ୍ୟତୀତ ବଂଶୀଧର ମିଶ୍ର କାଦୁଅପଡା ଘର ପରେ ଉତ୍କଳ ବିଶ୍ୱବିଦ୍ୟାଳୟର ସହକାରୀ ରେଜିଷ୍ଟ୍ରାର, ବିଦ୍ୟାଭୂଷଣ ମହାପାତ୍ର ପରେ ସବରେଜିଷ୍ଟର ମଧ୍ୟ ଭିନ୍ନ ଭିନ୍ନ ଘରେ ରହୁଥାନ୍ତି । ବଂଶୀଧର ଆମର ଦୁଇ ଶ୍ରେଣୀ ଉପରେ । ବିଦ୍ୟାଭୂଷଣ ଏମ୍.ଏ. ଓ ଆଇନ ପଢୁଥାଆନ୍ତି । କଲେଜ କ୍ଲାସ ନଥିଲେ ଆମେ ଗୋଟିଏ ଗୋଷ୍ଠି ବାଇଧରର ସେହି କୋଠରୀରେ ଏକାଠି ହେଉ । ପାଠ ଶାଠ ସବୁ ଆଲୋଚନା କରୁ । ସେହି ଅନ୍ତେବାସୀମାନେ ସମୟ ଅନୁସାରେ କଲେଜ ହଷ୍ଟେଲ ନ ହେଲେ ପାଖରେ କୌଣସି ମେସରେ ସେମାନଙ୍କର ଖାଇବାର ବ୍ୟବସ୍ଥା କରିଥାଆନ୍ତି । ବାଇଧର ଇତିହାସ ତର୍କଶାସ୍ତ୍ର ଓ ଓଡ଼ିଆ ଗ୍ରୁପ ନେଇଥାଏ । ତାର ଇତିହାସ ଓ ତର୍କଶାସ୍ତ୍ର ବହି ମୋ କାମରେ ଲାଗେ । ତେଣୁ ମୁଁ କୌଣସି ବହି କିଣିବାର ଆବଶ୍ୟକତା ଅନୁଭବ କଲି ନାହିଁ । ବାଧ୍ୟତାମୂଳକ ଇଂରେଜି ବହି ଅନେକ ସହଧ୍ୟାୟୀ ମଧ୍ୟରୁ କାହାଠାରୁ ଆଣେ ପଢ଼ିବାକୁ । ବାଇଧରର ବାପା ଜଣେ ବଡ ଚାଷୀ । ତାର ଗାଁରୁ ପ୍ରତିମାସରେ କାହା ହାତରେ ଚୂଡା ନଡିଆ ଆସେ । ଗୁଡ ମଧ୍ୟ କେବେ କେବେ ଆସେ । ଆମେ ଯେତେବେଳେ ପାଠ ନଥିବ ବା ଅନ୍ୟ ସମୟରେ ଭୋକ ଲାଗିଲେ ସେଠାରେ ଏକାଠିହେବୁ । ଚୂଡା ନଡିଆ ଚୋବାଇବା ସହିତ ଶ୍ରେଣୀର ପାଠ ଆଲେଚନା ଚାଲେ । ଦୀର୍ଘ ଦୂରତା ଚାଲିକରି ଆସି ୨ଟା ବେଳକୁ ଭୋକ ପ୍ରବଳ ହେଲେ ଏହି ଜଳଖିଆ ବହୁତ ବନ୍ଧୁଙ୍କର କ୍ଷୁଧା ନିବୃତ୍ତ କରୁଥିଲା । ଶୁଖିଲା ଗୁଡ କେହି କିଣି ଆଣି, କେହି ଚିନି ଆଣି ଏହି ମହା ଆନନ୍ଦମୟ ସାମୁହିକ

ଭୋଜନରେ ଭାଗୀଦାର ହୁଏ । ବାଇଧର ହାତରେ ଟଙ୍କା ଥିଲେ ସେ ଆମକୁ ଗୁଜରାତି ହୋଟେଲରେ ଖୁଆଏ ।

କଲେଜରେ ଦିବାଧାୟୀଙ୍କର ସଂଖ୍ୟା ହଷ୍ଟେଲ ବାସୀଙ୍କର ପ୍ରାୟ ଦୁଇ ଅଢ଼େଇ ଗୁଣ । ଡକ୍ଟର ଗୋପୀନାଥ ମହାନ୍ତି ଜ୍ଞାନପୀଠ ବିଜେତା ନିଜ ଆତ୍ମଜୀବନୀ ସ୍ରୋତସ୍ୱତୀରେ ସେମାନଙ୍କୁ ପଦାତିକ କଲେଜଗାମୀ, ଟ୍ୟୁସନ ଧର୍ମୀ ଛାତ୍ର ବାହିନୀ ବୋଲି ବର୍ଣ୍ଣନା କରିଛନ୍ତି । ସେମାନଙ୍କର ଦିବାଧାୟୀ ସଂଘ ବହୁତ ବିଳମ୍ବରେ ଗଠିତ ହୋଇଥିଲା । ପ୍ରତ୍ୟେକ କଲେଜ ଛାତ୍ର ଏହି ସଂଘ ପାଇଁ ବାର୍ଷିକ ୮୮ ଅଠାଅଣି ପଇସା ଦେଉଥିଲା । ଏହାଛଡ଼ା ପ୍ରତ୍ୟେକ ଦିବାଧାୟୀ ବାର୍ଷିକ ଦେଢ଼ଟଙ୍କା ଦେଉଥିଲେ । ଜୁଲାଇ ମାସରେ ଏହା ଦରମା ସାଙ୍ଗରେ ଅସୁଲ ହେଉଥିଲା । କଲେଜର CEN-SOR ନିୟନ୍ତ୍ରକ ଅଧ୍ୟାପକ ଏହି ସଂଘର ସଭାପତି ଥିଲେ । ସଂପାଦକ ଓ କାର୍ଯ୍ୟକାରିଣୀ ସଭାର ସଦସ୍ୟମାନେ ଦିବାଧାୟୀ ମାନଙ୍କ ଦ୍ୱାରା ନିର୍ବାଚିତ ହେଉଥିଲେ । ସଂଘର ଗୋଟିଏ ଲେଣ୍ଡିଂ ଲାଇବ୍ରେରି ଥାଏ । ତାହା ଜଣେ ସଭାପତିଙ୍କ ଦ୍ୱାରା ନିଯୁକ୍ତ ଛାତ୍ର ପରିଚାଳନାରେ ଥାଏ । ସେ ବରଷକପାଇଁ ପାଠ୍ୟପୁସ୍ତକ ସଂପୃକ୍ତ ଛାତ୍ରଙ୍କୁ ଆବଶ୍ୟକ ଅନୁସାରେ ଦେଉଥାଆନ୍ତି । ଠିକ୍ ସମୟରେ ବହି ଫେରାଇବା ମଧ୍ୟ ତାଙ୍କରି ଦାୟିତ୍ୱ ଥାଏ । ଦିବାଧାୟୀ ସଂଘ କାର୍ଯ୍ୟକାରିଣୀରେ ଏମ୍.ଏ. ଓ ଆଇନ ପଢୁଥିବା ଛାତ୍ରମାନଙ୍କର ପ୍ରତିନିଧି ମଧ୍ୟ ଥାଆନ୍ତି । ଆମ ସମୟରେ ବନମାଳୀ ପଟନାୟକ ପ୍ରଦୀପ୍ତ କିଶୋର ଦାସ (ପରେ ଉଭୟ ଓଡ଼ିଶାର ମନ୍ତ୍ରୀ) ଓ ବିଶ୍ୱନାଥ ପଣ୍ଡିତ (ସାମ୍ୟବାଦୀନେତା) ସଂଘର ସଭାପତି ନିବାଚିତ ହୋଇଥିଲେ ।

ପଦଚାରୀମାନଙ୍କର ଗୋଟିଏ ଗୋଷ୍ଠିଥାଏ । ସେମାନେ ଡଗରପଡା କାଫୁଲାବଜାର ପାଖରୁ ମଧ୍ୟ ଚାଲିଚାଲି ଆସନ୍ତି । ମଝିରେ ମଝିରେ ସେମାନଙ୍କ ସଂଖ୍ୟା ବଢୁଥାଏ । ବାଟଯାକ ଆମ ଗୋଷ୍ଠିର ନାନା ବିଷୟ ଆଲୋଚନା ହୁଏ । କିଏ କେଉଁଠି ଟ୍ୟୁସନ ଛାଡ଼ିଲା, କିଏ ମେସ ବଦଳାଇଲା, କିଏ କାହା ଘରେ ଭଲରେ ଅଛି, କିଏ ଟ୍ୟୁସନ କରି ଦରମା ପାଇଁ ବାରମ୍ବାର ଦଉଡୁଛି । ସାଙ୍ଗରେ ଦେଶର ହାଲଚାଲ । ହଜାର ସମସ୍ୟା ହଜାର ଅବହେଳା, ଆମେ ଏହା ସତ୍ତ୍ୱେ ଆଗେଇବା । କଷ୍ଟକୁ ମାନିବା ନାହିଁ । ସମଧର୍ମୀର ସମବେଦନା ଆମକୁ ଆଗେଇ ନେବ ମାତ୍ର ଆମେ

ଡରିବା ନାହିଁ ନା ମରିବା ନାହିଁ । କାମକରି ଚାଲିବା ଫଳାଫଳ ସେଇ ସର୍ବନିୟନ୍ତାଙ୍କ ହାତରେ । ଆମ ଗୋଷ୍ଠିରେ ରଘୁନାଥ ଜିଉ ମନ୍ଦିର ସାମନାରେ ନିଜ ଘରେ ରହୁଥିବା ନିତ୍ୟାନନ୍ଦ ସିଂହ (ପ୍ରତିଷ୍ଠିତ ଶିକ୍ଷକ ଓ ସାମୟିକ ପତ୍ରିକା 'ଜନମତ'ର ସଂପାଦକ) ଯାଦବ ଚନ୍ଦ୍ରସେନ ସହିତ ମୁଁ ରାଜା ବଗିଚାରେ ମିଶେ । ନିତ୍ୟାନନ୍ଦଙ୍କର ବାପା କିଲଟରୀରେ ଅମଲା । ଯାଦବ (ଡାକ ନାମ ଗୌର)ଙ୍କର ପିତା ମେଡିକାଲ ସ୍କୁଲର ହେଡକ୍ଲର୍କ ଥାଆନ୍ତି । ଯାଦବ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଦିନୁ ଅଫିସରେ ପଶି ଶେଷରେ ସହକାରୀ ରେଜିଷ୍ଟ୍ରାରଭାବେ ଅବସର ନେଲେ । ଝାନଝିରିମେଙ୍ଗଳାର ବିଖ୍ୟାତ କବିରାଜ ପରିବାରରେ ଟ୍ୟୁସନ କରି ଗୋବିନ୍ଦଚନ୍ଦ୍ର ପଣ୍ଡା ଓ ଯୋଗୀନ୍ଦ୍ର ମିଶ୍ର ରହୁଥାନ୍ତି (ଗୋବିନ୍ଦ ବି.ଏ. ପାସକରି ମୌଳିକ ଶିକ୍ଷା ତାଲିମ ନେଇ ଶିକ୍ଷକ ହେଲା । ଖଦଡ ପିନ୍ଧେ, ଅନେକ ଦିନ ଧରି ଶିକ୍ଷକ ଥାଇ ସୁନାମ ଅର୍ଜନ କଲା । ଶେଷରେ ବାଲେଶ୍ୱର ଖଇରାରେ ଗୋଟିଏ ଆଶ୍ରମ କରି ରହୁଥିଲା । ମଲାବେଳେ ତାକୁ ଲୋକେ ଖଇରାର ଗାନ୍ଧି କହୁଥିଲେ) । ଯୋଗୀନ୍ଦ୍ର ସଚ୍ଚିବାଳୟରେ ପ୍ରବେଶ କରି କ୍ୟାବିନେଟ ବିଭାଗରେ ବଡବାବୁ ଥାଇ ଅବସର ନେଲା । ତାର ଅଳ୍ପଦିନ ପରେ ମରିଗଲା । ସମସ୍ତଙ୍କୁ ସାହାଯ୍ୟ କରିବାକୁ ଚାକିରି ଜୀବନରେ ପ୍ରସ୍ତୁତ ଥିଲା। ସେ ଦୁହେଁ ମିଶନ୍ତି । ଯୋଗୀନ୍ଦ୍ର ପରେ ମାଣିକ ଘୋଷ ବଜାରର ଓକିଲ ଦିବ୍ୟସିଂହ ମହାନ୍ତିଙ୍କର ଘରେ ଟ୍ୟୁସନ କରି ରହିଲା। ବାଗଲପୁରର ଦୁଇଭାଇ ସୁବଳ ଓ ସୁରେନ୍ଦ୍ର ମିଶନ୍ତି (ସୁବଳ ଅଗଷ୍ଟ ଆନ୍ଦୋଳନ ସମୟରେ ଜେଲ ଯାଇଥିଲା । ଦେଶ ସ୍ୱାଧୀନ ହେବା ପରେ ୧୯୪୮ରେ ସେଣ୍ଟ୍ରାଲ ଏକସାଇଜ ଇନ୍ସପେକ୍ଟର ଭାବେ ଯୋଗ ଦେଇ ସୁପରିଟେଣ୍ଡେ ଭାବେ ଅବସର ନେଲା, ସୁରେନ୍ଦ୍ର ଆଇ.ଏସ୍.ସି. ପରେ ମତ୍ସ୍ୟ ବିଭାଗର ଟ୍ରେନିଂ ନେଇ ଜିଲା ମତ୍ସ୍ୟ ଅଧିକାରୀ ଭାବେ ଅବସର ନେଲା) ଜଗତସିଂହପୁରରେ ମୋର ଅଷ୍ଟମ ଶ୍ରେଣୀରେ ସହପାଠୀ ଥିଲେ । ପୁରୀ ଜିଲ୍ଲାସ୍କୁଲରୁ ଦୁହେଁ ପାସ କରି ଆସିଥାନ୍ତି । ତାଙ୍କର ଜଣେ ସଂପର୍କୀୟଙ୍କ ଘରେ ତେଲେଙ୍ଗାବଜାରରେ ଥାଆନ୍ତି । କୈବଲ୍ୟ କୁଟୀର କେବଳ ହରିଜନମାନଙ୍କ ପାଇଁ ଉଦ୍ଦିଷ୍ଟ ଥାଏ । କେତେବର୍ଷ ଆଗରୁ ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା ଏହାର ଉଦ୍‌ଘାଟନ କରିଥିଲେ । ଏହାର ଅନ୍ତେବାସୀ ସଂଖ୍ୟା ତିରିଶ । ଜଣେ ତତ୍ତ୍ୱାବଧାରକ ଥାଆନ୍ତି । ସେତେବେଳେ ତତ୍ତ୍ୱାବଧାରକ ପରଶୁରାମ ମହାନ୍ତି ଜଣେ ସ୍ୱାଧୀନତା

ସଂଗ୍ରାମୀ । ତାଙ୍କ ଘର ବାଲିକୁଦା ଥାନା ହାଡିଆପଦା ଗାଁଆରେ । ସେମାନେ ମୁଷ୍ଟି ଭିକ୍ଷା କରନ୍ତି ଓ ସହରର ବିଭିନ୍ନ ବଦାନ୍ୟ ବ୍ୟକ୍ତିମାନଙ୍କ ଦାନରେ ଅନୁଷ୍ଠାନ ଚଳେ । ହରିଜନ ଛାତ୍ରମାନଙ୍କ ଦରମା ସଂପୂର୍ଣ୍ଣ ଛାଡ । ଛାତ୍ର ଅନ୍ତେବାସୀ ନିଃଶୁଳ୍କ ରହନ୍ତି । ସେଠାରୁ ବେଣୁଧର ସେଠି, ପୁରୁଷୋତ୍ତମ ସେଠି ରହନ୍ତି । ବେଣୁଧର ବାଣିଜ୍ୟକର ବିଭାଗରେ ପ୍ରବେଶ କରି ପୁଣି ସବଡେପୁଟି ହୋଇ ପ୍ରଥମ ଶ୍ରେଣୀ କର୍ମଚାରୀ ଭାବେ ଅବସର ନେଲା, ପୁରୁଷୋତ୍ତମ ସବ ରେଜିଷ୍ଟାର ସବ୍‌ଡେପୁଟି, ଡେପୁଟି କଲେକ୍ଟର ହୋଇ ଅବସର ନେଲା । ବିଭିନ୍ନ ଶ୍ରେଣୀର ଛାତ୍ର ଆମ ସାଙ୍ଗରେ ଯୋଗଦାନ କରନ୍ତି । ମନରେ ବିଷାଦ ଆସେ ଯେତେବେଳେ ଭାବେ ଯାଦବ ବେଣୁଧର ବ୍ୟତୀତ ଆଉ ସମସ୍ତେ ଆର ପାରିକୁ ଚାଲିଗଲେଣି ।

ଜ୍ଞାନପୀଠ ବିଜେତା ଔପନ୍ୟାସିକ ପଦ୍ମଭୂଷଣ ଡକ୍ଟର ଗୋପୀନାଥ ମହାନ୍ତି ଏକଦା ଏମିତି ବ୍ୟସନଧର୍ମୀ କଲେଜଗାମୀ ପଦାତିକ ବାହିନୀରେ ଥିଲେ । ନିଜ ଅଭିଜ୍ଞତା ସେ ସମୟରେ 'ଭାଗା' ବୋଲି ଗୋଟିଏ ଗଳ୍ପରେ ଲେଖିଥିଲେ, ତାଙ୍କ ଆତ୍ମଜୀବନୀ ସ୍ରୋତସ୍ୱତୀ ୨ୟ ଭାଗରେ ସେ ଲେଖିଛନ୍ତି । 'ଭାଗା' । ଭଲ ଲାଗୁଥିଲା, ସେ ଶବ୍ଦଟି, ଭାଗାବଣ୍ଡର ସଂକ୍ଷେପଣ । ବନ୍ଧନ ନାହିଁ, କାମନା ନାହିଁ, ପ୍ରତ୍ୟାଶା ନାହିଁ ଆଖି ଯୁଆଡେ ଅନାଇଲେ, ମନ ଯୁଆଡେ ଚାହିଁଲେ ଚାଲ । ଭାଗା ପୁଣି ହତଭାଗାର ସଂକ୍ଷେପଣ । ଶବ୍ଦରେ ହାଉନଟର ଉଲ୍ଲାସ ଓ ମର୍ଯ୍ୟାଦା । ମୋର କିଛି ନାହିଁ ନଥିଲା । ଜାଣେ କିଛି ହେବ ନାହିଁ । ମିଳିବ ସେଇମାନଙ୍କୁ ଯେଉଁମାନେ ଭାଗ୍ୟଦେବୀର ବରପୁତ୍ର, ଯାହା ମୁଁ ନୁହେଁ ଆଦୌ ନୁହେଁ । ଜାଣେ ସେମାନେ ଯତ୍ନ ନ କଲେ ବି ସିଦ୍ଧି ସୁନିଶ୍ଚିତ । ମୁଁ ଯତ୍ନ କଲେବି ଶହେକରେ ଏକର ଫଳ ପାଇବା କଷ୍ଟ । ସେଇଆ ଏ ଗୋଷ୍ଠିର ଦର୍ଶନ ଥାଏ । ବାଟରେ ଅନ୍ୟମାନେ ସାମୟିକ ମିଶନ୍ତି । କେତେକ ସାଇକେଲରେ ଯାଉଥିବେ ଏହି ଗୋଷ୍ଠିକୁ ଦେଖି ଆଲୋଚନା ଶୁଣି ଏଥିରେ ଯୋଗଦେବାକୁ ଆମସାଙ୍ଗେ ଚାଲି ଚାଲି ଯିବେ । ପରେ ଦର୍ଶକ ଅଧ୍ୟାପକ ଡକ୍ଟର ସତ୍ୟବାଦୀ ମିଶ୍ର ଉତ୍କଳମଣି ଗୋପବନ୍ଧୁଙ୍କର ନାତି । ନିଜ ଘରେ ବାପ ମାଆଙ୍କ ସହିତ ରହୁ ଥାଆନ୍ତି । ବେଶି ବେଳ ସାଇକେଲରେ ଯାଉଥିଲେ ମଧ୍ୟ ଆମ ସାଙ୍ଗରେ ଚାଲନ୍ତି । ସେ ନିୟମିତ ଖଦଡ ପିନ୍ଧନ୍ତି । ତାଙ୍କର ନିର୍ଦ୍ଦିଷ୍ଟ ରାଜନୈତିକ ମତବାଦ

ଥାଏ । ଅନ୍ୟମାନେ ପ୍ରତିଷ୍ଠିତ ବ୍ୟବସ୍ଥାର ସମର୍ଥକ । ବାଳାନାଂ ଅଧ୍ୟୟନଂତପଃ । ଛାତ୍ରମାନେ ଅଧ୍ୟୟନ ଛାଡ଼ି ରାଜନୀତିରେ ଭାଗନେବା ବିଦ୍ୟାଶିକ୍ଷାର ପ୍ରତିକୂଳ ।

ସମସ୍ତେ ଜାତୀୟତାବାଦୀ । ଦେଶର ସାମୁହିକ ଉନ୍ନତି ଚାହାନ୍ତି । କଂଗ୍ରେସ ନୀତିର ସମର୍ଥକ ମାତ୍ର ଆନ୍ଦୋଳନରେ ଭାଗୀହେବା ବିରୋଧୀ । ପ୍ରତ୍ୟେକ ନିଜର ଅଭାବ ଅସୁବିଧା ସଂପୂର୍ଣ୍ଣ ଅବଗତ ଥାଇ ପିତା ମାତାଙ୍କର ଆର୍ଥିକ ଦୁଃସ୍ଥିତି ସ୍ମରଣ କରି କିପରି ଶୀଘ୍ର ପାଠ ସାରି ଉପାର୍ଜନକ୍ଷମ ହେବେ ଏହା ଲକ୍ଷ୍ୟ ରଖିଥାଆନ୍ତି । ତେଣୁ ଆମ୍ଭେମାନେ ହଷ୍ଟେଲରେ ଥିବା ଛାତ୍ରମାନେ କୌଣସି ଆନ୍ଦୋଳନରେ ଭାଗ ନେବାର ବିରୋଧୀ ଥାଉ । ଆମେ ହଷ୍ଟେଲରେ ଥିବା ଛାତ୍ରମାନଙ୍କୁ ବିରୋଧ କରୁ । ସେମାନେ ମହା ଆନନ୍ଦରେ ଖାଇପିଇ ସୁସ୍ଥ ଅଛନ୍ତି । ସେମାନଙ୍କୁ ବର୍ତ୍ତମାନ ଅର୍ଥ ବା ଭବିଷ୍ୟତ ଉପାର୍ଜନ ଚିନ୍ତା ଘାରୁନାହିଁ । ରାଜନୀତି କରି ସେଥିରୁ ଲାଭ ଉଠାଇବା ସେମାନଙ୍କର ଖାଲି ନିଶା ବିବର୍ଜିତ ସଉକ । ଦିବାଧାୟିମାନଙ୍କର ଦୈନିକ ଯିବା ଆସିବା ୧୦/୧୨ କିଲୋମିଟର କଲାପରେ ସନ୍ଧ୍ୟାରେ କୌଣସି କଲେଜ ଉତ୍ସବରେ ଯୋଗଦେବା ପ୍ରାୟ ସଂଭବପର ହୁଏନାହିଁ । କଲେଜର ବିଭିନ୍ନ ସଂଘ, କ୍ରୀଡା ସଂଘ, ନାଟ୍ୟସଂଘ, ଅର୍ଥନୀତି, ଇତିହାସ, ଓଡ଼ିଆ, ଦର୍ଶନ ବିଜ୍ଞାନ ଆସୋସିଏସନ ସାମାଜିକ ସେବା ସମିତି Social Service Guild ର ବାର୍ଷିକ ସଭାରେ କର୍ମକର୍ତ୍ତା ନିର୍ବାଚନ ହୁଏ । କଲେଜ ଟାଇମ ମଧ୍ୟରେ ନ ହେଲେ ସେମାନଙ୍କର ଉପସ୍ଥିତି ଏଥିରେ ପ୍ରାୟ ନଥାଏ । ଫେରିବା ବେଳକୁ ଗୋଷ୍ଠିର ପଦଚାରୀ ଏକାଠି ଯାଆନ୍ତି ।

ସିଧାସଳଖ ବାଟରେ ନ ଯାଇ କିପରି କାହା ଖୋଲା ଡ଼ିଅ ବା ପ଼ରିବା କିଆରିକୁ ଡେଇଁ ରାସ୍ତା କମେଇ ହେବ ଏ ବିଷୟରେ ଅନେକ ଗବେଷଣା ଏହି ସଭ୍ୟମାନେ କରିଥାଆନ୍ତି । ଯିବାବେଳେ ସଂକ୍ଷିପ୍ତ ରାସ୍ତା ବାହାର କରିଥିବାରୁ ଜମିମାଲିକମାନଙ୍କଠାରୁ ଅନେକ ଗାଳି ଶୁଣିବାକୁ ପଡ଼େ । ଦିନେ ଦିନେ କଲେଜ କ୍ଲାସ ସରିଲେ ଏକାଠି ହୋଇ ଆମେସବୁ ଗୋରାକବର ମଧୁବାବୁଙ୍କ ସ୍ମୃତିପୀଠକୁ ଯାଉ । ସେ କହୁଥିଲେ ଦୈନିକ ପାଞ୍ଚମିନିଟ୍ ଦେଶ ଚିନ୍ତା କରିବାକୁ । ଆମ୍ଭେମାନେ ସେଇଆ ମନେ ପକାଇ ସେ ସମୟରେ ଛାତ୍ରସମାଜରେ ଅର୍ଥହୀନ ଭାବେ ଆମ୍ଭମାନଙ୍କର ଅଧିକାର ବା ଚିନ୍ତାଧାରା କିପରି କ୍ଷୁର୍ଣ୍ଣ ତାହା ଆଲୋଚନା କରୁ । କାଠଯୋଡି ବାଲିରେ ମହାତ୍ମାଗାନ୍ଧି ସଭା

କରିଥିଲେ । ସେହିଦିନୁ ଅନେକ ରାଜନୈତିକ ସଭା ସେଠାରେ ହୁଏ । ଆମ୍ଭେମାନେ ସେଠାରେ ନିଜ ଗୋଷ୍ଠିର ଆଲୋଚନା ସଭା କରୁ । ସମଧର୍ମୀ ଅନେକ ଯୋଗ ଦିଅନ୍ତି । ଛାତ୍ରାବାସରୁ ଆସି ଟାଉନ ହଲ ବା ଶ୍ରୀରାମଚନ୍ଦ୍ର ଭବନରେ କୌଣସି ସଭାରେ ଯୋଗଦେବାର ସୁବିଧା ନଥାଏ । ଆମ୍ଭେମାନେ ପ୍ରାୟ ଏଥିରେ ଭାଗ ଦେଉ । ନିଜର ଟ୍ୟୁସନ ସମୟ ସେହି ଅନୁସାରେ ଆଗ ପଛ ହୋଇଯାଏ । ଶ୍ରୀରାମଚନ୍ଦ୍ର ଭବନରେ ସେତେବେଳେ ରାଜନୈତିକ ମତବାଦ ପ୍ରଚାରର ମନା ଥାଏ ।

ସାହିତ୍ୟ ଆଲୋଚନା ହୁଏ । ବାହାରୁ କେହି ବିଶେଷ ଅତିଥି ଆସି ବକ୍ତୃତା ଦିଅନ୍ତି । ଥରେ କାକା କାଲେଲକର ମରହଟ୍ଟା ଭାଷା ସାହିତ୍ୟର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ କହିବା ପରେ ପରଦିନ ଅଧ୍ୟାପକ ଆର୍ତ୍ତବଲ୍ଲଭ ସେହିପରି ଓଡ଼ିଆ ସାହିତ୍ୟ ଉପରେ କହିଲେ । ଥରେ ପଣ୍ଡିତ ଶ୍ରୀଚନ୍ଦ୍ରମଣି ବ୍ରହ୍ମା, ଅଧ୍ୟାପକ ଗୋରୀକୁମାରଙ୍କ ଦିବଂଗତ ପିତା ସଂସ୍କୃତରେ ଅନର୍ଗଳ ବକ୍ତୃତା ଦେବା ଶୁଣିବା ସୁଯୋଗ ମିଳିଲା । ଆଗରୁ ଆମ୍ଭେମାନେ କେହି ଏତେ ଦୀର୍ଘ ସମୟର ସଂସ୍କୃତ ଭାଷଣ ଦେବା ଶୁଣି ନଥାଉ । ଶ୍ରୀରାମଚନ୍ଦ୍ର ଭବନରେ ୧୯୪୨ ବେଳକୁ ଉତ୍କଳ ଗୌରବ ପାଠାଗାର ପ୍ରତିଷ୍ଠା କରାଯାଇ ଅନେକ ନୂଆ ବହି ଅଣାଗଲା। ଆମ୍ଭମାନଙ୍କୁ ପଢ଼ିବାକୁ ମିଳିଲା । ଏହାବାଦେ ପ୍ରତିବର୍ଷ ସାହିତ୍ୟ ସପ୍ତାହ ପାଳିତ ହୋଇ ବିଭିନ୍ନ ବିଭାଗର ବକ୍ତାମାନଙ୍କର ଭାଷଣ ଶୁଣିବାର ସୁଯୋଗ ମିଳୁଥିଲା । ଓଡ଼ିଶାର ସମସ୍ତ ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ (ଆମ ଅଧ୍ୟାପକ ରତ୍ନାକର ବିପିନବିହାରୀ ଆର୍ତ୍ତବଲ୍ଲଭ ଓ ଅଧ୍ୟକ୍ଷ ପରିଜାଙ୍କୁ ମିଶାଇ) ଏହି ସାହିତ୍ୟ ସମାଜ ସହିତ ସଂପୃକ୍ତ ଥିଲେ । ଆମେ ଦିବାଧାୟୀମାନେ ଜନସାଧାରଣ (ଗଣ)ର ପ୍ରତୀକ ଥାଇ ଛାତ୍ରାବାସରେ ସୁଖମୟ ଜୀବନଯାପନ କରୁଥିବା ଅନ୍ତେବାସୀଙ୍କୁ ଜଣ (ଶ୍ରେଣୀସମାଜ)ର ପ୍ରତୀକ କହୁଥାଉ ।

କଲେଜ ୟୁନିୟନ୍ ଛାତ୍ରମାନଙ୍କ ମଧ୍ୟରେ ତର୍କ ପ୍ରତିଯୋଗୀତା ଉଦ୍ଦେଶ୍ୟରେ ସୃଷ୍ଟି ହୋଇଥିଲା । ଏଥିରେ କୌଣସି ବିଷୟବସ୍ତୁ ନିରପେକ୍ଷ ଭାବରେ ଆଲୋଚନା କରାଯାଉଥିଲା । ନିଜର ଦୃଷ୍ଟିଭଙ୍ଗି ବ୍ୟତୀତ ଅନ୍ୟର ମତାମତ ଥିଲେ ତାକୁ ସମ୍ମାନ ଦିଆଯାଉଥିଲା ଓ ନିଜ ମତ ଅଭ୍ରାନ୍ତ ବୋଲି କେହି ଭାବୁ ନଥିଲେ । ମାତ୍ର କାଳକ୍ରମେ ରାଜନୈତିକ ଚିନ୍ତାଧାରା ଏହି ତର୍କ ସବୁକୁ ପ୍ରଭାବିତ କଲା । ସଭାପତି ଉପସଭାପତି

ପ୍ରଥମେ ଅଧକ୍ଷ ବା ଅଧ୍ୟାପକ ଥିଲେ । ଛାତ୍ରମାନଙ୍କ ମଧ୍ୟରୁ ସଂପାଦକ ନିର୍ବାଚିତ ହୋଇ କାର୍ଯ୍ୟସୂଚୀ ପ୍ରସ୍ତୁତ କରୁଥିଲେ । ରାଜନୈତିକ ବିଜ୍ଞାନ ବି.ଏ. ଅର୍ଥନୀତିରେ ପାଠ୍ୟଥିଲା । ସେଥିରେ ରାଜନୈତିକ ଦର୍ଶନ ଶିକ୍ଷା ଦିଆଯାଉଥିଲା ମାତ୍ର ନିର୍ଦ୍ଦିଷ୍ଟ ମତବାଦ ପ୍ରତି ଅଙ୍ଗୀକାରବଦ୍ଧତା କାହାର ନଥିଲା । ପ୍ରତିପକ୍ଷର ରାଜନୈତିକ ଦର୍ଶନ ଆଦୌ ଅଗ୍ରହଣୀୟ ହେଉନଥିଲା । ରାଜନୈତିକ ଦଳର ପ୍ରଭାବରେ କୌଣସି ବିଷୟରେ ମୁକ୍ତ ଚିନ୍ତାର କ୍ଷେତ୍ର କ୍ରମେ ସଂକୁଚିତ ହୋଇ ଆସିଲା । ସୁବକ୍ତାଥାଇ ଅନେକ ମେଧାବୀ ଛାତ୍ର ଥିଲେ । ସେମାନେ ଏହି ଅନୁଷ୍ଠାନରେ ସମ୍ମାନିତ ହେଉଥିଲେ ମାତ୍ର କାଳକ୍ରମେ ସେମାନେ ବାଦ ପଡିଲେ ଓ ରାଜନୈତିକ ଦଳର ଦଲାଲ ସାଜି ନାମକୁ ମାତ୍ର କଲେଜ ଛାତ୍ର ଥିବା ଅନେକ ଛାତ୍ରନେତା ବାହାରି ଏହାକୁ ନିଜ କରାୟତ୍ତ କଲେ । ଆମ ସମୟରେ ବାଙ୍କବିହାରୀ ଦାସ ପ୍ରଦୀପ୍ତ କିଶୋର ଦାସ ଆଦି ମେଧାବୀ ଛାତ୍ରଥିଲେ । ସେମାନଙ୍କର ସୁଚିନ୍ତିତ ମତାମତ ଅନ୍ୟଛାତ୍ରମାନେ ଗ୍ରହଣ କରିବାକୁ ସେହିହେତୁ କୁଣ୍ଠାବୋଧ କରୁ ନଥିଲେ । ଛାତ୍ର ୟୁନିୟନ୍ ନିର୍ବାଚନ ଆମ ସମୟରେ ବ୍ୟୟ ସାପେକ୍ଷ ନଥିଲା । ନିଜ ନାମ ଲେଖି ଭୋଟ ଦେବାକୁ ଅନୁରୋଧ କରି ଚାରିଛଅ ଇଞ୍ଚର ଛପା ଚିରକୁଟ ବାଣ୍ଟିବା ଛଡା ଅନ୍ୟ ଖରଚ ପ୍ରାୟ ନଥିଲା । ହୁଏତ କେହି ପ୍ରାର୍ଥୀ ନିଜର ଅନ୍ତରଙ୍ଗ ସହାୟକମାନଙ୍କୁ ବାବୁଭାଇ ଦୋକାନରେ ଗୁଳୁରାତି ଗାଣ୍ଠିଆ ବା ମଦନ ଦୋକାନରେ ରସଗୋଲା ଦେଇ ଆପ୍ୟାୟିତ କରୁଥିଲେ । ଆଜିର କଲେଜ ଛାତ୍ରଙ୍କୁ ଅଠରବର୍ଷରେ ଭୋଟଦାନ ଅଧିକାର ପ୍ରଦାନ କରି ସାଧାରଣ ନିର୍ବାଚନରେ ଭବିଷ୍ୟତ ଭୋଟଦାତା ଭାବରେ ଗ୍ରହଣ କରାଯାଇ ସେମାନଙ୍କର ସ୍ୱାଧିନ ଚିନ୍ତା ଅପହରଣ କରାଯାଉଛି ବୋଲି ଲେଖକର ବ୍ୟକ୍ତିଗତ ମତ । ତେବେ ବହୁଚର୍ଚ୍ଚିତ ଏହି ବ୍ୟୟବହୁଳ ନିର୍ବାଚନ ଖରଚ ଓ ହିଂସାକାଣ୍ଡ ନିମିତ୍ତ କୌଣସି ରାଜନୈତିକ ଦଳ ଏହି ନିର୍ବାଚନ ପ୍ରଥା ରଦ୍ଦ କରି ମନୋନୟନ ବ୍ୟବସ୍ଥା ଚାଲୁ କରିବାକୁ କେବେ ହେଲେ ପ୍ରସ୍ତାବ ଦେଉ ନାହାନ୍ତି । ଆଗରୁ ଯଦି କୁହାଯାଉଥିଲା ସାର ରବର୍ଟ ପିଲଙ୍କ ଭାଷାରେ Let us educate our masters ଏବେ ନୀତି ହେଉଛି Let us demoralise our clientale ।



# କଲେଜରେ ଚାରିବରଷ

କଲେଜରେ ୧୯୪୦ରୁ ୧୯୪୪ ଚାରିବରଷ ପଢ଼ିଲି । ଭାରତର ରାଜନୈତିକ ମୁକ୍ତି ସଂଗ୍ରାମରେ ଏହି ସମୟରେ ବ୍ୟକ୍ତିଗତ ସତ୍ୟାଗ୍ରହ ଓ କର ବା ମର ଅଗଷ୍ଟ ବିପ୍ଳବ ବିଶେଷ ଘଟଣା ଥିଲା । ପୁଣି ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହତା ଏହି ସମୟରେ ଉପଲବ୍ଧ ହୋଇଥିଲା । ଛାତ୍ରଭାବରେ ଏହାର ପ୍ରଭାବ ଆମ୍ଭମାନଙ୍କ ଉପରେ ଗଭୀର ଥିଲା । ୧୯୩୯ ମସିହା । ହିଟଲରଙ୍କ ନେତୃତ୍ୱରେ ଜର୍ମାନୀ ପୋଲାଣ୍ଡ ଆକ୍ରମଣ କରି ଏହାର ଡାନଜିଗ ଅଞ୍ଚଳକୁ ନିଜ ଆୟତ୍ତକୁ ନେଇଯାଏ । ଏଥିରୁ ୨ୟ ବିଶ୍ୱଯୁଦ୍ଧର ସୂତ୍ରପାତ ହୁଏ । ଇଂଲଣ୍ଡ ଓ ଫ୍ରାନ୍ସ ଜର୍ମାନି ବିରୁଦ୍ଧରେ ଯୁଦ୍ଧ ଘୋଷଣା କରନ୍ତି । ଭାରତ ବର୍ଷରେ ବଡଲାଟ ଯୁଦ୍ଧ ଭାରତର ବୋଲି ଘୋଷଣା କଲେ । ଭାରତୀୟମାନଙ୍କ ବିନା ସମ୍ମତିରେ ଭାରତର ଯୋଗଦାନ କଂଗ୍ରେସ ବିରୋଧ କଲା । ଭାରତର ପୂର୍ଣ୍ଣ ସ୍ୱାଧିନତା ଦାବି ଦୋହରାଇ ଏହାର ପ୍ରତିଶ୍ରୁତି ନ ମିଳିବାରୁ ଭାରତର ୧୧ଟି ପ୍ରଦେଶ ମଧ୍ୟରୁ ୭ଗୋଟି କଂଗ୍ରେସ ଶାସିତ ପ୍ରଦେଶରେ ବିଶ୍ୱନାଥ ଦାସଙ୍କ ଓଡ଼ିଶା ଶ୍ରୀକୃଷ୍ଣ ସିଂହ ବିହାର, ଗୋବିନ୍ଦ ବଲ୍ଲଭ ପନ୍ଥ ସଂଯୁକ୍ତ ପ୍ରଦେଶ, ରବି ଶଙ୍କର ଶୁକ୍ଳ ମଧ୍ୟପ୍ରଦେଶ, ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ମାନ୍ଦ୍ରାଜ, ବାଲଗଙ୍ଗାଧର ଖେର ବମ୍ବେ, ଡକ୍ଟର ଖାଁ ସାହେବ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶର ମନ୍ତ୍ରିମଣ୍ଡଳ ଏହାର ପ୍ରତିବାଦରେ ଇସ୍ତଫା ଦେଲେ । କେବଳ ବଙ୍ଗଳା ଆସାମ, ପଂଜାବ ଓ ସିନ୍ଧୁପ୍ରଦେଶର ଲୋକପ୍ରିୟ ମିଳିତ ମନ୍ତ୍ରୀମଣ୍ଡଳ ସରକାରଙ୍କୁ ସମର୍ଥନ କରି ରହିଲା । ଇଂରେଜ ସରକାର ବିପଦର ସମ୍ମୁଖୀନ ହୋଇଥିବା ବେଳେ ଓ ଦେଶର ବୁଦ୍ଧିଜୀବୀମାନେ ହିଟଲରଙ୍କ ନାଜିବାଦ ଓ

ମୁସୋଲିନଙ୍କର ଫାସିଷ୍ଟବାଦର ବିରୋଧୀ ଥିଲେ ମଧ୍ୟ ଭାରତର ପୂର୍ଣ୍ଣ ସ୍ୱାଧୀନତା ଘୋଷିତ ନ ହେବାରୁ ଓ ଭାରତୀୟମାନଙ୍କର ମତାମତ ପ୍ରତି ସମ୍ମାନ ପ୍ରଦର୍ଶନ ନ ହେବାରୁ ଦେଶରେ ଇଂରେଜ ବିରୋଧୀ ମନୋଭାବ ପ୍ରକାଶ ପାଇଲା । ୧୯୪୦ରେ ଜର୍ମାନି ଋଷ ଆକ୍ରମଣ କଲା। ଜାପାନ ଅତର୍କିତ ଭାବରେ ଆମେରିକାର ବିମାନ ଘାଟି ହାୱାଇ ହନ ଲୁଲୁର ପାର୍ଲହାରବର ଉପରେ ଆକ୍ରମଣ କରି ବିଶ୍ୱାସଘାତକର ପ୍ରମାଣ ଦେଲା । ଆମେରିକା ନୌବାହିନୀ ବହୁତ କ୍ଷତି ସହିଲା ।

ଜର୍ମାନୀ ଓ ଇଟାଲୀ ଯୁକ୍ତରାଷ୍ଟ୍ର ଆମେରିକା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ଫଳରେ ଆମେରିକା ଯୁଦ୍ଧରେ ପଶିଲା । ସୋମନଙ୍କ ବିରୁଦ୍ଧରେ ମଧ୍ୟ ଯୁଦ୍ଧ ଘୋଷଣା କଲା । ଭାରତରେ ଯେଉଁ କମ୍ୟୁନିଷ୍ଟମାନେ ଯୁଦ୍ଧକୁ ବିରୋଧ କରୁଥିଲେ ସେମାନେ ସ୍ୱର ବଦଳାଇ ଯୁଦ୍ଧକୁ ଆମର ଯୁଦ୍ଧ ଲୋକ ଯୁଦ୍ଧ Peoples War ବୋଲି କହି ବୁଲିଲେ । ଭାରତକୁ କୌଣସି ସ୍ୱାଧିନତାର ପ୍ରତିଶ୍ରୁତି ନ ଦେବାରୁ ମହାତ୍ମା ଗାନ୍ଧି ଯୁଦ୍ଧ ବିରୋଧରେ ବ୍ୟକ୍ତିଗତ ସତ୍ୟାଗ୍ରହ ଘୋଷଣା କଲେ । ଭାରତରେ ବିନୋବା ବାଭେ ଓ ଓଡ଼ିଶାରେ ନାରୀନେତ୍ରୀ ସରଳାଦେବୀ ପ୍ରଥମ ସତ୍ୟାଗ୍ରହୀ ଥିଲେ । ସେମାନେ ସଭାରେ ଏହି ଯୁଦ୍ଧ ଆମର ନୁହେଁ ଘୋଷଣା କଲେ ସେମାନଙ୍କୁ ଗିରଫ କରି ଜେଲକୁ ନିଆଯାଉଥିଲା । ଭାରତ ରକ୍ଷା ଆଇନ ବଳରେ ବିଚାର କରାଯାଇ ସଜା ଦିଆଯାଉଥିଲା । ବରକ୍ଷକ ଭିତରେ ସମଗ୍ର ଭାରତ ବର୍ଷରେ ଏହିପରି ତେତିଶ ହଜାର ସତ୍ୟାଗ୍ରହୀ କାରାବରଣ କଲେ । ଓଡ଼ିଶାରେ ପୂର୍ବତନ ମନ୍ତ୍ରୀ ବ୍ୟବସ୍ଥାପକ ଓ ପ୍ରତିଷ୍ଠିତ ନେତାମାନେ ଏଥିରେ ଅନ୍ତର୍ଭୁକ୍ତ ଥିଲେ । ଯୁଦ୍ଧରେ ମିତ୍ରଶକ୍ତିମାନେ ଉଡାଜାହାଜ ଆକ୍ରମଣର ଶିକାର ହେଲେ । ଫ୍ରାନ୍ସ, ଜର୍ମାନି ଦଖଲକୁ ଚାଲିଗଲା । ପୋଲାଣ୍ଡ ପରେ ହଲାଣ୍ଡ ବେଲଜିଅମ, ଡେନମାର୍କ ଜର୍ମାନୀର କରଗତ ହେଲା । ଯୁଦ୍ଧ ଉତ୍ତର ଆଫ୍ରିକାକୁ ବ୍ୟାପିଗଲା । ଇଂରେଜ ଓ ଫ୍ରାନ୍ସ ଯୁଦ୍ଧରେ ପରାଜିତ ହେବାର ସଂଭାବନା ଦେଖାଗଲା । ଭାରତବର୍ଷରେ ୧୯୩୯ ମସିହାରୁ ତ୍ରିପୁରା କଂଗ୍ରେସରେ ସୁଭାଷଚନ୍ଦ୍ର ବୋଷ ସଭାପତି ନିର୍ବାଚିତ ହୋଇଥିଲେ ମଧ୍ୟ ଗାନ୍ଧିବାଦୀମାନେଙ୍କ ଅସହଯୋଗରୁ ଇସ୍ତଫା ଦେଲେ ଓ ରାଜେନ୍ଦ୍ରପ୍ରସାଦ ସଭାପତି ହେଲେ । ୧୯୪୦ରୁ ମୌଲାନା ଆବୁଲ କାଲାମ ଆଜାଦ କଂଗ୍ରେସର ନୂତନ ସଭାପତି ନିର୍ବାଚିତ ହେଲେ ଓ ସେ ଦଳ ତରଫରୁ ବଡଲାଟଙ୍କ

ସହିତ ମନ୍ତ୍ରଣା କଲେ । ୧୯୪୧ ମସିହା ଜାନୁଆରି ମାସରେ ସୁଭାଷ ବୋଷ ଇଂରେଜ ଗୋଇନ୍ଦା ପୋଲିସ ଆଖିରେ ଧୂଳି ଦେଇ ଦେଶ ବାହାରକୁ ଚାଲିଗଲେ । ୧୯୪୧ ବର୍ଷଟି ଦେଶର ରାଜନୈତିକ ଅନିଶ୍ଚିତତା ମଧ୍ୟରେ କଟିଲା । ଓଡ଼ିଶାର ସବୁସ୍ତରରେ ପାରଳା ମହାରାଜାଙ୍କର ଓଡ଼ିଶା ପ୍ରଦେଶର ନିର୍ମାତା ଭାବରେ ଅତ୍ୟନ୍ତ ସମ୍ମାନନୀୟ ସ୍ଥାନ ଥାଏ । ସେ କଂଗ୍ରେସର କେତେକ ଅସନ୍ତୁଷ୍ଟ ବ୍ୟବସ୍ଥାପକ ସ୍ୱାଧିନ ମନୋନୀତ ସଭ୍ୟମାନଙ୍କ ସହାୟତାରେ ଏକ ମିଳିତ ମନ୍ତ୍ରୀମଣ୍ଡଳ ଗଠନ କରି ରାଜ୍ୟ ଶାସନଭାର ଗ୍ରହଣ କଲେ । ଏହି ମିଳିତ ମନ୍ତ୍ରୀମଣ୍ଡଳ ୧୯୪୧ ନଭେମ୍ବର ମାସରେ ଶପଥ ନେଲା ଓ ୧୯୪୪ ଜୁନ ପର୍ଯ୍ୟନ୍ତ ଚାଲୁଥିଲା । ପାରଳା ମହାରାଜାଙ୍କ ବ୍ୟତୀତ ଓଡ଼ିଶାର ପ୍ରସିଦ୍ଧ ଶିକ୍ଷାବିଦ୍ ପଣ୍ଡିତ ଗୋଦାବରିଶ ମିଶ୍ର ଓ ମୁସିଲିମଲିଗ ସଭ୍ୟ ଭଦ୍ରଖର ଓକିଲ ଶୋଭାନ ଖାଁ ଏଥିରେ ମନ୍ତ୍ରୀ ଥିଲେ । ଶ୍ରମିକ ନିର୍ବାଚନ ମଣ୍ଡଳିରୁ ନିର୍ବାଚିତ ପ୍ୟାରୀ ଶଙ୍କର ରାୟ ଏକମାତ୍ର ପାର୍ଲାମେଣ୍ଟରୀ ସେକ୍ରେଟାରୀ ଥିଲେ । ପୂର୍ବ କଂଗ୍ରେସ ମନ୍ତ୍ରୀମଣ୍ଡଳରେ ଚାରିଜଣ ଥିଲେ । ମନ୍ତ୍ରୀମାନେ ମଧ୍ୟ କଂଗ୍ରେସ ପରି ପାଞ୍ଚଶହ ଟଙ୍କା ମାସିକ ବେତନ ନେଲେ । ସୁଭାଷ ବୋଷଙ୍କର ଫରୱାର୍ଡ ବ୍ଲକ ଦେଶରେ ଓ ପ୍ରଦେଶରେ କାମ କରୁଥିଲା । ସେମାନେ ଏହି ମନ୍ତ୍ରୀ ମଣ୍ଡଳକୁ ସମର୍ଥନ କରୁଥିଲେ । ଗଂଜାମର ଲୋକପ୍ରିୟ ନେତା ଓ ବ୍ୟବସ୍ଥାପକ ଦିବାକର ପଟ୍ଟନାୟକ ଏହି ମନ୍ତ୍ରୀମଣ୍ଡଳକୁ ସମର୍ଥନ କରୁଥିଲେ । ଲୋକମୁଖରେ ପ୍ରଚାରିତ ହେଉଥାଏ ଯଦି ଜାପାନିମାନେ କଲିକତା ବୋମାମାଡରେ ଉଡାଇଦେଇ ଓଡ଼ିଶାରେ ଓହ୍ଲାଇ ପଡନ୍ତି ତେବେ ଏହି ସରକାର ସେମାନଙ୍କୁ ସମର୍ଥନ ଦେବ । ଜାପାନ ମଧ୍ୟ ଭାରତଛାଡ ଆନ୍ଦୋଳନର ବନ୍ଦୀମାନେ ଥିବା ବ୍ରହ୍ମପୁର ଜେଲ ଉପରେ ବୋମାମାଡକରି ପାଚେରୀ ଆଦି ଭାଙ୍ଗି ଦେଇଥିଲା । କୌଣସି ନେତା ପାରାଚୁଟ ସାହାଯ୍ୟରେ ନିଆଯାଇ ପାରିନଥିଲେ । ପାରଳା ମନ୍ତ୍ରୀମଣ୍ଡଳ ପଣ୍ଡିତ ନୀଳକଣ୍ଠଙ୍କ ଅଧ୍ୟକ୍ଷତାରେ ବିଶ୍ୱବିଦ୍ୟାଳୟ ଗଠନ କମିଟିକୁ ପୁନର୍ଜ୍ଜିବିତ କଲେ । ୧୯୪୨-୪୩ରେ ବଜେଟରେ ଅର୍ଥ ବ୍ୟବସ୍ଥା କରିଥିଲେ । ସେମାନେ ସମ୍ବଲପୁର ବାଲେଶ୍ୱର, ପୁରୀରେ କଲେଜ ଖୋଲିଲେ ଆଇ.ଏ ଶ୍ରେଣୀ ଆରମ୍ଭ କରି । ଜୟପୁର ମହାରାଜା ଜୟପୁରରେ ଓ ପାଟଣା ମହାରାଜା ବଲାଙ୍ଗିରରେ ମଧ୍ୟ ନିଜର କଲେଜ ଖୋଲିଲେ । ବଲାଙ୍ଗିରରେ ବାଣିଜ୍ୟ ଶିକ୍ଷା ମଧ୍ୟ ଥିଲା । ଏହା ଓଡ଼ିଶାରେ ପ୍ରଥମ ।

ରାଜ୍ୟପାଳ ଲୁଇସ ସମ୍ବଲପୁରରେ ଏକଦା ଲୋକପ୍ରିୟ ଜିଲ୍ଲାପାଳ ଥିବା ବେଳେ ସେଠାରେ କଲେଜ ଓ ମେଡିକାଲ ସ୍କୁଲ ସ୍ଥାପନ ନିମିତ୍ତ ଉଦ୍ୟମ କରୁଥିଲେ । କଲେଜ ଖୋଲାଗଲା ମାତ୍ର ଭାରତସରକାରଙ୍କ ପରବର୍ତ୍ତିତ ନୀତି ଅନୁସାରେ ଆଉ ମେଡିକାଲ ସ୍କୁଲ ନ ରଖିବା ଠିକ୍ ହେଲା । ପର୍ଯ୍ୟାୟକ୍ରମେ ସେହି ଅନୁସାରେ କଟକରେ ମେଡିକାଲ କଲେଜ (ପରେ ଶ୍ରୀରାମଚନ୍ଦ୍ରଭଞ୍ଜଙ୍କ ନାମରେନାମିତ) ମଧ୍ୟ ଖୋଲାଗଲା । ଓଡ଼ିଶା ବିଶ୍ୱବିଦ୍ୟାଳୟ ଆଇନ ପାସ ହେଲାପରେ ଶିକ୍ଷାର ପ୍ରସାର ଲାଗି ୧୯୪୩ ନଭେମ୍ବର ୨୭ ତାରିଖରେ ରେଭେନ୍ସା କଲେଜ ପଶ୍ଚିମ ଛାତ୍ରାବାସରେ ଭୂତପୂର୍ବ ୱାର୍ଡେନଙ୍କର ବାସଗୃହରେ ବିଶ୍ୱବିଦ୍ୟାଳୟ ଖୋଲାଗଲା । ଆମ ଅଧ୍ୟାପକ ଭି.ଭି. ଜନ ଏହାର ପ୍ରଥମ ରେଜିଷ୍ଟାର ହେଲେ । ଆମ ଅଧ୍ୟକ୍ଷ ବିଶିଷ୍ଟ ଆନ୍ତର୍ଜାତିକ ବୈଜ୍ଞାନିକ ପ୍ରାଣକୃଷ୍ଣ ପରିଜା ନିଜ ପଦବୀ ସହିତ ଏହାର ଅବୈତନିକ କୁଳପତି ହେଲେ । ମନୋନୀତ ସିନେଟ ଆଦି ମଧ୍ୟ କାର୍ଯ୍ୟକଲା । ଏ ସବୁ ସତ୍ତ୍ୱେ ଦେଶର ଅନିଶ୍ଚିତ ରାଜନୈତିକ ଭବିଷ୍ୟତ, ଇଂରେଜମାନଙ୍କର ନିଜ ରକ୍ଷଣେ ଅସମ୍ଭବ ଅବସ୍ଥା ଓ ଭାରତରେ ତାଙ୍କର ଦୋଳାୟମାନ ସ୍ଥିତି କଲେଜର ଶିକ୍ଷାଦାନରେ ଏହାର ପ୍ରଭାବ ଆଣିଥିଲା ।

୧୯୪୨ରେ ବ୍ରିଟେନ ସାରଷ୍ଟାଫୋର୍ଡ କ୍ରିପସ୍‌ଙ୍କ ନେତୃତ୍ୱରେ ଭାରତୀୟମାନଙ୍କୁ ମନାଇବାକୁ ଏକ ପ୍ରତିନିଧି ଦଳ ପଠାଇଲେ । ସେମାନେ ଭବିଷ୍ୟତରେ ଭାରତରେ ସ୍ୱାଧିନତା ସ୍ୱୀକାର କଲେ । ମହାତ୍ମା ଗାନ୍ଧି ଏହାକୁ ଆଗଲା ତାରିଖ ଥିବା ବ୍ୟାଙ୍କ ଚେକ A post dated cheque କହି ପ୍ରତ୍ୟାଖାନ କଲେ । ଶେଷରେ କଂଗ୍ରେସ ଅଗଷ୍ଟ ମାସରେ କର ବା ମର ଘୋଷଣା କରି ଭାରତ ଛାଡ ଆନ୍ଦୋଳନ ଆରମ୍ଭ କଲା । ଗାନ୍ଧି ଓ ଅନ୍ୟାନ୍ୟ ନେତୃସ୍ଥାନୀୟ ପ୍ରତିନିଧି ହରେକୃଷ୍ଣ ମହତାବଙ୍କ ସହିତ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟମାନେ ଓ ମହାଦେଶ ଦେଶାଇ, ଶ୍ରୀମତୀ କସ୍ତୁରିବା ଗାନ୍ଧି ପୁନାର ଆଗ ଖାଁ ପ୍ରାସାଦରେ ବନ୍ଦୀ ଭାବରେ ରଖାଗଲେ । କଂଗ୍ରେସକୁ ଏକ ବେଆଇନ ଅନୁଷ୍ଠାନ ବୋଲି ଘୋଷଣା କରାଗଲା ଓ ଭାରତ ରକ୍ଷା ଆଇନ ବଳରେ ଏହି ନେତାମାନଙ୍କୁ ବନ୍ଦୀଭାବେ ରଖାଗଲା । ମହାତ୍ମା ଗାନ୍ଧିଙ୍କର ଦେଶ ପ୍ରତି ଆହ୍ୱାନ ସମଗ୍ର ଦେଶରେ ବିଦ୍ରୋହର ବହ୍ନି ଚାଳିଦେଲା । ପୁଲିଶ ଗୁଳିମାଡରେ ଅନେକ ଲୋକ ମଲେ । ସାମ୍ୟବାଦୀ ଜୟ ପ୍ରକାଶ ନାରାୟଣ, ଅରୁଣା ଆସଫ ଅଲି, ରାମ

ମନୋହର ଲୋହିଆ, ସୁରେନ୍ଦ୍ରନାଥ ଦ୍ୱିବେଦୀ ଆଦି ଅନେକ ଏହି ଆନ୍ଦୋଳନକୁ ତେଜାଇ ରଖିଲେ । ଦେଶର ସବୁ ଶ୍ରେଣୀର ଲୋକ ଏହି ଆନ୍ଦୋଳନରେ ଯୋଗଦେଲେ । କଂଗ୍ରେସର ଅହିଂସା ନୀତି ଥିଲେ ମଧ୍ୟ ଏହି ଦମନଲୀଳାର ପ୍ରତିକ୍ରିୟା ରୂପେ ଦେଶରେ ହିଂସା ଓ ଅରାଜକତା ଜାରି ରହିଲା । ଦେଶ ବାହାରେ ଜାପାନିମାନେ ମାଡିଆସିଲେ । ସେମାନେ ସିଂଘାପୁର ଓ ବ୍ରହ୍ମଦେଶ ଦଖଲ କଲେ । ରେଙ୍ଗୁନ ସେମାନଙ୍କର ଦଖଲକୁ ଗଲା ଓ ଯୁଦ୍ଧ ଭାରତରେ ଉତ୍ତରପୂର୍ବ ସୀମାନ୍ତରେ ପହଞ୍ଚିଗଲା । ନେତାଜି ସୁଭାଷ ଚନ୍ଦ୍ର ବୋଷ ମାଲୟରେ ଜାପାନର ସହଯୋଗରେ ଭାରତୀୟ ଜାତୀୟ ସେନା **Indian National Army** ଗଠନ କଲେ ଓ ସିଙ୍ଗାପୁରରେ ସ୍ୱାଧିନ ଭାରତର ପ୍ରତିଷ୍ଠା ଘୋଷଣା କଲେ । ଭାରତର ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜ ସେମାନଙ୍କର ଦଖଲରେ ରହିଲା ।

ବନ୍ଦୀଭାବରେ ମହାତ୍ମାଗାନ୍ଧି ଇଂରେଜ ସରକାରଙ୍କଠାରୁ ଜବାବ ମାଗିଲେ । ଇଂଲଣ୍ଡରେ ଯୁଦ୍ଧ ଆରମ୍ଭ ହେବା ପରେ ଉଇନିଷ୍ଟନ ଚର୍ଚ୍ଚିଲଙ୍କ ନେତୃତ୍ୱରେ ଏକ ଜାତୀୟ ସରକାର ଗଢ଼ା ଯାଇଥାଏ । ଶ୍ରମିକ ନେତା ଆଟଲି ଏଥିରେ ଉପ ପ୍ରଧାନମନ୍ତ୍ରୀ ଥିଲେ ମଧ୍ୟ ଜାଠ ଦଳର ନେତାଭାବେ ଚର୍ଚ୍ଚିଲ ସରକାରୀ ନୀତି ନିୟନ୍ତ୍ରଣ କରୁଥିଲେ । ଦମନର ପ୍ରତିକ୍ରିୟା ସ୍ୱରୂପ ଦେଶରେ ପ୍ରବଳ ହିଂସାକାଣ୍ଡ ଓ ଅରାଜକତା ନିମିତ୍ତ ବଡଲାଟ ମହାତ୍ମାଗାନ୍ଧିଙ୍କୁ ଦୋଷ ଦେବାରୁ ଅହିଂସାର ଶ୍ରେଷ୍ଠ ପୂଜାରୀ ଭାବରେ ସେ ପୁନାର ଆଗ ଖାଁ ପାଲେସରେ ୧୯୪୩ ଫେବୃଆରି ମାସରେ ମହାତ୍ମାଗାନ୍ଧି ସରକାରଙ୍କ ନିଷ୍କ୍ରିୟତାର ନିନ୍ଦାକରି ନୈତିକ ଚାପ ଆଣିବାକୁ ଦୀର୍ଘ ୨୧ ଦିନ ଅନଶନ ଆରମ୍ଭ କଲେ । ବଙ୍ଗଳାରେ ଭୀଷଣ ଦୁର୍ଭିକ୍ଷ ଫଳରେ ପ୍ରଶାସନିକ ତ୍ରୁଟି ହେତୁ ତିରିଶ ଲକ୍ଷ ଲୋକ ଅନାହାରରେ ମଲେ । ସରକାର କଂଗ୍ରେସ ଓ ମୁସଲିଗ ଭିତରେ କୌଣସି ବୁଝାମଣା ହୋଇ ପାରିଲା ନାହିଁ ।

୧୯୪୪ ଫେବୃୟାରୀ ୨୨ ତାରିଖରେ କସ୍ତୁରବା ଗାନ୍ଧି ଜେଲରେ ପ୍ରାଣତ୍ୟାଗ କଲେ । ଆଗରୁ ମହାଦେବ ଦେଶାଇ ମଧ୍ୟ ସେହିଠାରେ ଜୀବନ ଉତ୍ସର୍ଗ କରିଥିଲେ । ତାଙ୍କର କ୍ରମାଗତ ସ୍ୱାସ୍ଥ୍ୟରେ ଅବନତି ଦେଖି ଇଂରେଜ ସରକାର ମହାତ୍ମାଗାନ୍ଧିଙ୍କୁ ମୁକ୍ତି ଦେଲେ । ଏହା ତାଙ୍କର ଶେଷ କାରାବାସ, ଜୀବନ କାଳ ମଧ୍ୟରେ ସେ ୨୩୩୮ ଦିନ

ମୋଟ କାରାଗାରରେ କଟାଇଥିଲେ । ଦେଶ ବାହାରେ ନେତାଜି ସୁଭାଷବୋଷ ସ୍ୱାଧିନ ଭାରତର ରେଡିଓରୁ ଭାଷଣ ଦେଇ ଦେଶବାସୀମାନଙ୍କୁ ଭାରତରେ ଇଂରେଜ ଶାସନକୁ ଅଚଳ କରିବାକୁ ପରାମର୍ଶ ଦେଲେ । ସାଧାରଣ ଲୋକେ ଯୁଦ୍ଧଫଳରେ ଘୋର ଅନାଟନର ସମ୍ମୁଖୀନ ହେଲେ । ଖାଦ୍ୟ ଦ୍ରବ୍ୟର ଘୋର ଅଭାବ ସହିତ ସୁତାକଳମାନେ ଯୁଦ୍ଧସାମଗ୍ରୀ ପ୍ରସ୍ତୁତ କରୁଥିବାରୁ ବସ୍ତ୍ର ଉତ୍ପାଦନ କମିଗଲା ଓ ଦେଶରେ ଘୋର ବସ୍ତ୍ରାଭାବ ଦେଖାଗଲା । ଇଂରେଜ ସରକାରର ଏହା ଶେଷ ସମୟ ବୋଲି ସାଧାରଣ ଲୋକ ଯୁଦ୍ଧରେ ବ୍ରିଟେନର କ୍ରମାଗତ ପରାଜୟ ଓ ଇଂଲଣ୍ଡ ଉପରେ ବୋମାମାଡ଼ରୁ ଧରି ନେଇଥିଲେ । କଲିକତା ସହର ଉପରେ ବୋମାମାଡ଼ ହେଲା ଓଡ଼ିଶାରେ ମଧ୍ୟ ଉଡାଜାହାଜ ଆକ୍ରମଣ ପ୍ରତିରୋଧକ ବ୍ୟବସ୍ଥା ନିଆଗଲା । କଲେଜ ଶ୍ରେଣୀ ଗୃହ ତଳ ମହଲାରେ ବୋମା ଆକ୍ରମଣରୁ ରକ୍ଷା ନିମିତ୍ତ Baffle wall ତିଆରି ହେଲା । ଜାପାନିମାନେ ଓହ୍ଲାଇଲେ ସେମାନଙ୍କର ଗମନାଗମନକୁ ପ୍ରତିହତ କରିବାକୁ ଉପକୂଳ ଅଞ୍ଚଳରେ ସରକାର ସବୁ ଡଙ୍ଗା ସାଇକେଲ ଆଦି ଜବତ କରିନେଲେ । ବଡ ବଡ ଚାଷୀମାନଙ୍କର ଗଚ୍ଛିତ ଧାନଭଣ୍ଡାର ମଧ୍ୟ ସରକାର ନିଜ ହାତକୁ ନେଇଗଲେ ।

କଲେଜ ପାଠପଢ଼ାରେ ୧୯୪୧ ମସିହାର ଦେଶଖବର ବିଶେଷ ପ୍ରଭାବ ପକାଇ ନ ପାରିଥିଲେ ମଧ୍ୟ ଚାରିଆଡ଼େ ଏକ ଅନିଶ୍ଚିତତାର ବାୟୁମଣ୍ଡଳ ଘେରିରହିଥିଲା । ୧୯୯୨ ଫେବୃଆରି ମାସରେ ବିଶ୍ୱବିଦ୍ୟାଳୟ ପରୀକ୍ଷା ଆରମ୍ଭ ହେବାର ଥିଲା । ବର୍ଷ ଆରମ୍ଭରେ ଜାପାନୀ ବୁଡ଼ାଜାହାଜ ମାଡ଼ରେ ଇଂରେଜ ସେନ୍ୟବାହୀ ଏକ ଜାହାଜ କୁଜଙ୍ଗ ଉପକୂଳରେ ଜଖମ ହେଲା । ଏଥିର ନାବିକ ଓ ଯାତ୍ରୀମାନଙ୍କୁ ଉଦ୍ଧାରକରି ମେଡ଼ିକାଲ କଲେଜରେ ଚିକିତ୍ସା କରାଗଲା ଓ ସେମାନଙ୍କୁ କଲେଜ ହଷ୍ଟେଲ ବନ୍ଦ କରାଯାଇ ସେଠାରେ କିଛି ସମୟ ପାଇଁ ରଖାଗଲା । ଯାହାହେଉ ବିଶ୍ୱବିଦ୍ୟାଳୟ ପରୀକ୍ଷା ଯଥାବିଧି ଶେଷହେଲା ଓ ପରୀକ୍ଷା ଫଳ ଠିକ ସମୟରେ ବାହାରିଲା । ଓଡ଼ିଶାରେ ଆଇ.ଏ ରେ ଦେବାର୍ଚ୍ଚନ ଭୋଇ ପ୍ରଥମ ହେଲେ । ରଘୁନାଥ ନାୟକ ଦ୍ୱିତୀୟ ଓ ମାଟ୍ରିକରେ ପ୍ରଥମ ସ୍ଥାନ ପାଇଥିବା ସର୍ବେଶ୍ୱର ଦାସ ରାଜନୀତି ଲିପ୍ତଯୋଗୁ ଅନ୍ୟ ଜଣେ ଜିଲ୍ଲା ବୃତ୍ତି ପ୍ରାପ୍ତ ନିତ୍ୟାନନ୍ଦ ଦରଜିଙ୍କ ସହିତ ୩ୟ ସ୍ଥାନକୁ

ଖସି ଆସିଲେ । ମୋର ଫଳାଫଳ ମତେ ଅତ୍ୟନ୍ତ ଆନନ୍ଦ ଦେଲା । ମୁଁ ୨ୟ ଶ୍ରେଣୀ ପାଇଲି । ପୂର୍ବରୁ ମାଟ୍ରିକ ବୃତ୍ତିଧାରୀ ଓ ୧ମ ଶ୍ରେଣୀଛାତ୍ର ୨ୟ ଓ ୩ୟ ଶ୍ରେଣୀକୁ ଖସି ଆସିଥାଆନ୍ତି । ତେଣୁ ବି.ଏ. ରେ ଦରମାଛାଡ଼ ବିଷୟରେ ମୁଁ ପ୍ରାୟ ନିଶ୍ଚିତ ହେଲି । ବନ୍ଧୁ ବାଇଧର ମଧ୍ୟ ପାସ କରିଥାଏ । ଭଲ ନମ୍ବର ରଖିଥାଏ । ତା ଘରେ ଏହି ଉତ୍ସବ ମନାଇଲୁ । କେନାଲ ପାଣି ଭରତି ପୋଖରୀରେ ଦୀର୍ଘ ସମୟ ଧରି ବୁଡ଼ିବା, ମାଛ ଧରିବା ଆଦି ଦୁଇଦିନ କଲାପରେ ମୋର ଗାଲୁଆ Mumps ଆରମ୍ଭ ହେଲା । ଏହା ଏକଡ଼ିଆଁ ରୋଗ । ଖାଦ୍ୟ ମଧ୍ୟ ଗିଳିବା କଷ୍ଟ ହେଲା । ଘରକୁ ପଳାଇ ଆସିଲି । ବାଲିକୁଦା ଜିଲ୍ଲାବୋର୍ଡ଼ ଡ଼ାକ୍ତରଖାନାରେ ସୀମିତ ସୁବିଧାଥିବା ସତ୍ତ୍ୱେ ସହୃଦୟ ଡ଼ାକ୍ତର ହରେକୃଷ୍ଣ ପରିଜା ମାଗଣାରେ ମୋର ଅସ୍ତ୍ର ଉପଚାର କଲେ । ପେନ୍‌ସିଲନ ଆବିଷ୍କାର ପୂର୍ବରୁ ଲୁହାକାଠିରେ ଠେଲି ଘାଆ ଡ୍ରେସିଂ କରିବା ଅତିଶୟ ପୀଡ଼ାଦାୟକ ଥିଲା । ଶୁଖିବାକୁ ପନ୍ଦରଦିନରୁ ବେଶି ଲାଗୁଥିଲା ଓ ତୁତିଆ Copper Sulphate ଘସି କ୍ଷତସ୍ଥାନକୁ ବଢ଼ାଇଦିଆଯାଉ ନଥିଲା । ମୁଁ ବି.ଏ ଶ୍ରେଣୀରେ ଅର୍ଥନୀତିରେ ଅନର୍ସ ନେଇ ନାମ ଲେଖାଇବାକୁ ଦରଖାସ୍ତ ଫର୍ମ ପଠାଇଲି ଓ ତାହା ସହିତ କିପରି ପରିସ୍ଥିତିରେ ମୋର ନାମ ଲେଖାରେ ବିଳମ୍ବ ହେବ ତାହା ଡ଼କ୍ତର ସାର୍ଟିଫିକେଟ ସହିତ ଜଣାଇ ଅନ୍ୟ ଏକ ଦରଖାସ୍ତ ଅଧ୍ୟକ୍ଷଙ୍କୁ ଦେଲି । ତାହା ମଂଜୁର ହେଲା । ପ୍ରାୟ ଜୁଲାଇ ମାସ ଅଧାବେଳକୁ ମୋର ନାମ ଲେଖାହେଲା । ଟ୍ୟୁସନର ଅର୍ଥ ଏଥିପାଇ ଯଥେଷ୍ଟ ଥିଲା । ଆମ ପଦଚାରୀ ଗୋଷ୍ଠିର ସମସ୍ତେ ପାସ କରିଥାଉ । ଯାଦବଚନ୍ଦ୍ରସେନ ପଢ଼ା ଛାଡ଼ି ଦେଲେ । ନିତ୍ୟାନନ୍ଦ ସିଂହ ଇତିହାସ ଅନର୍ସ ନେଲେ । ଅନ୍ୟମାନେ (ଯୋଗୀ ଗୋବିନ୍ଦ ବେଣୁଧର ପୁରୁଷୋତ୍ତମ) ଅନର୍ସ ନ ନେଇ କେମିତି ଡ଼ିଷ୍ଟିଂସନ ପାଇବେ (ପ୍ରତି ବିଷୟରେ ହାରାହାରି ୫୦ ବା ତତୋଧିକ) ସେଥିପ୍ରତି ସଯତ୍ନ ହୋଇ ରହିଲେ । ସୁବଳ ଆରେଷ୍ଟ ହେବା କଥା ସୂଚାଇଛି । ସତ୍ୟବାଦୀ ମିଶ୍ରେ ଅଗଷ୍ଟ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣକରି ପଢ଼ା ଛାଡ଼ିଦେଲେ । ବାଧ୍ୟତାମୂଳକ ଇଂରେଜି ଓ ଓଡ଼ିଆ ସହିତ ମୁଁ ଇତିହାସ ଆଉ ଗୋଟିଏ ବିଷୟ ବାଛିଲି । ଅର୍ଥନୀତି ଅନର୍ସ ନେଲାପରେ ଇତିହାସ ବିଭାଗର ମୁଖ୍ୟ ଅଧ୍ୟାପକ ଘନଶ୍ୟାମ ଦାସ ମତେ ଡ଼କାଇପଠାଇ ମୁଁ ଓଡ଼ିଶାରୁ (ଆମ କଲେଜରୁ) ପ୍ରଥମ ହୋଇଛି ତେଣୁ ଇତିହାସ ଅନର୍ସ ନେବାକୁ ପରାମର୍ଶ

ଦେଲେ । ମୋର ନମ୍ବର ସେତେବେଳକୁ ଆସି ସାରିଥାଏ । ତାଙ୍କୁ ହାରାହାରି ୪୯ ରଖିଛି ବୋଲି କହିଲି । ଏହା ୨ୟଶ୍ରେଣୀ ପାଇ ମଧ୍ୟ ଯଥେଷ୍ଟ ନ ଥିଲା । ସେ ଏହିପାଇ ଖାତା ଦେଖାରେ ପକ୍ଷପାତିତା କରିଥିବା ପାଟଣା କଲେଜର ଦୁଇଜଣ ଅଧ୍ୟାପକଙ୍କୁ ଅତି କଠୋର ଭାବରେ ସମାଲୋଚନା କରି ଗାଳି ଦେଲେ । ତର୍କଶାସ୍ତ୍ରରେ ହାରାହାରି ୭୫ ନମ୍ବର ରଖିଥିବାରୁ ଏହା ମୋତେ ୨ୟ ଶ୍ରେଣୀ ପାଇବାରେ ସାହାଯ୍ୟ କରିଥିଲା । ୩ୟ ବର୍ଷର ପଢ଼ାପଢ଼ି ନିୟମିତ ଭାବରେ ଆରମ୍ଭ ହେଲା । କଲେଜ ଦରମା ଛାଡ଼ ପାଇ ଦରଖାସ୍ତ କଲି ଓ ତାହା ମଧ୍ୟ ମଞ୍ଜୁର ହେଲା । ମାତ୍ର ଭାରତଛାଡ଼ ଆନ୍ଦୋଳନ ଯୋଗୁ କଲେଜ ପ୍ରାୟ ଆଠରୁ ଦଶ ସପ୍ତାହ ବନ୍ଦ ରହିଲା । ଅଗଷ୍ଟ ୭ ତାରିଖ ଦିନ ଇତିହାସ ପଢ଼ାଉଥିବା ବେଳେ ଅଧ୍ୟାପକ ଘନଶ୍ୟାମ ଦାସ ସେ ଦିନ ପୁନାରେ ବସିବାକୁ ଥିବା କଂଗ୍ରେସ କାର୍ଯ୍ୟକାରୀ କମିଟିର ନୂଆ ମନୋବୃତ୍ତିକୁ ଲକ୍ଷ୍ୟକରି ଆମ୍ଭମାନଙ୍କୁ ଶୁଣାଇଥିଲେ ଯେ ହୁଏତ କଂଗ୍ରେସକୁ ବେଆଇନ ଘୋଷଣାକରି ସରକାର ଶିକ୍ଷା ଅନୁଷ୍ଠାନମାନ ଅନିର୍ଦ୍ଦିଷ୍ଟକାଳ ପାଇ ବନ୍ଦ କରିଦେଇପାରନ୍ତି ଓ ଏହା ତାଙ୍କର ଏବରଷର ଶେଷ ଲେକଚର ହୋଇପାରେ । ପ୍ରକୃତରେ ତାହା ସତ୍ୟ ହେବାକୁ ଲାଗିଲା । ଆନ୍ଦୋଳନ ହେବାପରେ କଲେଜ ଅଫିସରେ ନିଆଁ ଲଗାଇବାକୁ ଉଦ୍ୟମ ହେଲା ଓ ତାହା ପ୍ରତିହତ ହେଲା । ଛାତ୍ରମାନଙ୍କର ଏକ ଶୋଭାଯାତ୍ରା ଛାତ୍ରୀମାନଙ୍କୁ ଆଗରେ ରଖି ମେଡ଼ିକାଲ କଲେଜ ଭିତରେ ପ୍ରବେଶ କଲାପରେ ଏହା ଉପରେ ପୋଲିସ ଲାଠିମାଡ଼ କଲା ଓ ଅନେକ ଛାତ୍ର ରକ୍ତାକ୍ତ ହେଲେ । ଏହା ପରେ କଲେଜ ବନ୍ଦ କରିବା ଛଡ଼ା ଅନ୍ୟ ପନ୍ଥା ନଥିଲା । କଲେଜ ହଷ୍ଟେଲରୁ ଅନେକ ଛାତ୍ର ମଧ୍ୟ ପୁଲିଶ ହାତରେ ବନ୍ଦୀ ହେଲେ ।

ଆମର ଅଧ୍ୟାପକମାନେ ସରକାରୀ ଚାକିରିଆ ଥିଲେ । ପଦାର୍ଥବିଜ୍ଞାନ ଅଧ୍ୟାପକ ନାରାୟଣ ମିଶ୍ର ଓ ସଂସ୍କୃତ ଅଧ୍ୟାପକ ଆର୍ତ୍ତବଲ୍ଲଭମହାନ୍ତି ରାୟସାହେବ ଓ ଦର୍ଶନଶାସ୍ତ୍ର ଅଧ୍ୟାପକ ବିପିନ ବିହାରି ରାୟ ରାୟବାହାଦୁର ଉପାଧି ଭୂଷିତ ଥିଲେ । ଅଧ୍ୟକ୍ଷ ପ୍ରାଣକୃଷ୍ଣ ପରିଜା ଇଂରେଜ ସରକାରଙ୍କଠାରୁ OBE (Order of the Britsh Empire) ଉପାଧି ପାଇଥିଲେ । ସେ ମଧ୍ୟ ୧୯୨୯ ମସିହାରେ ବିହାର ଓଡ଼ିଶା ବିଧାନ ସଭାରେ ପାଟଣା ବିଶ୍ୱବିଦ୍ୟାଳୟ ବିଲ ଆଲୋଚନା ସମୟରେ ଓଡ଼ିଶାର ସ୍ୱାର୍ଥରକ୍ଷା ନିମିତ୍ତ ସରକାର ତରଫରୁ ମନୋନୀତ ବ୍ୟବସ୍ଥାପକ ଥିଲେ । ମାତ୍ର ଏସବୁ ସତ୍ତ୍ୱେ ସେମାନଙ୍କର ଦେଶପ୍ରେମ

ଜାତିପ୍ରେମ ଉପରେ କେହି କେବେ ପ୍ରଶ୍ନ ଉଠାଇବାକୁ ସାହସ କରୁନଥିଲେ । ୧୯୨୦ ଉତ୍କଳ ସମ୍ମିଳନୀ କଂଗ୍ରେସ ଆଦର୍ଶ ଗ୍ରହଣ କରିବାପରେ ସରକାରୀ କର୍ମଚାରୀ ଏହାର ସଭ୍ୟ ହେଲେ ନାହିଁ । କଟକରେ Orissa Peoples Association ଓଡ଼ିଶା ପିପୁଲସ ଆସୋସିଏସନ ନାମରେ ଏକ ଅନୁଷ୍ଠାନ ଓଡ଼ିଶାର ସ୍ୱାର୍ଥରକ୍ଷା ନିମିତ୍ତ ଗଠିତ ହୋଇଥାଏ ଓ ଏହି ବିଶିଷ୍ଟ ଅଧ୍ୟାପକମାନେ ଏହାର ତୁଙ୍ଗ ସଭ୍ୟ ଥିଲେ । ଉତ୍କଳଛାତ୍ର ସମ୍ମିଳନୀ ୧୯୨୭ ମସିହାରେ ବାଲେଶ୍ୱରରେ ଅନୁଷ୍ଠିତ ହୋଇଥିଲା ଓ ଏହାର ସଭାପତି ଥିଲେ ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା । ଏହିମାନେ ଯେକୌଣସି ହିଂସାକାଣ୍ଡର ବିରୋଧି ଥିଲେ ଓ ଛାତ୍ରମାନେ ଆନ୍ଦୋଳନରେ ଭାଗନେଇ ପାଠପଢ଼ାଛାଡ଼ିଲେ ଓଡ଼ିଶାର ପଛୁଆଁ ରହିବା ଦୁର୍ନାମ କେବେ ଘୁଞ୍ଚିବ ନାହିଁ ବୋଲି ମତ ପ୍ରକାଶ କରୁଥିଲେ । ଅଧିକାଂଶ ଦିବାଧ୍ୟାୟୀଛାତ୍ର ଏହିମତର ସମର୍ଥକ ଥିଲେ । ପଢ଼ାପଢ଼ି ନିର୍ବିଘ୍ନରେ ଚାଲୁ ଏହା ସେମାନେ ଚାହୁଁଥିଲେ । ହଷ୍ଟେଲରୁ ରଘୁନାଥ ନାୟକ ଗିରଫ ହୋଇଗଲେ । ସେ ଆଇ ଏ ପରୀକ୍ଷାରେ ଓଡ଼ିଶାରେ ୨ୟ ହୋଇଥିଲେ । ସାଧାରଣ ମଧ୍ୟବିତ୍ତ ପରିବାରରୁ ଆସିଥିଲେ । ଆନ୍ଦୋଳନ ଫଳରେ ପାଠପଢ଼ା ଛାଡ଼ିଲେ । ବହୁବର୍ଷ ପରେ ପୁଣି ବି.ଏ ଏମଏ ଘରୋଇ ଭାବରେ ପରୀକ୍ଷା ଦେଇ ଯାଜପୁର ବରି କଲେଜରେ ଇଂରେଜି ଅଧ୍ୟାପକ ଥିଲେ । ସବୁ ବିଷୟରେ ତାଙ୍କର ଦଖଲ ଥିଲା । ସେମିତି ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ ପୁରୀ ଜିଲ୍ଲା ସ୍କୁଲର ଛାତ୍ରଥାଇ ଓଡ଼ିଶାରେ ମାଟ୍ରିକରେ ପ୍ରଥମ ହୋଇଥିବା ସର୍ବେଶ୍ୱରଦାସଙ୍କୁ ଅଷ୍ଟମ ନବମ ଶ୍ରେଣୀରେ ମୁକାବିଲା କରି ପ୍ରଥମ ହେଉଥିଲେ । ସେ ମଙ୍ଗୁ ମଠରେ ରହି ମଠର ପ୍ରସାଦ ପାଇ ମାଟ୍ରିକ ଯାଏ ପଢ଼ିଥିଲେ ଓ ଜିଲ୍ଲାବୃତ୍ତି ପାଇଥିଲେ । ରାଜନୀତିରେ ସଂଶ୍ଳିଷ୍ଟ ହୋଇ ତାଙ୍କର କୃତୀତ୍ୱ ଉଲ୍ଲେଖକନୀୟ ନଥିଲା । ସେ ଅଗଷ୍ଟ ଆନ୍ଦୋଳନରେ ଭାଗନେଇ ସାମ୍ୟବାଦୀ ଷଡ଼ଯନ୍ତ୍ର ମକଦମାରେ ମୁଦାଲା ହୋଇ ଜେଲଦଣ୍ଡ ପାଇଲେ । ପଢ଼ାପଢ଼ି ଛାଡ଼ି ଦେଲେ । ଆଜୀବନ କଂଗ୍ରେସ ବା ସାମ୍ୟବାଦୀ ଦଳରେ ଥିଲେ ମଧ୍ୟ ତାଙ୍କୁ କୌଣସି ରାଜନୈତିକ ସୁବିଧା ମିଳିନଥିଲା । ଏବୁଇ ମେଧାବୀ ଛାତ୍ର ଭାବାବେଶରେ ଆନ୍ଦୋଳନାତ୍ମକ ପନ୍ଥା ଗ୍ରହଣ କରି ପାଠପଢ଼ା ଛାଡ଼ିବାର କରୁଣ ପରିଣତି ଆମ୍ଭମାନଙ୍କ ଜୀବନରେ ଶିକ୍ଷଣୀୟ ଥିଲା ।

ଉଡ଼ାଜାହାଜ ଆକ୍ରମଣରୁ ରକ୍ଷା ପାଇବା ନିମନ୍ତ ପ୍ରଦେଶ ତମାମ ସହର ଓ ଗ୍ରାମ ସବୁଠାରେ ପଦକ୍ଷେପ ନିଆଯାଉଥାଏ । କଲେଜରେ ତଳମହଲାର ସବୁ କକ୍ଷ ଆଗରେ ବୋମା ପଡ଼ିଲେ ଏହାର Splinter ଭଗ୍ନଖଣ୍ଡମାନଙ୍କରୁ ରକ୍ଷା ପାଇବା ପାଇଁ Baffle Wall ପ୍ରତିରୋଧକ କାନ୍ଥମାନ ଗଢ଼ାଯାଇଥିଲା । ସହର ଓ ଗ୍ରାମରେ ବୋମା ମାଡ଼ରୁ ରକ୍ଷା ପାଇବା ପାଇଁ ବଡ଼ ବଡ଼ Trench ଖାତ ଖୋଳାଯାଇଥିଲା । ଲୋକମାନଙ୍କୁ ସତର୍କ ଘଣ୍ଟି Siren ଶୁଣିବା ପରେ ପଳାଇଯାଇ ଏହି ଖାତମାନଙ୍କରେ ଶୋଇପଡ଼ି ଆଶ୍ରୟ ନେବାକୁ କୁହାଗଲା । ସହରରେ ଆଲୁଅମାନ କାହାଳିନଳିଦେଇ. ବା କଳାରଙ୍ଗଦେଇ ନିଷ୍ପ୍ରଭ କରାଗଲା ଯେପରି ଆକାଶମାର୍ଗରୁ କେହି କୌଣସି ଆଲୋକିତ ସ୍ଥାନ ଠାବ କରିପାରିବ ନାହିଁ । କେବଳ କଟକ ସହରରେ ସେତେବେଳେ ବିଦ୍ୟୁତ ଆଲୋକ ଥାଏ ଓ ରାସ୍ତା ଖୁଣ୍ଟିମାନଙ୍କରେ ବିଜୁଳି ଆଲୁଅ ଦିଆଯାଉଥାଏ । ଲଣ୍ଠନ ଆଲୁଅ ବିଶିଷ୍ଟ ଲାଇଟ ଖୁଣ୍ଟମାନଙ୍କରେ ସେମିତି ଲଣ୍ଠନ କାଚକୁ କଳାକରାଯାଇଥାଏ ।

ଉଡ଼ାଜାହାଜ ଆକ୍ରମଣ ପ୍ରତିହତ ବ୍ୟବସ୍ଥାରେ Air raid precautionରେ କଲେଜ ଅଧକ୍ଷଙ୍କର କଟକ ସହରରେ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ବ୍ୟତୀତ ଏକ ମୁଖ୍ୟ ଭୂମିକା ଥିଲା । ଅଣକଂଗ୍ରେସ ସାଧାରଣ ସମାଜସେବୀମାନେ ସରକାରଙ୍କୁ ଏହି କାର୍ଯ୍ୟରେ ସମର୍ଥନ କରୁଥାନ୍ତି ।

୧୯୪୨ରେ କଲେଜରେ ବିଏ ଶ୍ରେଣୀରେ ବାଧତାମୂଳକଭାବେ ଇଂରେଜ ତିନୋଟି ପତ୍ର ଓ ଓଡ଼ିଆ ଗୋଟିଏ ବାଧତାମୂଳକ ଥିଲା । ଅର୍ଥନୀତି ଅନର୍ସରେ ଛଅଗୋଟି ପତ୍ର ଓ ଇତିହାସରେ ତିନିଗୋଟି ପତ୍ରଥାଏ । ଇଂରେଜିରେ ଗଦ୍ୟ ନାଟକ ସହିତ ଗୋଟିଏ ପଦ୍ୟ ଗୋଟିଏ ଓ ରଚନା ସାରାଂଶ ଲେଖନ ବ୍ୟାକରଣ ଆଦି ୩ୟ ପତ୍ରଥାଏ । ଏହି ସମୟରେ ଅଧ୍ୟାପକ ସୁନ୍ଦରମ୍ ଆମର ବିଏ ଶ୍ରେଣୀରେ ପଦ୍ୟ ପଢ଼ାଉଥାଆନ୍ତି । ବେଶି ସମୟ ସେ ଇଂରେଜୀ ଅନର୍ସ ଓ ଏମ.ଏ ଶ୍ରେଣୀରେ ପଢ଼ାନ୍ତି । ସୁନ୍ଦରମ ଅନ୍ୟମାନଙ୍କପରି ଠିଆହୋଇ ଅଧ୍ୟାପକମାନଙ୍କ ଉଚ୍ଚ ଡ଼େସ୍କରେ ଭରାଦେଇ ପଢ଼ାନ୍ତି ନାହିଁ । ନିଜ ଚଉକିରେ ଇଷତ ନଇଁ ରହି ଆରମ୍ଭରୁ ଶେଷ ଯାଏ ପଢ଼ାନ୍ତି । ଦିନେ ମଧ୍ୟାହ୍ନ ପୂର୍ବରୁ ସେ ୩ୟବର୍ଷରେ ପଦ୍ୟ ପଢ଼ାଉଥାଆନ୍ତି । ବିଷୟ ୱାଡ଼ସୱାର୍ଥକର (Wordssworth Ode on Immortality) । ଏହି ସମୟରେ ସେହି ବଡ଼ ରୁମର

ବାରଣ୍ଡାରେ ଶିକ୍ଷାମନ୍ତ୍ରୀ ପଣ୍ଡିତ ଗୋଦାବରୀଶ, ଶିକ୍ଷା ବିଭାଗ ଡ଼ିରେକ୍ଟର ଶ୍ୟାମା ଚରଣ ତ୍ରିପାଠୀ ଓ ଅଧକ୍ଷ ପରିଜା ଆସି ଠିଆହେଲେ । ଅଧକ୍ଷ ଭିତରେ ପଶିବାକୁ ଅନୁମତି ମାଗିଲେ । ତାହାପରେ ୩ ଜଣଯାକ ପଛରେ ଗୋଟିଏ ବେଞ୍ଚରେ ବସିଲେ । ସମସ୍ତେ ଖଣ୍ଡେ ଲେଖାଏଁ ପଦ୍ୟବହି Palgraves Golden Treassury Book IV ମାଗିନେଲେ । ସୁନ୍ଦରମ ବିନା ସଂକୋଚରେ ପଢ଼ାଇବାରେ ଲାଗିଲେ । ନାନାପ୍ରକାର ଧର୍ମ ଦର୍ଶନ ଶାସ୍ତ୍ର ଗ୍ରନ୍ଥ କବି ଲେଖକଙ୍କର ରଚନାରୁ ଉଦ୍ଧୃତ କରି ସେ ସମଗ୍ର ପଦ୍ୟର ବାଖ୍ୟା କଲେ ଓ ସମୟ ଶେଷ ହେବା ଜଣାପଡୁ ନଥିଲା । ମାନନୀୟ ଅତିଥି ୩ଜଣ ୨୦/୨୫ ମିନିଟ ବସି ଚାଲିଗଲେ । ପଠନଶୈଳୀ ଉପରେ ସେମାନଙ୍କର ଉପସ୍ଥିତି ବା ଅନ୍ତର୍ଦ୍ଧାନର କୌଣସି ପ୍ରଭାବ ପଡ଼ି ନଥିଲା । ପରେ ଆମ୍ଭେମାନେ ଜାଣିବାକୁ ପାଇଲୁ ଓଡ଼ିଶାର ପ୍ରାର୍ଥୀମାନଙ୍କୁ ଉପେକ୍ଷା କରି ମାନ୍ଦ୍ରାଜରୁ ସିଧାସଳଖ ୧ମ ଶ୍ରେଣୀ ଅଧାପକଭାବରେ ତାଙ୍କୁ ଆଣିଥିବାରୁ ସରକାର ବହୁ ସମାଲୋଚନାର ସମ୍ମୁଖୀନ ଥିଲେ । ତେଣୁ ତାଙ୍କୁ ସ୍ଥାୟୀ କରିବା ପୂର୍ବରୁ ଏହା କରାଯାଇଥିଲା । ସୁନ୍ଦରମ୍‌ଙ୍କର ଶିକ୍ଷାଦାନ ଶୈଳୀ ଓ ପାଣ୍ଡିତ୍ୟ ଯେ ଅସାଧାରଣ ଥିଲା ଏହା ସମସ୍ତେ ସ୍ୱୀକାର କରନ୍ତି । ସେ ବାଲେଶ୍ବର କଲେଜର ଅଧକ୍ଷ ଓ ପରେ ଓଡ଼ିଶା ଲୋକସେବା ଆୟୋଗର ସଭ୍ୟଭାବେ କାର୍ଯ୍ୟକରି ଅବସର ନେଲେ । ପରିଣତ ବୟସରେ ମୃତ୍ୟୁର କେତେମାସ ଆଗରୁ ମଧ ସେ ନିଜ ଛାତ୍ରମାନଙ୍କୁ ସଂଖୋଳିବାକୁ ଓଡ଼ିଶା ଆସିଥିଲେ । ଚାରିବରଷ ମଧରେ ସେମିତି ଆଉ ଥରେ ଆମର ୧ମବର୍ଷ ଇତିହାସ ଅଧାପକ ଜଗଦାନନ୍ଦ ମହାନ୍ତି ଭାରତ ଇତିହାସରୁ ଶେରଶାହା ପଢ଼େଇବା ବେଳେ ଅଧକ୍ଷ ପରିଜା ତାଙ୍କ ଅନୁମତି ନେଇ ଶ୍ରେଣୀରେ ଅଧଘଣ୍ଟାରୁ ଅଧିକ ସମୟ ବସି ତାଙ୍କ ବକ୍ତବ୍ୟ ଶୁଣିଥିଲେ । ଅଧାପକ ଜଗଦାନନ୍ଦ ଶେରସାହାଙ୍କ ବିଷୟରେ କିଛି Anecdote ଉପାଖ୍ୟାନ କହି ନିଜ ବକ୍ତବ୍ୟକୁ ଚିତ୍ତାକର୍ଷକ କରିଥିଲେ । ସେ ତତ୍କାଳୀନ ଶିକ୍ଷାସଚିବ ସାମୁଏଲ ଦାସଙ୍କର ଜାମାତା ଥିଲେ । ତାଙ୍କ ନିଯୁକ୍ତି ଦେବାରେ ସରକାର ସମାଲୋଚିତ ହୋଇଥିବାରୁ ଅଧକ୍ଷଙ୍କୁ ତାଙ୍କ ଅଧାପନା ଉପରେ ରିପୋଟ ମଗାଯାଇଥିଲା । ଏପ୍ରକାର ମୂଲ୍ୟାୟନ ବର୍ତ୍ତମାନ କଳ୍ପନା କରିହେବ ନାହିଁ । ଲୋକସେବା ଆୟୋଗଦ୍ୱାରା ମନୋନୀତ ହେବାପରେ ଜଣେ ନିଜର ଭବିଷ୍ୟତ

ନେଇ ଆଉ ଚିନ୍ତିତ ନୁହେଁ । ଦକ୍ଷତା ମୂଲ୍ୟାୟନର କୌଣସି ମାପକାଠି ମଧ୍ୟ ନିର୍ଦ୍ଧାରିତ ହୋଇନାହିଁ ।

ଇଂରେଜି ଅଧ୍ୟାପନା ପ୍ରଫେସର ସୁନ୍ଦରମଙ୍କ ବ୍ୟତୀତ ଜନାଥନ ମହାନ୍ତି, ନାରାୟଣ ମୋହନ ଦେବଙ୍କ ଉପରେ ନ୍ୟସ୍ତ ଥାଏ । ନୂତନ ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ନିଯୁକ୍ତି ପାଇଥିବା ଅଧ୍ୟପକ ଜନ ଆମ ୩ୟ ବର୍ଷ ସେକ୍ସପିୟର ନାଟକ ପଢ଼ାଇଥିଲେ । ଓଡ଼ିଆରେ କୌଣସି ନିର୍ଦ୍ଧାରିତ ପାଠ୍ୟପୁସ୍ତକ ନଥାଏ । ଏହି ଶ୍ରେଣୀରେ କେହି ମଧ୍ୟ ଆଗ୍ରହୀ ନ ଥାଆନ୍ତି ମାତ୍ର ଗ୍ରୁପ ଓଡ଼ିଆରେ ଅଭିମନ୍ୟୁ ସାମନ୍ତସିଂହାରଙ୍କର ବିଦଗ୍ଧ ଚିନ୍ତାମଣି ପାଠ୍ୟଥାଏ । ଗ୍ରନ୍ଥର ପ୍ରଥମ ଛାନ୍ଦର ପ୍ରଥମ ପଦ 'ଅପ୍ରାକୃତ ପ୍ରେମମୂର୍ତ୍ତି ଜୟରାଧାହରି, ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି' । ସର୍ବମାନ୍ୟ ଅଧ୍ୟାପକ ଆର୍ତ୍ତବାକୁ ଏହାର ଅର୍ଥ ବୁଝାଇବାକୁ ୨/୩ ଗୋଟି ବକ୍ତୃତା ଦିଅନ୍ତି । ତାହା ଏପରି ଚିତ୍ତାକର୍ଷକ ଓ ଶିକ୍ଷଣୀୟଥାଏ ଯେ ଆମ୍ଭେମାନେ ବାହାର ଛାତ୍ର ମଧ୍ୟ ସେ ଶ୍ରେଣୀରେ ବସି ଏହା ନିଃଶବ୍ଦରେ ଶୁଣୁଥାଉ । ଓଡ଼ିଆ ସାହିତ୍ୟରେ ବୈଷ୍ଣବ ଚିନ୍ତାଧାରା, ଷଡ଼ଦର୍ଶନ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦର୍ଶନର ବିଭିନ୍ନ ବିଭାଗରେ ତାଙ୍କର ପାଣ୍ଡିତ୍ୟ ଏଥିରେ ପ୍ରକଟିତ ହୋଇଥାଏ । ଇତିହାସର ୩ ପତ୍ର ମଧ୍ୟରୁ ପ୍ରଥମରେ ଖ୍ରୀ ୧୭୪୦ରୁ ମର୍ଡ଼ର୍ଣ୍ଣ ଇଉରୋପ Modern Europe ଅଧ୍ୟାପକ ଘନଶ୍ୟାମ ପଢ଼ାନ୍ତି । ତାହା ଏପରି ଚିତ୍ତାକର୍ଷକ ହୁଏ ଯେ ଆରମ୍ଭ ଓ ଶେଷ ଆମ୍ଭେମାନେ ଜାଣିପାରୁ ନାହିଁ । ସେ କଲେଜ ନାଟ୍ୟପରିଷଦର ଉପ-ସଭାପତି । ନାଟକୀୟଭାବେ ଜୟପରାଜୟ ବର୍ଣ୍ଣନା କରନ୍ତି ସାରା ଭାରତବର୍ଷରେ ସେ ସମୟରେ Modern Europe ଚିତ୍ତାକର୍ଷକ ଭାବରେ ପଢ଼ାଇବାରେ ତାଙ୍କର ସୁନାମ ଥିଲା । ୨ୟ ପତ୍ରରେ ଇଂଲଣ୍ଡର ସାମ୍ବିଧାନିକ ଇତିହାସ ଧାରା ମଧ୍ୟ ସେହି ଅଧ୍ୟାପକ ପଢ଼ାନ୍ତି । ୩ୟ ପତ୍ର ପ୍ରାଚୀନ ଓ ମଧ୍ୟଯୁଗର ଭାରତୀୟ ଇତିହାସ ୧୫୨୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ । ତାହା ଅଧ୍ୟପକ ଜଗଦାନନ୍ଦ ପଢ଼ାଉଥିଲେ । ମଝିରେ ଅଧ୍ୟାପକ ବୈଦ୍ୟନାଥ ରଥ (ପରେ ଶିକ୍ଷାବିଭାଗ ଡ଼ିରେକ୍ଟର) କିଛିଦିନ ପାଇ ଆସି ଭାରତ ଇତିହାସ ପଢ଼ାଇଥିଲେ । ସେ ନିଜେ ନାଟ୍ୟାମୋଦୀଥିବାରୁ ତାଙ୍କର ଉପସ୍ଥାପନାରେ ନାଟକୀୟତା ଥିଲା । ଅର୍ଥନୀତିରେ ଅନର୍ସରେ ୬ଟି ପତ୍ର (ପାସର ୩ଗୋଟି ପତ୍ରକୁ ମିଶାଇ) ଥାଏ । ଅଧ୍ୟାପକ ଦୁଇଜଣ ରୋହାତଗି ଓ ସଦାଶିବ ମିଶ୍ର । ଅଧ୍ୟାପକ ବର୍ଦ୍ଧନ

ଅବସର ନେଇଥାନ୍ତି । ସାମୟିକ ଅନ୍ୟ କେହି ପଢ଼ାଇଲେ ମଧ୍ୟ ତାହାର କୌଣସି ପ୍ରଭାବ ବିଦ୍ୟାର୍ଥୀମାନଙ୍କ ଉପରେ ପଡ଼ିନଥିଲା । ଅର୍ଥନୀତିର ପ୍ରଥମ ପତ୍ର Analytical and Descriptive Economics ଅନୁଶୀଳନ ଓ ବର୍ଣ୍ଣନାତ୍ମକ ନୀତି ସଦାଶିବବାବୁ ପଢ଼ାନ୍ତି । ୨ୟ ପତ୍ରରେ ମୁଦ୍ରାବ୍ୟବସ୍ଥା ବ୍ୟାଙ୍କି ଆର୍ନ୍ତଜାତୀୟ ବାଣିଜ୍ୟ ସାର୍ବଜାନୀନ ଅର୍ଥନିଯୋଗ Curreucy Banking International Trade and Public Finance ଅଧ୍ୟାପକ ରୋହତଗି ପଢ଼ାଉଥିଲେ । ଏହା ସହିତ ସେ ୫ମ ପତ୍ରରେ ରାଜନୀତି ବିଜ୍ଞାନ ଆମେରିକା ଜର୍ମାନୀ ସୁଇଜରଲାଣ୍ଡ ଇଟାଲି ଓ ଋଷିଆର ସମ୍ବିଧାନ ସହିତ ଭାରତ ଓ ଇଂଲଣ୍ଡର ସଂବିଧାନ ଷଷ୍ଠପତ୍ରରେ ମଧ୍ୟ ପଢ଼ାଉଥିଲେ । ସଦାଶିବବାବୁ ଅର୍ଥନୀତିର ତତ୍ତ୍ୱ ବ୍ୟତୀତ ୩ୟ ପତ୍ରରେ Indian Economic Problem ଭାରତୀୟ ଅର୍ଥନୀତିର ସମସ୍ୟା ଓ ୪ର୍ଥ ପତ୍ରରେ ଭାରତ ଓ ଇଂଲାଣ୍ଡର ଅର୍ଥନୈତିକ ଇତିହାସ ପଢ଼ାଉଥିଲେ । ଅନର୍ସ ଶ୍ରେଣୀରେ ବାରଗୋଟି ସିଟଥାଏ । ଚତୁର୍ଥ ବର୍ଷକୁ କେତେକ ଛାଡ଼ି ଦିଅନ୍ତି । ତେଣୁ ଆଠ ଦଶଜଣ ଶିକ୍ଷାର୍ଥୀ ଧରି ପଢ଼େଇବାକୁ ଶେଷ ତିନିପତ୍ର ଚତୁର୍ଥ ପଞ୍ଚମ ଷଷ୍ଠ ଅତି ଆକର୍ଷଣୀୟ ହୁଏ । ୩ୟ ବର୍ଷରେ ଅଗଷ୍ଟ ଆନ୍ଦୋଳନ ହେତୁ ଶିକ୍ଷାଦାନ ବ୍ୟାହତ ହୋଇଥାଏ । ତାହାର ଭରଣା ନିମିତ୍ତ ୧୯୪୩ ପୂଜା ଛୁଟି ପୂର୍ବରୁ ନୋଟିସ ବୋର୍ଡ଼ରେ ଦୁଇ ଅଧ୍ୟାପକ ଜଣାଇଲେ । ପୂଜାଛୁଟିରେ ରୁମ ନଂ ତାରିରେ ଅମୁକ ତାରିଖରେ ଲିଖିତ ସମୟରେ ଅଧ୍ୟାପକ ରୋହାତଗି ଓ ଅମୁକ ଅମୁକ ତାରିଖରେ ଅଧ୍ୟାପକ ସଦାଶିବ ମିଶ୍ର କ୍ଲାସ ନେବେ । ଯଦି ବିଦ୍ୟାର୍ଥୀ ଚାହାନ୍ତି ସେ ଯୋଗଦାନ କରିପାରନ୍ତି । ନିର୍ଦ୍ଧାରିତ ସିଲାବସର ପାଠ ଶେଷ କରିବାକୁ ଏହି ମାନନୀୟ ଅଧ୍ୟାପକମାନଙ୍କର ବ୍ୟଗ୍ରତା ସହିତ ଯୋଗ ଦେବାର ଛାତ୍ରମାନଙ୍କର ନିଜ ମରଜି ନିଶ୍ଚିତଭାବରେ ଏକ ସ୍ୱତଃ ଶିକ୍ଷା ଅନୁକୂଳ ବାତାବରଣ ସୃଷ୍ଟି କରିଥିଲା । ଅନ୍ୟ କିଛି ବିଷୟରେ କେତେକ ଛାତ୍ର ଅନିୟମିତ ପଢ଼ାପଢ଼ି ହେତୁ ପରୀକ୍ଷା ସେ ବର୍ଷ ନ ଦେଇ ଆରବର୍ଷକୁ ରହିଯିବାର ଦୃଷ୍ଟାନ୍ତ ଅର୍ଥନୀତିରେ ଦେଖିବାକୁ ମିଳି ନ ଥିଲା । ୩ୟ ବର୍ଷ ଓ ୪ର୍ଥ ବର୍ଷ ପାଠପଢ଼ା ଏମିତି ଚାଲିଲା ।

କଲେଜ ଜୀବନର ଏକ ସ୍ମରଣୀୟ ଦିବସ କଲେଜ କମେମୋରେସନ Commemoration ସ୍ମାରକୀଦିବସ । ଏହା ପୁରାତନ ଛାତ୍ରସଂଘ ତରଫରୁ ପାଳିତ ହୁଏ ।

ଡ଼ିସେମ୍ବର ମାସର ଶେଷ ଆଡ଼କୁ କଲେଜ ପ୍ରାୟ ବନ୍ଦଥାଏ । ପ୍ରାୟ ଅଧିକାଂଶ ପୁରାତନଛାତ୍ର ଓଡ଼ିଶାର ଚାରିଆଡୁ ଆସି ଯୋଗଦିଅନ୍ତି । କଲେଜ ପ୍ରତିଷ୍ଠା ଦିନଠାରୁ ପ୍ରତିବର୍ଷ କେଉଁମାନେ ପାସକଲେ ତାର ଗୋଟିଏ ତାଲିକା ଟଙ୍ଗାଯାଉଥିଲା । ନୂତନ କର୍ମକର୍ତ୍ତା ନିର୍ବାଚନ କରାଯାଏ । ତା ପରେ ସେମାନେ ବରିଷ୍ଠତା ଅନୁସାରେ ଧାଡ଼ିକରି କଲେଜ ପରିକ୍ରମା କରନ୍ତି । ଆମଥିବା ବର୍ଷମାନଙ୍କରେ ରାୟବାହାଦୁର ଭିକାରି ଚରଣ ପଟ୍ଟନାୟକ ଓକିଲ ଓ ଅଭଙ୍ଗା କଣ୍ଟେଇର ଉଦ୍‌ଭାବକ ସର୍ବାଗ୍ରେ ତାଙ୍କ ଧଳା ଲମ୍ବ ନିଶ ହଲାଇ ଚାଲିବା ଛାତ୍ରମାନଙ୍କୁ ଆମୋଦିତ କରୁଥାଏ । ଏହି ଅବସରରେ ଗୋଟିଏ କୃଷି ଓ ଶିଳ୍ପ ପ୍ରଦର୍ଶନୀ ମଧ୍ୟ ହୁଏ । କୃଷି ବିଭାଗ ସେମାନଙ୍କର ବିଦ୍ୟାଧରପୁର ଫାର୍ମର ନୂତନ ଧରଣର ଧାନ ଓ ଅନ୍ୟାନ୍ୟ ଫସଲ ମଞ୍ଜି ଦେଖାନ୍ତି । କୃଷକମାନଙ୍କ ସକାଶେ ଏହା ବିକ୍ରିୟ ପାଇ ଥାଏ । ଡ଼କ୍ଟର ପରେ ପଦ୍ମଶ୍ରୀ ଭେଙ୍କଟାଚଲମ ଅଧକ୍ଷ ପରିଜାଙ୍କ ଅଧିନରେ ଧାନ୍ୟ ଗବେଷଣା କରି ଡ଼କ୍ଟରେଟ ପାଇଥାଆନ୍ତି । ତାଙ୍କ ଗବେଷଣାରୁ ଲବ୍ଧ କ୍ଷାଠିକା ଧାନ ବିଶେଷ ଲୋକପ୍ରିୟହୁଏ । ସେଠାରେ ବହୁ ଜନ ସମାଗମ ହୁଏ । ଶିଳ୍ପ ବିଭାଗ ଓଡ଼ିଶାର ବିଭିନ୍ନ ଅଞ୍ଚଳର ଶିଳ୍ପଜାଙ୍କ ଦ୍ରବ୍ୟ ସଂଗ୍ରହକରି ଦେଖାନ୍ତି । କାଠ ଶିଙ୍ଘ ପଥର ବିଭିନ୍ନ ଧାତୁରେ ପ୍ରସ୍ତୁତ ଦ୍ରବ୍ୟମାନ ଏଠାରେ ପ୍ରଦର୍ଶିତ ହୁଏ । ବିକ୍ରୟ ମଧ୍ୟ ହୁଏ ଭିକାରି ଚରଣଙ୍କର ଅଭଙ୍ଗା କଣ୍ଢେଇମାନ ମଧ୍ୟ ଖୁବ ଲୋକମାନଙ୍କର ମନକୁ ପାଏ । ଆମେ ରଦି କାଗଜ ଛିଣ୍ଡା କନା ଆଦି ଫୋପାଡ଼ିଦେଉଥିବା ଓ ଓଡ଼ିଶାରେ ଉପଲବ୍ଧ ଶୋଲ ତାଳପତର ଆଦି ଏହା ପ୍ରସ୍ତୁତିରେ ବ୍ୟବହୃତ ହୋଇଥାଏ । କଲେଜର ପଦାର୍ଥବିଜ୍ଞାନ, ରାସାୟନ, ଉଦଭିଦ, ପ୍ରାଣୀବିଜ୍ଞାନ ତରଫରୁ ମଧ୍ୟ ସେମାନେ କରୁଥିବା ପରୀକ୍ଷା Experiment ମାନ ଲୋକମାନଙ୍କୁ ଦେଖାଯାଇ ବିଜ୍ଞାନକୁ ଲୋକପ୍ରିୟ କରିବାକୁ ଉଦ୍ୟମ ହୁଏ । କୃଷି ବିଭାଗ କିଛିଦିନ ଆଗରୁ କିଛି ଗଛର ଚାରା ଫୁଲର କୁଣ୍ଡ ପ୍ରସ୍ତୁତ କରି ରଖିଥାଆନ୍ତି ଓ ସେସବୁ ଦର୍ଶକମାନେ ଆଦରର ସହିତ ଖରିଦ କରିନେଇଥାଆନ୍ତି । ଅପରାହ୍ନରେ ଏକ ଶୈକ୍ଷିକ ସମାବେଶ ହୁଏ । ଓଡ଼ିଶାର ବହୁ ପ୍ରତିଷ୍ଠିତ କବି ଲେଖକ ଆଇନଜୀବି ଏଥିରେ ଯୋଗଦିଅନ୍ତି । ଭାରତର ଜଣେ ସୁପ୍ରତିଷ୍ଠିତ ବୁଦ୍ଧିଜୀବିଙ୍କୁ ଏଥିରେ ଉଦବୋଧନ ନେବାକୁ ନିମନ୍ତ୍ରଣ କରାଯାଇଥାଏ । ଆମେ ଥିବା ସମୟରେ ପଦାର୍ଥବିଜ୍ଞାନରେ ନୋବେଲ ପୁରସ୍କାର ପ୍ରାୟ ସି.ଭି.ରମନ ଆଲାହାବାଦ ବିଶ୍ୱବିଦ୍ୟାଳୟର

କୁଳପତି ବିଶିଷ୍ଟ ଶିକ୍ଷାବିଦ ଡ଼କ୍ଟର ଅମରନାଥ ଝା ଓ ଶେଷବର୍ଷ ବିଶିଷ୍ଟ ରାଷ୍ଟ୍ରନେତା ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଉଦବୋଧନ ଦେଇଥିଲେ । ରାଜଗୋପାଳାଚାରୀଙ୍କ ଭାଷଣ ଶୁଣିବାକୁ ବିଶେଷ ଭିଡ ହୋଇଥିଲା । ମେଘ ବରଷିବା ସତ୍ତ୍ୱେ ସମସ୍ତେ ନିରବତା ରକ୍ଷା କରି ତାଙ୍କ ଭାଷଣ ଶୁଣୁଥିଲେ । ସେତେବେଳେ ଅନ୍ୟତୁଙ୍ଗ କଗ୍ରେସ ନେତାମାନେ ଜେଲରେ ଥାଆନ୍ତି ଓ ମହମଦଅଲି ଜିନ୍ନା ତାଙ୍କର ପାକିସ୍ଥାନ ଦାବି ଖୁବ ଜୋରରେ ଦୋହରାଉ ଥାଆନ୍ତି ସେତେବେଳେ ରାଜଗୋପାଳାଚାରି କଣ କହିବେ ତାହା ଶୁଣିବାକୁ ସମସ୍ତେ ଉତ୍କଣ୍ଠାର ସହିତ ଅପେକ୍ଷା କରିଥାଆନ୍ତି । ଦର୍ଶକମାନଙ୍କ ମଧ୍ୟରେ ଗୋରା ସାହେବ ଆଇସିଏସ ସଚିବମାନେ ମଧ୍ୟ ବସି ଥାଆନ୍ତି । ପ୍ରଥମେ ଏହା ଏକ ସରକାରୀ କଲେଜ ଏଠାରେ ରାଜନୀତି ଚର୍ଚ୍ଚା କରିବାର କ୍ଷେତ୍ରନୁହେଁ ଓ ଅଧକ୍ଷ ପରିଜାସାହେବ ଜଣେ ଅନୁଗତ ସର୍ବଭାରତୀୟ କର୍ମଚାରୀ କହି ସେ ତାଙ୍କ ଭାଷଣ ଆରମ୍ଭ କଲେ । ସେ ଗୋଟିଏ ଉଦାହରଣ ଦେଲେ । ତାଙ୍କ ପିନ୍ଧା ଖଦଡ଼ ଲୁଗାଟି ଅନେକ ଦିନ ବ୍ୟବହାରପରେ ଜୀର୍ଣ୍ଣ ହୋଇଗଲାଣି ଜାଗାକୁ ଜାଗା ଚିରି ଆସିଲଣି । ତାକୁ ଚିରି ଦୁଇଖଣ୍ଡ କରିଦେଲେ । ଦୁଇଟି ବସ୍ତ୍ର ବାହାରି ପାରିବ । ଖଣ୍ଡେ ପିନ୍ଧିହେବ ଓ ଆଉ ଖଣ୍ଡେ ଅଙ୍ଗବସ୍ତ୍ର ହେବ । ଏମିତି ନାନା ପ୍ରକାର ଛୋଟ ଛୋଟ ଉଦାହରଣ ଦେଇ ସେ ଭାରତ ଓ ପୃଥିବୀର ତତ୍‌କାଳୀନ ସମସ୍ୟାମାନ ଚର୍ଚ୍ଚା କଲେ । ଆମ୍ଭେମାନେ ବୁଝିନେଲୁଏହା ପକିସ୍ଥାନକୁ ମାନି ନେବା ସପକ୍ଷରେ ଯୁକ୍ତି ।

ଏହା ବ୍ୟତୀତ ନୂତନ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲା । କଲେଜ ହତାରେଏହାର ପ୍ରତିଷ୍ଠା ଦିବସ ଉତ୍ସବରେ ଭାରତର ତତ୍‌କାଳୀନ ୧୫/୧୬ ବିଶ୍ୱବିଦ୍ୟାଳୟର କୁଳପତିମାନଙ୍କୁ ନିମନ୍ତ୍ରିତ କରାଯାଇ ଏକ ଉତ୍ସବ ହେଲା । ରାଜ୍ୟପାଳ ଉଇଲିୟମ ହଅର୍ଣ୍ଣ ଲୁଇନସ ଓ କୁଳପଦି ଅଧ୍ୟାପକ ପରିଜା ଉଦ୍‌ବୋଧନ ଦେଲେ । ବିଶ୍ୱବିଦ୍ୟାଳୟର ପ୍ରଥମ ଦୀକ୍ଷାନ୍ତ ଉତ୍ସବ ଏହାପରେ ରେଭେନ୍ସା କଲେଜ ହଲରେ ଅନୁଷ୍ଠିତ ହେଲା । ନିମନ୍ତ୍ରିତ କୁଳପତିମାନେ ଉପସ୍ଥିତ ଥାଆନ୍ତି । ସେମାନଙ୍କର ପୃଷ୍ଠଭାଗରେ ସେମାନଙ୍କ ବିଶ୍ୱବିଦ୍ୟାଳୟ Emblem ପ୍ରତୀକ ଚିହ୍ନ ବଡ ଆକାରରେ ଚିତ୍ରକରାଯାଇଥାଏ ଏକ ଫଳକ ଉପରେ । ଆମ ନୂତନ ବିଶ୍ୱବିଦ୍ୟାଳୟର ନିର୍ଦ୍ଦେଶାତ୍ମକ ପ୍ରତୀକ ଓଡ଼ିଶାର ପୁରାତନ କଳା ସାହିତ୍ୟ ଶିଳ୍ପ ନୌବାଣିଜ୍ୟର ପ୍ରତୀକ ଥାଇ ସେଥିରେ ଶ୍ରୀମଦଭାଗବତର

ପ୍ରଥମ ସ୍କନ୍ଦର ପ୍ରଥମ ଶ୍ଳୋକରୁ ସତ୍ୟଂପରଂ ଧିମହି ଲେଖାଯାଇଥାଏ । ଅନେକ ବିଶ୍ୱବିଦ୍ୟାଳୟ ନୀତିବାକ୍ୟ ଅଛି । ଲାଟିନ ଲେଖାଥାଏ । ଏହାର ଅର୍ଥ ଆମ୍ଭେମାନେ ନ ବୁଝି ସମାଲୋଚନା କରୁଥାଉ । ବୁଝିସାରି ଏହା କିପରି ଭାଗ ଗର୍ଭକ ତାହା ଉପଲବ୍ଧି କଲୁ । ମୋଟ ଅନର୍ସରେ ୪୬ ଜଣ ଓ ଅନ୍ୟ ଭାଗରେ ୭୦ ଜଣ ପାସ କରିଥାଆନ୍ତି । ଏମ୍.ଏ. ଓ ଆଇନ ବ୍ୟତୀତ ପ୍ରାୟ ଶହେ ଜଣ ସ୍ନାତକ ଡିଗ୍ରି ନେବାକୁ ଆସିଥାଆନ୍ତି । ସେମାନଙ୍କୁ କୌଣସି ନିର୍ଦ୍ଦିଷ୍ଟ ପୋଷାକ ପିନ୍ଧି ଯୋଗ ଦେବାକୁ ନିର୍ଦ୍ଦେଶ ନଥାଏ । ମାତ୍ର ନିୟମରେ ନିର୍ଦ୍ଧାରିତ ଗାଉନ ପୋଷାକ ସମସ୍ତଙ୍କୁ ସେଠାରେ ଯୋଗାଇ ଦିଆଯାଉଥାଏ । ଆମ୍ଭେମାନେ ନିର୍ଦ୍ଦିଷ୍ଟ ସ୍ଥାନରେ ବସୁଥିଲୁ । ବିଶ୍ୱବିଦ୍ୟାଳୟର ଡିନ୍ ଅଧ୍ୟାପକ ସୁନ୍ଦରମ ଆମର ପାଳି ପଡିଲା ପରେ ଜଣଜଣକରି ମୁଖ୍ୟ ଅତିଥିଙ୍କୁ ଚିହ୍ନାଇ ଦେଉଥିଲେ ଓ ସେ ଆମ୍ଭମାନଙ୍କୁ ସ୍ନାତକ ଉପାଧି ପ୍ରଦାନ କରି କରମର୍ଦ୍ଦନ କରୁଥିଲେ । ଉତ୍ସବର ପୁରୋଧା ପାଟଣାବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ସଚ୍ଚିଦାନନ୍ଦ ସିନ୍‌ହା । ସେ ଓଡ଼ିଶାର ଏକାନ୍ତ ଶୁଭେଚ୍ଛୁ ଥିଲେ । ପ୍ରଥମେ ଦିଲ୍ଲୀର ଇଂପିରିଆଲ କାଉନସିଲ ବ୍ୟବସ୍ଥାପକ ସଭାରେ ସେ ବିଭିନ୍ନ ପ୍ରାନ୍ତରେ ବିଖଣ୍ଡିତ ଓଡ଼ିଆମାନଙ୍କୁ ଏକ ଶାସନାଧିନରେ ଆଣିବାକୁ ଏକ ପ୍ରସ୍ତାବ ଆଣି ସମସ୍ୟାର ଗୁରୁତ୍ୱ ସର୍ବଭାରତୀୟ ସ୍ତରରେ ଉପଲବ୍ଧ ହେବାର ସୁଯୋଗ ସୃଷ୍ଟି କରିଥିଲେ । ପରେ ସେ ସଂବିଧାନିକ ସଭାର ପ୍ରଥମ ଅଧିବେଶନରେ ରାଜେନ୍ଦ୍ର ପ୍ରସାଦ ଅଧକ୍ଷ ନିର୍ବାଚିତ ହେବା ପୂର୍ବରୁ ଅଧକ୍ଷତା କରିଥିଲେ । ତାଙ୍କର ମୁଦ୍ରିତ ଭାଷଣ ସମସ୍ତଙ୍କୁ ଯୋଗାଇ ଦିଆଗଲା । ସେ ବିରାଟ ବକ୍ତା ଥିଲେ । ତାଙ୍କ ବିଷୟରେ କୁହାଯାଉଥିଲା । Big in body Bigger in mind, and biggest in intellect ବିଶ୍ୱବିଦ୍ୟାଳୟ ଚାନସେଲରର କୁଳାଧିଙ୍କ ବ୍ୟତୀତ ଉପକୁଳାଧିକ ମୟୂରଭଂଜର ମହାରାଜା ପ୍ରତାପଚନ୍ଦ୍ର ଭଞ୍ଜଦେଓ ତାଙ୍କ ସହିତ କୁଳପତିଙ୍କ ସହ ବସିଥିଲେ । କେବଳ ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ ସ୍ନାତକଙ୍କ ପାଇଁ ଗୋଟିଏ ସ୍ୱର୍ଣ୍ଣ ମେଡାଲ ମୟୂରଭଂଜ ମେଡାଲ ନାମରେ ଥାଏ ଓ ତାହା ଶ୍ରୀନିବାସ ମିଶ୍ରଙ୍କୁ ପ୍ରଦାନ କରାଗଲା । ସେ ଡକ୍ଟରେଟ ଉପାଧି ଧରି ଦେଶରକ୍ଷା ବିଭାଗର ବୈଜ୍ଞାନିକ ଭାବରେ ଅବସର ନେଲେ । ଅନ୍ୟ ବିଭାଗ ମାନଙ୍କରେ କଳା ହେଉ ବା ବିଜ୍ଞାନ ହେଉ କୌଣସି ମେଡାଲର ବ୍ୟବସ୍ଥା ଆଜିକାଲି ପରି ନଥାଏ ।

ମୋର ପାଠପଢ଼ାରେ ଅଗ୍ରଗତି ଚାଲୁଥାଏ । ମାତ୍ର ମୋର ଦୁର୍ଭାଗ୍ୟ ଯେଉଁମାନଙ୍କର ପାଠପଢ଼ାଇବାର ଆବଶ୍ୟକତା ଓ ଅଗ୍ରଗତି ମୋର ପାଠ ପଢ଼ାରେ ସହାୟକ ଥିଲା ତାହା ସନ୍ତୋଷଜନକ ନଥିଲା । ଚାନ୍ଦୁରାରେ ଛାତ୍ର ଗେଣ୍ଟୁ (ପୂର୍ଣ୍ଣଚନ୍ଦ୍ର) କେବଳ ଯେନତେନ ପ୍ରକାର ମାଇନର ପାସ କରିଗଲା । କଟକରେ ଛାତ୍ର ଟୁକୁ (ରବି) ୧୯୪୦ରୁ ୪୨ ମଧ୍ୟରେ ଶ୍ରେଣୀରେ କୌଣସି ଉଲ୍ଲେଖନୀୟ ଅଗ୍ରଗତି ଦେଖାଇପାରିଲା ନାହିଁ । ମୋର ଯଥାସାଧ୍ୟ ଉଦ୍ୟମ ସତ୍ତ୍ୱେ ଅସନ୍ତୋଷଜନକ ଫଳାଫଳ ମୋର ମନରେ ନୈତିକ ଦାୟିତ୍ୱଦୃଷ୍ଟିରୁ କ୍ଷୋଭ ଆଣୁଥିଲା । ୧୯୪୨ ସେପ୍ଟେମ୍ବର ବେଳକୁ ଉଦୟନାଥବାବୁ ମତେ ଜଣାଇଦେଲେ ଯେ ପୂଜାଛୁଟି ପରେ ମୋର ଅନ୍ୟତ୍ର ରହିବାର ବ୍ୟବସ୍ଥା କଲେ ଭଲହେବ । ତାଙ୍କୁ ମୁଁ ଦୋଷ ଦେଲି ନାହିଁ । ରହିବା ମେସ ଖୋଜି ବୁଲିଲି । ଏହି ସମୟରେ ପୂର୍ବତନ ରାଜସ୍ୱମନ୍ତ୍ରୀ ନିତ୍ୟାନନ୍ଦ କାନୁନଗୋ ଅଗଷ୍ଟ ଆନ୍ଦୋଳନରେ ଅଟକବନ୍ଦୀ ଭାବରେ ବ୍ରହ୍ମପୁର ଜେଲରେ ଥାଆନ୍ତି । ବାଖରାବାଦରେ ତାଙ୍କର ବିରାଟ କୁଟୁମ୍ବର, ଖପୁରିଆ ଫାର୍ମର, ଘର ଗାଁ ଜମି ଜମିଦାରୀର ପରିଚାଳନା ଦାୟିତ୍ୱ ସହଧର୍ମିଣୀ ଶୈଳବାଳା କାନୁନଗୋଙ୍କ ଉପରେ ନ୍ୟସ୍ତ ଥାଏ । ପ୍ରଥମେ କାହାଠାରୁ ଖବରପାଇ ମତେ ତାଙ୍କର ୯ମ ଶ୍ରେଣୀରେ ପଢୁଥିବା ପୁତ୍ର ଛତୁ (କିଶନ କାନୁନଗୋ) ପରେ ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟର କୁଳପତି ଓ ବିଖ୍ୟାତ କୃଷି ଅର୍ଥବିଦ୍ ପାଇଁ ଇଂରେଜୀ ପଢ଼ାଇବା ଟ୍ୟୁସନ ମିଳିଗଲା । ଏହା ବୋଧହୁଏ ସନ୍ତୋଷଜନକ ଜଣାପଡ଼ିବା ପରେ ତାଙ୍କର ଘରେ ଥିବା ଗୁମାସ୍ତା ଚଇଁବାବୁ ମୋତେ ତାଙ୍କ ଘରେ ରହିବାକୁ ପରାମର୍ଶ ଦେଲେ । ଏହା ମୋର ମଧ୍ୟ ଲୋଡ଼ାଥାଏ । କଲେଜରେ ଦରମାଛାଡ଼ । ତେଣୁ ପରୀକ୍ଷାବେଳକୁ ପରୀକ୍ଷାଫିଜ ନେଲେ ମୋର ଉଦ୍ଦେଶ୍ୟ ସାଧିତ ହେବ ଏହା ଜଣାଇ ମୁଁ ରାଜି ହେଲି । ମୋର ନିଜର ବେଡିଂ ମଶାରୀ ସତରଞ୍ଜି ତକିଆ ଆଦି ନଥାଏ । ସେଥିପାଇଁ ମଧ୍ୟ ମୁଁ କିଛି ଟଙ୍କା ଅଗ୍ରୀମ ନେଇ ଏସବୁ କିଣିଲି । ମୋତେ ଗୋଟିଏ କୋଠରୀ ଏକୁଟିଆ ରହିବାକୁ ଦିଆଗଲା । ତାଙ୍କ ଘରେ ରଘୁନାଥ ମହାନ୍ତି ନାମରେ ଜଣେ ଗୃହଶିକ୍ଷକ ରହୁଥିଲେ । ପରିବାରର ହିସାବ କିତାବ ସବୁ ରାଖିବା ସହିତ ସେ ଛୋଟ ପିଲାମାନଙ୍କର ପାଠପଢ଼ା ମଧ୍ୟ ଦେଖୁଥିଲେ । ତାଙ୍କ ଘର ଭୁବନେଶ୍ୱରର ଧୁନ୍ଦରପଦା ।

କଟକରେ ବହୁ ଗଣ୍ୟମାନ୍ୟ ପରିବାରରେ ସେ ଗୃହଶିକ୍ଷକ ଆଉ ପ୍ରଥମବସ୍ଥାରେ ପିଲାମାନଙ୍କୁ ଗଢ଼ି ଥାଆନ୍ତି । ଶିକ୍ଷକ ଓ ଗୃହ ପରିଚାଳକଭାବେ ତାଙ୍କର ସୁନାମ ଥିଲା । ଦିନେ ହଠାତ୍ ସେ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କଲେ ଦୁଇଟି ଛୋଟ ପିଲା ମନି (ନାରାୟଣ ପ୍ରସାଦ ପଟ୍ଟନାୟକ କୃଷିଅର୍ଥବିଦଙ୍କ ଧର୍ମପତ୍ନୀ) ଓ ଆଲୁ (ଶୋଭନ ପରେ କେନ୍ଦ୍ରରେ ଶାସନସଚିବ)ଙ୍କର ପାଠପଢ଼ା ଦାୟିତ୍ୱ ମୋ ଉପରେ ପଡ଼ିଲା । ଏଥିପାଇଁ ମୁଁ ଅଧିକ ପାରିଶ୍ରମିକ ପାଉଥିଲି । ବିଦ୍ୟାଳୟରେ Short Session ସେ ବର୍ଷ ହେବାରୁ ଛଟୁ ଗୋଟିଏ ବରଷରେ ଦୁଇଟା ପ୍ରମୋସନ ପାଇଁ ବରଷକ ଆଗରୁ ମାଟ୍ରିକ ପାସ କଲେ । ମୁଁ ତାଙ୍କୁ ନ ପଢ଼ାଇ ଗୁଲୁ (ବିଜୟାନନ୍ଦ)ର ପାଠପଢ଼ାରେ ସହାୟକ ହେଲି । ନାନାପ୍ରକାର କାମ ମଧ୍ୟ ପଡୁଥାଏ । ଶ୍ରୀମତୀ କାନୁନଗୋଙ୍କର ସ୍ନେହ ସହାନୁଭୂତି ଯୋଗୁ ମୁଁ ସବୁକାମ ଅଯାଚିତଭାବରେ କରି ଦେଉଥାଏ । ମୋର ନିଜ ପାଠପଢ଼ା ସେହି ଅନୁପାତରେ ବ୍ୟାହତ ହେଉଥାଏ । କଲେଜକୁ ବାଟଚଲା ମଧ୍ୟ ଆଉ ଗୋଟାଏ କିଲୋମିଟର ବଢ଼ିଯାଇଥାଏ । ମୁଁ ଆମ ଗୋଷ୍ଠିର ସଭ୍ୟମାନଙ୍କୁ ପୁରୀଘାଟଠାରେ ଭେଟେ । ଅନର୍ସକ୍ଲାସ ପ୍ରାୟ ୧ମ ପିରିଅଡ଼ରେ ଥାଏ । ତେଣୁ ସେଥିରେ ନିୟମିତ ହେବାକୁ ନାନାପ୍ରକାର ପ୍ରତିବନ୍ଧକ ମୁଁ ଏଡ଼ାଇ ଚାଲୁଥାଏ । ଟ୍ୟୁସନରୁ ପାଇବା ଟଙ୍କା ମୋର ନିଜ ଖରଚ ପାଇଁ ଯଥେଷ୍ଟ ଥାଏ । ମୋର ପାଠପଢ଼ାରେ ହେଳା ଯୋଗୁଁ ମୁଁ ଅନ୍ୟମାନଙ୍କ ପରି ଆଉ Distinctionକୁ ଆଶା ନରଖି ସବୁ ବିଷୟରେ ପାସକରି କିପରି ଅନର୍ସ ପାଇବି ସେ ଦିଗରେ ଯତ୍ନଶୀଳ ହେଲି । ଆଗରୁ ଅର୍ଥନୀତିରେ ୧୦/୧୨ ବରଷ ଧରି କେହି ୧ମ ଶ୍ରେଣୀ ପାଇନଥିଲେ । ଆମ ଆଗରୁ କୃତୀଛାତ୍ର ପରେ ଅଧାପକ ଶ୍ରୀରାମଚନ୍ଦ୍ରଦାସ ଓ ବିଦ୍ୟାଧର ମିଶ୍ର ଦେବେନ୍ଦ୍ର ଚନ୍ଦ୍ର ମିଶ୍ର ମଧ୍ୟ ୨ୟ ଶ୍ରେଣୀ ପାଇଥିଲେ । ମୋର ବହିପତ୍ର ମଗାଯଚାରେ ଚଳେ । ସଦାଶିବବାବୁଙ୍କ ଶ୍ରେଣୀରେ ନୋଟ ଲେଖିବାକଷ୍ଟ । ସେ ଖୁବ ଜୋରରେ କହି ଯାଆନ୍ତି ମାତ୍ର ମନୋଯୋଗ ସହିତ ଶୁଣୁଥିଲେ ନୋଟ ନେବା ଦରକାର ପଡ଼େ ନାହିଁ । ଥରେ ସେ ଅନର୍ଗଳ କହି ଯାଉଥାଆନ୍ତି । ମୋର ପାଖରେ ବସିଥିବା ସୂର୍ଯ୍ୟକାନ୍ତକୁ ମୁଁ ଶୁଣାଇଲି ତମେ ଲେଖିରଖ ମତେ ଦେବ । ହଠାତ୍ ସଦାଶିବ ବାବୁ ନିରବ ହୋଇଗଲେ । ଆମ୍ଭେମାନେ ହତଚକିତ ମତେ ପଚାରିଲେ ତମର ଲେକଚର ସରିଲା ? ମୁଁ ଲଜ୍ଜିତ

ହେଲି । ତା ପରେ କେବେ ତାଙ୍କ ଶ୍ରେଣୀରେ ସେ କହୁଥିବା ବେଳେ ପାଟି ଖୋଲିନଥାଏ । ଅଧ୍ୟପକ ରୋହତଗିଙ୍କ କ୍ଲାସ ଅଲଗା । ସେ ଅନର୍ସର ପ୍ରଥମ ପିରିଅଡ୍ ନିଅନ୍ତି । ମୁଁ ଧଇଁସଇଁ ହୋଇ ପହଞ୍ଚି ବସିପଡ଼େ । ମୁଁ ପୂର୍ବତନ ମନ୍ତ୍ରୀ ନିତ୍ୟାନନ୍ଦ କାନୁନଗୋଙ୍କ ଘରେ ଥିବା ସେ ଜାଣୁଥିଲେ । ତାଙ୍କ ଘରକୁ ନାନା ଉଦ୍ଦେଶ୍ୟରେ ମିଳିତ ମନ୍ତ୍ରୀମଣ୍ଡଳର ସମର୍ଥକ ଓ ବିରୋଧୀ ଅନେକ ଲୋକ ଆସନ୍ତି । ମୁଁ ସେମାନଙ୍କର କଥାବାର୍ତ୍ତା ଶୁଣିଥାଏ । କଣ୍ଣ କେଉଁଠି କହି ଦିଏ । ତାହା ଅଧ୍ୟାପକଙ୍କ କାନକୁ ଯାଏ । ତେଣୁ ସେ ମତେ Cuttak Gazette (ସରକାରୀ ଗେଜେଟ ନାଁ ଓଡ଼ିଶା ଗେଜେଟ) ନାଁ ଦେଇଥାଆନ୍ତା । କୌଣସି ଅସମାଧିତ ବ୍ୟକ୍ତିଗତ ସମସ୍ୟା ତାଙ୍କୁ ଜଣାଇଲେ ସେ ସମାଧାନରେ ସାହାଯ୍ୟ କରନ୍ତି । ମୋର ବାଲ୍ୟବନ୍ଧୁ ସୂର୍ଯ୍ୟକାନ୍ତ ତାଙ୍କର ବହି ଓ ନୋଟଖାତା ମତେ ଦେଇ ସାହାଯ୍ୟ ନ କରିଥିଲେ ମୋର ଅନର୍ସ ପାଇବା ସଂଭବ ହୋଇନଥାନ୍ତା । ଉତ୍କଳ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ସେ ଅନର୍ସ ଡ଼ିଷ୍ଟିଂସନ ପାଇ ପ୍ରଥମ ହେଲେ ଓ ୨ୟ ହେବାର ସୁଯୋଗ ମତେ ମିଳିଲା । Distinction ପାଇବାର ଆଶା ମୁଁ ଆଗରୁ ଛାଡ଼ି ଦେଇଥାଏ । ନୂତନ ବିଶ୍ୱବିଦ୍ୟାଳୟର ଏହା ପ୍ରଥମ ପରୀକ୍ଷା । ପ୍ରଶ୍ନପତ୍ର ପାଟଣା ଓ ଆଲାହାବାଦରୁ ଆସିଥାଏ ଓ ଉତ୍ତରଖାତା ସେଠାକୁ ପଠାଯାଇଥିବା ଆମ୍ଭେମାନେ ଶୁଣିବାକୁ ପାଉ । ପରୀକ୍ଷା ନିର୍ଦ୍ଧାରିତ ସମୟରେ ହେଉଥାଏ । ଡ଼ିସେମ୍ବର ମାସରେ ଫିସ ଦାଖଲ ହେବାକୁ ଥାଏ । ଅନର୍ସ ଫିଜ ପଚାଶ ଟଙ୍କା । ପାସ ଫିଜ ଚାଳିଶଟଙ୍କା । ମୋର ଟ୍ୟୁସନରୁ ଚାଳିଶି ଟଙ୍କା ମିଳିଗଲା । ବାକି ଦଶଟଙ୍କା ଧାରସୂତ୍ରେ ଆଣି ଦାଖଲ କରିବାକୁ ଖୋଜିବୁଲେ । ପରୀକ୍ଷା ସରିବା ପରେ ଦେଖାସାକ୍ଷାତ ଆଉ କୁଆଡ଼ୁ ନହୋଇପାରେ । ତେଣୁ ଏହାର ସୁଝାଯିବାର ଆଶା କ୍ଷୀଣ ଦେଖି କେହି ଦେଲେ ନାହିଁ । ଆମ ଅନ୍ତରଙ୍ଗ ଗୋଷ୍ଠିର ସମସ୍ତେ ତ ଅନାଟନଗ୍ରସ୍ତ । ରାଗରେ ଠିକକଲି ପାସ ଫର୍ମ ଦାଖଲ କରିବି । କଲେଜ ଅଫିସରେ ପାସ ଅନର୍ସ ଫିଜ ଦାଖଲ ପାଇ ଅଲଗା ଅଲଗା କାଉଣ୍ଟର ଥାଏ । ବନ୍ଧୁ ଜୟକୃଷ୍ଣ (ବରଷେ ହେଲା ମୃତ) ମୋ ପାଖରେ ପହଞ୍ଚି ପଚାରିଲେ ପାସ ଫର୍ମ କାହାର ? ମୁଁ ଉତ୍ତର ଦେଲି ମୋର ନିଜର । ସେ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲା । କଣ ତୋର ମୁଣ୍ଡ ଖରାପ ହେଲାଣି କି ? ଏତିକି କହି ମତେ ଟାଣି ଆଣିଲା । ମୁଁ କାଉଣ୍ଟର ବାହାରକୁ ଆସି ତାକୁ ଖୁବ ଜୋରରେ

ଗୋଟାଏ ଚାପୁଡ଼ା ମାରିଲି । ସେ କହିଲା "ତୁ ମତେ ଏତେ ଜୋରରେ ମାରିଲୁ ।" ମୁଁ ଭେଁ ଭେଁ ହୋଇ କାନ୍ଦିଉଠିଲି । ଦୁହେଁ ବାହାରକୁ ଆସିଲୁ । ମୋ ଦୁଃଖ ତାକୁ କହିଲି । ସେ କହିଲା ତୋର ଫିଜ ସମୁଦାୟ ପଚାଶ ଟଙ୍କା ମୁଁ ଦାଖଲ କରୁଛି । ମୁଁ ତ ଆଲ୍ଲାହାବାଦରେ ଅର୍ଥନୀତିରେ ଏମ.ଏ ପଢ଼ିବାର ନିଷ୍ପତ୍ତି କରିସାରିଛି । ସେତିକିବେଳକୁ ତୁ ଟଙ୍କା ଫେରାଇଦେଲେ ଚଳିବ । ମୋର ଆଗରୁ ଦରକାର ନାହିଁ । ସେ ଫର୍ମ ପୂରଣ କରି ଫିଜ ଦାଖଲ କରି ସାରିଥାଏ । ମୋର ଫର୍ମ ଆଣିଲା । ପୂରଣ କଲା । ମୁଁ ଖାଲି ଦସ୍ତଖତ କଲି । ମନରେ ଆନନ୍ଦ ଦୁଃଖ ସବୁ ପ୍ରକାଶ କରିପାରୁନଥାଉ । ତାର ମିନର୍ଭାମେସକୁ ଗଲୁ । ଶୋଇ ବସି ସଂଧ୍ୟା ହେବା ପରେ ମୁଁ ବାଖରାବାଦ ଲେଉଟି ଆସିଲି ।

ସେତେବେଳେ ମାଟ୍ରିକ ପରୀକ୍ଷା ଓ ଆଇଏ ପରୀକ୍ଷାଫଳ ଉପରେ ଛାତ୍ରବୃତ୍ତି ଅତି ସୀମିତ । ତାହା ମଧ୍ୟ ଜଣେ ସ୍ୱଚ୍ଛଳରେ ଚଳିବାକୁ ଯଥେଷ୍ଟ ନୁହେଁ । ଅନେକ ସେଥିପାଇଁ ଅଧିକା ଟ୍ୟୁସନ କରନ୍ତି ବା କୌଣସି ସଦାଶୟ ବ୍ୟକ୍ତିଙ୍କଠାରୁ ଆର୍ଥିକ ସାହାଯ୍ୟ ଲୋଡ଼ିଥାଆନ୍ତି । ସହରରେ କେତେଜଣ ମାନ୍ୟଗଣ୍ୟ ଓକିଲ ଓ ଜମିଦାରଙ୍କର ଏଦିଗରେ ସୁନାମ ଥାଏ । କଲେଜର ଅନେକ ଅଧ୍ୟାପକ ମଧ୍ୟ ସାହାଯ୍ୟ ଦିଅନ୍ତି । କଟକ ସହରରେ ଦୁଇଜଣ ବିଶିଷ୍ଟ ବ୍ୟକ୍ତି ବ୍ରଜସୁନ୍ଦରଦାସ ଓ ସ୍ୱାମୀ ବିଚିତ୍ରାନନ୍ଦ ଦାସ । ଉଭୟ ସେ ସମୟରେ ଲାଟସଭା ସଭ୍ୟ । ବ୍ରଜସୁନ୍ଦର ଜମିଦାରମାନଙ୍କ ନିମନ୍ତ ରିଜର୍ଭ ସିଟରୁ ଓ ସ୍ୱାମିଜି କଟକ ସହରରୁ । ଉଭୟେ ଛାତ୍ରମାନଙ୍କୁ ନାନା ପ୍ରକାର ସାହାଯ୍ୟ କରନ୍ତି ନାମ ଲେଖାଇବାଠରୁ ଚାକିରିଖୋଜି ନିଯୁକ୍ତି ମିଳିବାଯାଏ । ମୋର ସୌଭାଗ୍ୟ ଦୁଇଜଣଙ୍କ ପାଖରେ ମୋର ପରିଚୟ ଥାଏ । ମୋର ନିଜର ସମସ୍ୟାମାନ ସମାଧାନ ହୋଇଥିବାରୁ ସାହାଯ୍ୟ ପ୍ରାର୍ଥୀ ମୁଁ ହୋଇନାହିଁ । ବ୍ରଜସୁନ୍ଦର କଟକ ସହରର କଲେଜ, ଇଂଜିନିଅରିଂ ଓ ମେଡ଼ିକାଲ ସ୍କୁଲର ପରିଚାଳନା ସହିତ ସଂପୃକ୍ତ ଥାଆନ୍ତି । ଏଥିପାଇଁ ନାନାପ୍ରକାର ସାହାଯ୍ୟ ପ୍ରାର୍ଥନା କରି ଅନେକ ଛାତ୍ର ତାଙ୍କ ପାଖକୁ ଆସନ୍ତି । ମତେ କେହି ଡ଼ାକିଲେ ମୁଁ ମନଖୁସିରେ ସାଙ୍ଗରେ ଯାଏ । ତାଙ୍କ ଆଗରେ ବସି ପଢ଼ିବା ପରେ ସେ ପୂଜାରି ବୋଲି ଡ଼ାକି ଦିଅନ୍ତି । ଘର ଭିତରୁ ଜଣେ କିଏ ଆସି ମୁହଁ ଦେଖାଇ ଦେଇ ଚାଲିଯାଏ । କାମସାରି ସମସ୍ତେ ଉଠିବାବେଳକୁ ବିଲାତି ଶଙ୍ଖ ମଲମଲ ପ୍ଲେଟରେ

ପ୍ରତ୍ୟେକଙ୍କ ପାଇ ୪ପଟ ରୁଟି ବା ପୁରି ଚାରିଖଣ୍ଡ ଗୋଲାଇ ବାଇଗଣ ଭଜା ଓ ଯୋଡ଼ିଏ ରସଗୋଲା ଆସି ପହଞ୍ଚେ ।

୧୯୪୦ ରୁ ୪୪ ଏହା ଏକା ମୋର ବ୍ୟକ୍ତିଗତ ଅଭିଜ୍ଞତା ନୁହେଁ ବହୁ ଖ୍ୟାତନାମା ତତ୍କାଳୀନ ଛାତ୍ର ଡ଼ାକ୍ତର ଇଂଜିନିଅରିଂ ଏଥିରେ ସାକ୍ଷୀ । କିଛି ଆଶ୍ଚର୍ଯ୍ୟହେବାର ନାହିଁ ଯେ ସାହେବଜାଦା ବଜାରର ତାଙ୍କ ସେହି ଘର ସର୍ବଦା ସବୁଆଡର ଅତିଥିମାନଙ୍କପାଇଁ ଉନ୍ମୁକ୍ତ ଥାଇ 'ଚିରନ୍ତନ ଅତିଥି ଭବନ' ନାମରେ ପରିଚିତ ଥିଲା । ଉତ୍କଳ ସମ୍ମିଳନୀର ବିଭିନ୍ନ ଜିଲ୍ଲାରୁ କର୍ମୀ ଆସିଲେ ସେମାନଙ୍କର ରହିବା ଖାଇବା ଏହିଠାରେ ହେଉଥିଲା । ସ୍ୱାମିଜିଙ୍କର କଥା ସେମିତି । ସେ କଚେରୀ ପରେ ଗେରୁଆ ରଙ୍ଗର ଖଦଡ଼ ଧୋତି ଫତେଇ ଓ ଟୋପି ପିନ୍ଧନ୍ତି । ଗୋଟିଏ କାଠ ତକ୍ତପୋଷ ଉପରେ ଗେରୁଆ ଚାଦର ଗେରୁଆ ଖୋଳ ତକିଆ ପଡ଼ିଥାଏ ଶୋଇବା ଘରେ । ଆଦ୍ୟ ଜୀବନରେ ସେ ମୃତଦାର ହୋଇଥିଲେ । ଅତିଥି ଚର୍ଚ୍ଚାରେ ତାଙ୍କର ଖ୍ୟାତି ଥାଏ । ସ୍ୱାଧିନତା ସଂଗ୍ରାମୀମାନେ ଜେଲରୁ ଖଲାସ ହୋଇ ତାଙ୍କ ଘରେ ପହଞ୍ଚନ୍ତି । ଯେକେହି ଘରକୁ ଆସିଲେ ଖାଇ କରି ଯିବ । ଛାତ୍ରମାନେ କଥାବାର୍ତ୍ତା ସାରି ଉଠିବାବେଳକୁ କେହିଜଣେ ପୂଜାରି କି ଚାକର ଗୋଟିଏ ଥାଳିରେ ଦିପଟ ରୁଟି, ବରା, ଗୋଟିଏ ପାଚିଲାକଦଳୀ କି ଭୁବନେଶ୍ୱରୀ କୋରା ବା ଆରିଷାପିଠା ଗୋଟିଏ ସହିତ ମେଞ୍ଚାଏ କଳା ମାଣ୍ଡିଆଯାଉ ଆଣି ପରିଶି ଦେବ । ମାଣ୍ଡିଆଯାଉ ଖାଇବାର ଅନିଚ୍ଛା ଦେଖି ସେ ନିଜେ ଅନାଇଥିବେ । ଏହାର ଖାଦ୍ୟଗୁଣ ପୌଷ୍ଟିକତା ସ୍ୱାସ୍ଥଗତ ଉପାଦେୟତା ବୁଝାଇ ଖାଇବାକୁ ରାଜି କରାଇବେ । ତାଙ୍କର ସହକର୍ମୀ ବା ସହକାରୀ ମଧ୍ୟ ଏଥିରୁ ବାଦ ଯାଉ ନଥିଲେ । ଅତିଥି ଚର୍ଚ୍ଚା ସେତେବେଳେ ଗୋଟାଏ ମଧ୍ୟବିତ୍ତ ଗୃହରେ ସାଧାରଣ କଥାଥିଲା । ଆମର ଅଧ୍ୟାପକମାନଙ୍କ ଘରକୁ ଗଲେ ପ୍ରଥମେ ଜଳଖିଆ ଖାଇବା ପରେ ଆମେ ଅନ୍ୟ ବିଷୟରେ ଚର୍ଚ୍ଚା କରୁ ।





Ravenshaw College
Cuttack
16. 1. 45.

Sri Bishnucharan Mahanty, B.A. was a student of this College from 1940 to 1944. He graduated with Honours in Economics. During his stay in this College, his conduct & progress were excellent. He took part in literary and social activities of the College. He also took some part in games. He bears a good character and has a sense of responsibility. I would recommend him for a position of trust or responsibility.

P. Parija
16/1/45

ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଓ ରେଭେନ୍ସା କଲେଜର ଅଧ୍ୟକ୍ଷ ଅଧ୍ୟାପକ ଡକ୍ଟର ପ୍ରାଣକୃଷ୍ଣ ପରିଜା, ଏମ୍.ଏ. (କାଣ୍ଟବ), ଆଇ.ଇ.ଏସ୍.ଙ୍କ ପ୍ରଦତ୍ତ ପ୍ରମାଣପତ୍ର

# ପୋଥିରେ ଡ଼ୋରି

ପରୀକ୍ଷାଫଳ ବାହାରିଲା । ଅର୍ଥନୀତିରେ ଆମେ ୫ଜଣ ଅନର୍ସ ପାଇଲୁ । ଦିଜଣ ଖାଲି ପାସକଲେ । ବାକି ତିନିଜଣ ଅକୃତକାର୍ଯ୍ୟ ହେଲେ । ବନ୍ଧୁ ନିତ୍ୟାନନ୍ଦ ସିଂହ ଇତିହାସରେ ଅନର୍ସ ନପାଇ ଖାଲି ପାସକଲେ । ଆମ ଗୋଷ୍ଠିର ଆଉ ସମସ୍ତେ ପାସକଲେ । ପାଠନିଶା ଛାଡ଼ିଗଲା ପରେ ମୋର ପରିବାରର ଶୋଚନୀୟ ଦୁରାବସ୍ଥା ମନକୁ ଆସିଲା । ବାପା ପରିଶ୍ରମୀ ଓ ନୀତିବାନ ଥିଲେ । ମାତ୍ର ନିଜର ଜମିବାଡ଼ି ନ ଥାଏ । ଲେଖାପଢ଼ା କାମ ଖୋଜିଲେ ମଧ୍ୟ କେଉଁଠି ମିଳୁ ନଥାଏ । ୪ ବରଷ ମାଇନର ପାସ ପରେ ଅପେକ୍ଷା । ପୁଣି ଆଉ ଚାରିବରଷ ମାଟ୍ରିକ ପରେ । ତଥାପି ମୁଁ ତାଙ୍କୁ କିଛି ସାହାଯ୍ୟ କରିବାକୁ ଅକ୍ଷମ । ସେ ନିରାଶ ହେଉଥାନ୍ତି । ତେଣୁ ବି.ଏ ପରେ ମୋର ପୋଥିରେ ଡ଼ୋରି ବାନ୍ଧିବା ନିଷ୍ପତ୍ତି ନେଇଥାଏ । କଲେଜ ଛାଡ଼ିବାବେଳକୁ ମୋର ଜୀବନ ଦର୍ଶନ ଏମିତି ଯାହା ଡ଼ଃ ଗୋପିନାଥଙ୍କ ଭାଷାରେ "ମୁଁ ବିଶ୍ୱାସ କରେ ନାହିଁ ଯେ ଦାରିଦ୍ର୍ୟ, ଦୁଃଖକଷ୍ଟ ମଣିଷର ବୃଦ୍ଧି, ବିକାଶ ଓ ଉନ୍ନତି ପାଇ ବହୁତ ସହାୟକ ହୁଏ । ଏ କେବଳ କଳ୍ପନା ବୋଲି ମୋର ମନେ ହୁଏ । ସହାୟକ ତାର ପାଇ ହୋଇପାରେ ଯେ ଜିତେନ୍ଦ୍ରିୟ ସୁଖଦଃୁଖ ପ୍ରତି ବିତସ୍ପୃହ ସାଧକ କିନ୍ତୁ ତା ପକ୍ଷରେ ଦାରିଦ୍ର୍ୟ କି ବିପୁଳାଶ୍ରୀ, ଦୁଃଖ କି ସୁଖ ସେ ଏକାକଥା । ବରଂ ମଣିଷ ମନର ଯେତେ ଛୋଟଲୋକି, ଦୁର୍ବଳତା, ସ୍ୱଭାବରେ ଯେତେ ସ୍ୱାର୍ଥପରତା, ହିଂସା, ପରଶ୍ରୀକାତରତା ଅନୁଦାରତା ଚରମ ପ୍ରତିକୂଳ ଅବସ୍ଥା ସେଇଆକୁ ପଦାକୁ କାଢ଼େ, ଖୋରାକ ଯୋଗାଏ, ବଢ଼ାଏ" । (ସ୍ରୋତସ୍ୱତୀ ୨ୟଖଣ୍ଡ ପୃ ୧୧୩)

ଗାଁରେ ଘର କହିଲେ ୧୨/୧୩ ଡ଼େସିମିଲ ଜମିରେ ଉତ୍ତର ଦକ୍ଷିଣ ହୋଇ ଧାଡ଼ିଏ ଚାଳଛପର ଘର । ଅଗଣାରେ ସେଇ ଘରର ପୂର୍ବକୁ ଗୋଟିଏ ବିରାଟ ଆମ୍ବଗଛ ଥାଏ । ବାପାଙ୍କ ଗଣନାରୁ ଜଣାଯାଏ ଏହା ଶହେ ବରଷରୁ ବେଶି ପୁରୁଣା । ୧୯୩୭ ମସିହାରେ ଓଡ଼ିଶାରେ ଭାରି ବାତ୍ୟା ହେଲ । ସେଇ ଘରର ଉତ୍ତର ପାଖ ଶେଣି ଭାଙ୍ଗିଗଲା । ମରାମତି କରିବାକୁ ପଇସା ନାହିଁ । ଛାତଛପର ତଳେ ନଇଁ ପଡ଼ିଲା । ଘର ଦିଭାଗ । ଦକ୍ଷିଣ ଭାଗରେ ଢ଼େଙ୍କିଶାଳ ଓ ଗୁହାଳ । ଗୁହାଳରେ ଗୋଟିଏ ଗାଈ । ନାଁ ଦିଆଯାଇ ଥିଲା ବାପାଙ୍କ ଅତି ଆଦରରେ ସୁପା । ବାପାଙ୍କର କାମଧେନୁ । ବାପା କହନ୍ତି ସେ ମୋର ଝୁଅ । ଆର ଜନ୍ମରେ ମୋର ଧାରୁଆ ଆଇ ଏଇ ଜନମରେ ସୁଝିବାକୁ ଆସିଛି । ପ୍ରକୃତରେ ସେ ଯୁଗରେ ଗୋଟିଏ ଦେଶି ଗାଈ ଖାଲି ପଟର ଥାଇ ଘାସଚରି ଦିବେଳା ଦେଢ଼ସେର ଦିସେର ଦୁଧ ଦେବା ଅସାଧାରଣ ଥାଏ । ବୋଉ ସେଇ ଦୁଧରୁ ବିକି ଘର ଖରଚ କରେ । ପୁଣି ଦହି ବସାଏ । ଘୋଳଦହି କରେ, ଲହୁଣିରୁ ଘିଅ ମାରେ । ଦହିସର ମୋର ଅତି ପ୍ରିୟ ଜାଣି ମୁଁ ଚାନ୍ଦୁରାରୁ ଆସିବାବେଳକୁ ଅଧଇଞ୍ଚ ମୋଟର ଗୋଟାଏ ସର ରଖିଥାଏ । ଗାଈର ଛୁଆ ଜନ୍ମର ବ୍ୟବଧାନ ବରଷେ ହେଉନଥିବ । ଘର ଆଉ ଫାଳ ଆମ ବାସସ୍ଥାନ । ମୁଁ ଚାନ୍ଦୁରାରେ ରହି ପଢୁଥାଏ । ୨/୩ ବୟସର ଭଉଣୀ ମଞ୍ଜୁ, ବାପା ବୋଉ ସେ ଘରେ ରହନ୍ତି । ତଳ ସହଜେ ସନ୍ତସନ୍ତିଆ । କେଉଁ ଖଟ ଅଛି ? ଗୋଟିଏ ହେଁସ ପକାଇ ତା'ଉପରେ ମଶିଣା ପାରି ଶୋଇବା କଥା । ଚାଦର କି ପୁରୁଣା ଛିଣ୍ଡା ଲୁଗା ଖଣ୍ଡେ ବିଛାଇ ଗୋଟିଏ ତେଲ ଚିକିଟା ତକିଆ ମୁଣ୍ଡ ତଳେ ଦେଇ ।

ବାପାଙ୍କ ରୋଜଗାର ଗୋଟାଏ ନାମମାତ୍ର ଦୋକାନରୁ । ଗୁଆଗୁଣ୍ଡି ପାନ ଖଇର ଅଲଗା ଅଲଗା ଜେଇଟା ଡ଼ବାରେ, ବିଡ଼ି ଦିଆସିଲି ଓ ପାନ ହେଲା ବିକ୍ରି ସାମଗ୍ରୀ । ସବୁ ଗୋଟାଏ ବେତା (ଦଢ଼ ଟୋକେଇରେ) ପୁରାଇ ଗାଁ ମଝିରେ କନ୍ଦରପୁର ମାଛଗାଁ ରାସ୍ତା କଡ଼ରେ ଏକ ଶତାଧିକ ବରଷର ବିରାଟ ବରଗଛ ତଳେ ବସନ୍ତି । ଅବଶ୍ୟ ଦୂରତା ଘରଠାରୁ ଶହେ ହାତହେବ । ଦୋକାନରେ ଭଲ ବିକ୍ରି ହୁଏ । ଧୂଆଁପତ୍ର ଧନିଆଁ କଳାଜିରା ପାନମଧୁରୀ ଭଜାରେ ଚୂଆ ମିଶାଯାଇ ଗୁଣ୍ଡି ହୋଇଥାଏ । ପାନରେ ଏହା ନ ଖାଇଲେ ଅନେକଙ୍କୁ ଅଲଣା ଲାଗେ । ବାପାଙ୍କ ହାତ

ତିଆରି ଗୁଣ୍ଡି କୁଆଡ଼େ ଭାରି ସୁଆଦିଆ ଥାଏ । ଜଣେ ନିୟମିତ ଖାଉଥିବା ଲୋକ ମତେ ଅନେକ ବର୍ଷ ପରେ କହିଲେ ଯାଜପୁରରେ ବାଇଆ ଗୁଣ୍ଡି ଏହାର ପାସଙ୍ଗରେ ପଡ଼ିବ ନାହିଁ । ବେପାର ବଢ଼ାଇବାରେ ମନ ମାତ୍ର କେଉଁ ମୂର୍ଖ ମହାଜନ ଅବା କରଜ ଦେବ, କଣ ବନ୍ଧକ ସାମଗ୍ରୀ ଦେଖିଦେବ ? ତେଣୁ ସେ ଆଶା ନିରାଶାରେ ଥାଏ । ଏବେ ବ୍ୟାଙ୍କ ଜାତୀୟକରଣ ପରେ ନିର୍ଦ୍ଧନ ଲୋକ ଋଣନେବା ବ୍ୟବସ୍ଥା ବ୍ୟାଙ୍କ ପ୍ରଚଳନ କଲାପରେ ଜଣାଯାଏ ଇନ୍ଦିରାଗାନ୍ଧି ତାଙ୍କର ସମସ୍ତ ଅପକାର୍ଯ୍ୟ ସତ୍ତ୍ୱେ ଏଇ ଗୋଟାକ କେଡ଼େବଡ଼ କାମ କରିନାହାନ୍ତି । ବାପା ଖରାବେଳେ ଦୋକାନ କାହାକୁ ଜଗାଇ ଆସି ଘରେ କଣ ଗଣ୍ଡେ ଖାଇଦେଇ ଯାଆନ୍ତି । ପୁଣି ରାତି ଦୁଇ ତିନି ଘଡ଼ିକୁ ଆଠ ନଟା ବେଳକୁ ଘର ଲେଉଟନ୍ତି । ଲଣ୍ଠନ ଗୋଟାଏ ମିଞ୍ଜିମିଞ୍ଜି ହୋଇ ଜଳି ଦୋକାନର ସ୍ଥିତି ଜଣାଉଥାଏ । ଖରାଦିନେ କଟକଆଡୁ ଅନେକ ଶଗଡ଼ିଆ ଆସନ୍ତି । ସେମାନେ ପଥର ବାସନ, କୁଣ୍ଡ, ବିଲାତି ଆଳୁ ଚିନାବାଦାମ ଧନିଆଁ ପରି ମସଲା ଗୁଡ଼ାଖୁ ଧରି ଆସନ୍ତି । ତଳମାଳ ଅଞ୍ଚଳରେ ତାକୁ ସବୁ ବଦଳାଇ ଧାନ ମୁଗ ଆଦି ରବିଫସଲ ଧରି ଫେରନ୍ତି । ସେମାନେ ସୁରକ୍ଷା ଦୃଷ୍ଟିରୁ ଦଳ ଧରି ଆସନ୍ତି । ୭/୮ ଗାଡ଼ି ଗୋଟିଏ ଦଳରେ । ସେମାନେ ବରଗଛ ତଳେ ରୋଷାଇ କଲେ ସେମାନଙ୍କୁ ତାଙ୍କ ଦରକାରି ଜିନିଷ ଯୋଗାଇ ବାପାଙ୍କର ଭଲ ଦିପଇସା ହୁଏ । ସେ ଆଗରୁ ସେମାନଙ୍କର ଦରକାରି ମାଲ ଘରେ ରଖିଥାଆନ୍ତି । ରାନ୍ଧନ୍ତି ସେମାନେ ସାଙ୍ଗରେ ଥିବା ପିତଳ ବାସନରେ ।

୧୯୩୭ ଭରାରେ ଏହାଠାରୁ ଆହୁରି ଭୟଙ୍କର ବତାସ ହେଲା ୧୯୪୨ରେ । ସେଥିରେ ଦକ୍ଷିଣଦିଗରେ ଶ୍ରେଣୀ ମଧ୍ୟ ଭାଙ୍ଗିଗଲା । ସେ ପାଖର ଛପର ମଧ୍ୟ ନଇଁ ଭୂଇଁରେ ମିଶିଲା । ଘରକୁ ଯିବାକୁ କବାଟଟି ମଧ୍ୟ ଆଉଜେଇବା କଷ୍ଟ ହେଲା । କବାଟ କାଠରେ ନୁହେଁ, ଗୁଅ (ହେନ୍ତାଳ)ରେ । ହେନ୍ତାଳ ବଣରୁ ବୁଦାକାଟି ଗଣ୍ଡି ଖଣ୍ଡଖଣ୍ଡ ବାହାରକରି ତା ମଝିରେ ଫୋଡ଼କରି ବାଉଁଶବତା ଦେଇ ମିଶାଇ ଯୋଡ଼ାଯାଇ ଏହି କବାଟ ତିଆରି ହୋଇଥାଏ । ଭାରିଶସ୍ତା । ବାପାଙ୍କର ଈଶ୍ୱର ବିଶ୍ୱାସ ଅଗାଧ ଥାଏ । ପ୍ରତିଦିନ ସେ ଗାଧୋଇ ସାରି ଆମ ଇଷ୍ଟଦେବ ଶ୍ରୀ ଗଦାଧର ମହାପ୍ରଭୁଙ୍କ ଆଗରେ ଦୀନକୃଷ୍ଣଙ୍କ ଆରତତ୍ରାଣ ଚଉତିଶାରୁ କିଛି ବୋଲନ୍ତି । ଦିନେ ଦିନେ ମୁଁ

ଶୁଣେ । ଆଖିରୁ ଲୁହବୁହାଇ ସେ ବୋଲିଯାଉଥିବେ-

"ଜୀବ ଯିବାର ବଡ଼ ସୁଖ
ଜିଇଁବା ସମ ନାହିଁ ଦୁଃଖ
ଯାହା ସାମନ୍ତ ଚାରିବର୍ଗରେ ଅଧିକାରୀ ।
ତାହା ସେବକର ଏ ଦୁଃଖ ହେ ମହାପ୍ରଭୁ" ।

ତାଙ୍କର ଅଚଳା ଈଶ୍ୱର ବିଶ୍ୱାସ ମତେ ମଧ୍ୟ ସେହି ବୟସରେ ପ୍ରଭାବିତ କରେ । ଦୁଃଖ ପରେ ସୁଖ ନିଶ୍ଚେ ସେଇ ଭଗବାନ ଦେବେ । ଜୀବନରେ ଏହି ସତ୍ୟ ନିଜ ଜୀବନ ଖାଲି ନୁହେଁ ସମାଜର ଉତ୍ଥାନ ପତନରେ ମୁଁ ଲକ୍ଷ୍ୟ କରି ଆସିଛି । ୧୯୪୩ରେ ବଙ୍ଗ ଦୁର୍ଭିକ୍ଷ । ତିରିଶ ଲକ୍ଷ ଲୋକ ସେ ପ୍ରଦେଶରେ ମଲେ । ସେଇ ମନ୍ୱନ୍ତରରେ । ଓଡ଼ିଶାରେ ମଧ୍ୟ ଘୋର ଖାଦ୍ୟାଭାବ ଦେଖାଯାଇଥାଏ । ମୁଁ ନିତ୍ୟାନନ୍ଦ ବାବୁଙ୍କ ପରେ ରହି ବି.ଏ ପଢୁଥାଏ । ମତେ ଗାଁର ଜଣେ ଶୁଣାଇଲେ 'ସହରରେ ତୁ ଆରାମରେ ଥାଆ । ବୁଢ଼ା ବୁଢ଼ୀ ଦୁଇଟା ତେଣେ ଉପାସରେ ମରନ୍ତୁ ।' ମୁଁ ଗାଁର ପ୍ରକୃତ ସମ୍ଭାବ୍ୟ ଚିତ୍ର ଅନୁମାନ କଲି । ସେମାନଙ୍କ ସୌଜନ୍ୟରୁ ନିତ୍ୟାନନ୍ଦ ବାବୁଙ୍କ ଖମାରରୁ ଭରଣେ ଧାନ କରଜ ମିଳିଲା । ସେ ପର୍ଯ୍ୟନ୍ତ ବାପା ଧାନ ବା ଟଙ୍କା କରଜ କରିବାର ଯୋଗ୍ୟତା ହାସଲ କରି ନଥାନ୍ତି । ଏଇ ଧାନ ଭରଣକ ପ୍ରାୟ (ଦଶ କୁଇଣ୍ଟାଲ) ମୁଁ ବି.ଏ. ପାସ କରି ଗାଁରେ ଯାଇ ୧୯୪୪ ମାର୍ଚ୍ଚରେ ଚାକିରି କରିବା ପର୍ଯ୍ୟନ୍ତ ସେମାନଙ୍କୁ ଚଳେଇନେଲା । ମୁଁ ମଧ୍ୟ ଏଣିକି ପରିବାରର ଦୁଃଖ ସହିତ ସାମିଲ ହେବାକୁ ଅଣ୍ଟା ଭିଡ଼ିଲି ।

ଗାଁକୁ ଆସିଲି । ବାଲିକୁଦାରେ ପ୍ରସ୍ତାବିତ ହାଇସ୍କୁଲ ୧୯୪୨ରେ ଖୋଲିଥାଏ । ସେତେବେଳକୁ ପୂର୍ବବ୍ୟବସ୍ଥା ଜାନୁଆରିରେ ସ୍କୁଲ ବର୍ଷ ଆରମ୍ଭ ଉଠିଯାଇଥାଏ । ଆସନ୍ତା ଜୁନରେ ଦଶମ ଶ୍ରେଣୀ ଖୋଲିବ । ତେଣୁ ସେମାନେ ଗ୍ରାଜୁଏଟ ଶିକ୍ଷକ ଖୋଜିବାରେ ବ୍ୟସ୍ତ ଥାଆନ୍ତି । ଯୁଦ୍ଧ ବଜାରରେ ଗ୍ରାଜୁଏଟ ମାନଙ୍କପାଇଁ ନିଯୁକ୍ତି ସୁଯୋଗ ଯଥେଷ୍ଟ ଥାଏ । ମୁଁ ଗାଁରେ ଥାଏ । ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ଓ ରେଭେନ୍ସା କଲେଜର ଶେଷ ଇ.ଏସ୍. ଅଧ୍ୟକ୍ଷ ପରିଜା ସାହେବଙ୍କ ପ୍ରମାଣପତ୍ର । ପରୀକ୍ଷା ଫଳ ବାହାରିଲା ପରେ ବାଲେଶ୍ୱରରୁ ସପ୍ଲାଇ ସୁପରଭାଇଜର ଓ କଟକରୁ ସପ୍ଲାଇ ଇନ୍ସପେକ୍ଟର

ନିଯୁକ୍ତି ପତ୍ର ପାଏ । ଆକାଉଟାଣ୍ଟ ଜେନେରାଲ (ସେତେବେଳେ କୁହାଯାଉଥାଏ କଂପଟ୍ରୋଲର ଅଫ ଏକାଉଣ୍ଟ) ଅଫିସ ରାଞ୍ଚିରେ । ସେଠାରୁ ମଧ ଖଣ୍ଡେ ନିଯୁକ୍ତି ପତ୍ର ପାଏ । ବୋଧହୁଏ ଚାକିରିକୁ ଲୋଭନୀୟ କରିବାକୁ ତିନୋଟି ଆଗୁଆ ଇନକ୍ରିମେଣ୍ଟ ମଧ ଦେଇଥାଆନ୍ତି । ଆଶ୍ଚର୍ଯ୍ୟ ହେଲି । ସେମାନେ ମୋର ଗାଁ ଠିକଣା କିପରି ପାଇଲେ । ପରେ ଜାଣିଲି କଲେଜରୁ କୃତୀ ଛାତ୍ରମାନଙ୍କର ସ୍ଥାୟୀ ଠିକଣା ସବୁ ଜିଲ୍ଲାମାଜିଷ୍ଟ୍ରେଟମାନେ ମଗାଇ ରଖିଥା'ନ୍ତି । ଗାଁରେ ରହିବା କିଛିଦିନ ନିତାନ୍ତ ଦରକାର ଥିଲା । ପ୍ରଥମେ ଷାଠିଏ ତାପରେ ସତୁରି ନା ପଞ୍ଚସ୍ତରି ଟଙ୍କା ଦରମା ମିଳିଲା । ଆଗ ମାଇନର ସ୍କୁଲ ପ୍ରଧାନଶିକ୍ଷକ ପରେ ଜୁନମାସରୁ ହାଇସ୍କୁଲ ଶିକ୍ଷକ । ଦୁଇ ଅନୁଷ୍ଠାନର ପରିଚାଳନା ସମିତି ପ୍ରାୟ ଏକ । ହାଇସ୍କୁଲରେ ଯୋଗଦାନ କରି ଇଂରାଜୀ ଇତିହାସ ପଢ଼ାଇଲି । ପ୍ରଧାନଶିକ୍ଷକ ପରଶୁରାମ ଦାସ । ସେ B.Sc. ମାତ୍ର ସବୁ ବିଷୟରେ ତାଙ୍କର ଦଖଲ୍ ଥାଏ । ଯେ କୌଣସି ବିଷୟ ବିନା ପ୍ରସ୍ତୁତିରେ ପଢ଼ାଇ ପାରନ୍ତି । ମୋର ପ୍ରଧାନଶିକ୍ଷକ ଦିଗମ୍ବର ଭୂୟାଙ୍କ ବ୍ୟତୀତ ଅନ୍ୟ କୌଣସି ଶିକ୍ଷକ ଏପରି ଯୋଗ୍ୟତାର ମତେ ଜଣା ନାହିଁ । ସେ ଭଦ୍ରଖ ହାଇସ୍କୁଲରୁ ବୃତ୍ତି ପାଇଥିଲେ ।

୧୯୬୦ରେ ତତ୍କାଳୀନ ଅବସରପ୍ରାପ୍ତ ପ୍ରଧାନଶିକ୍ଷକ ଗୋକୁଳାନନ୍ଦ ନାୟକ ଯେ କି ଜଣେ ଶିକ୍ଷାବିଦଭାବରେ ଖ୍ୟାତ ଥିଲେ ଓ ରାଜକୁମାର କଲେଜ, ଖୋର୍ଦ୍ଧା, ଭଦ୍ରକରେ ପ୍ରଧାନଶିକ୍ଷକ ଭାବରେ ଓଡ଼ିଶାରେ ସୁପରିଚିତ ଥାଇ ଅନେକ କୃତୀଛାତ୍ର ଓ ପ୍ରତିଷ୍ଠିତ ବ୍ୟକ୍ତିଙ୍କର ଶିକ୍ଷକ ଥିଲେ । ମତେ ଭଦ୍ରକରେ କହିଲେ ତାଙ୍କ ଛାତ୍ରମାନଙ୍କ ମଧରେ ଅସାଧାରଣ ଥିଲେ ଜଣେ ପରଶୁରାମ ଦାସ । ସାହିତ୍ୟ ସଂଗୀତ ନାଟକ ନୃତ୍ୟକଳା ସବୁଥିରେ ତାଙ୍କର ଦଖଲ ଥାଏ । ହାଇସ୍କୁଲ ପାଇଁ ପାଣ୍ଠି ସଂଗ୍ରହ ନିମିତ୍ତ ସେ ଗୋଟିଏ ନାଟକ 'ଶକୁନ୍ତଳା' ନିଜ ନିର୍ଦ୍ଦେଶନାରେ ମଞ୍ଚସ୍ଥ କରିଥିଲେ । ନାଟକଟି ସେ ଲେଖିଥିଲେ । ଗୀତ ଓ ସ୍ୱର ସଂଯୋଜନା ସେ ନିଜେ କରିଥିଲେ । ସମସ୍ତେ ଏହାର ପ୍ରଶଂସା କଲେ । ଅର୍ଥ ମଧ ଭଲ ସଂଗ୍ରହ ହୋଇ ଆସିଲା । ଏହା ଅବଶ୍ୟ ମୋ ଯୋଗଦାନ ଆଗରୁ ଥିଲା । ନାଟକର ପାଣ୍ଡୁଲିପି ମୁଁ ଦେଖିଲି । ପରେ ଜାଣିଲି ଏହା ହଜିଗଲା । ପ୍ରକାଶିତ ହୋଇପାରିଲା ନାହିଁ । ତାଙ୍କର ସୁକନ୍ୟା କଲ୍ୟାଣୀୟା ଝୁନାକୁ (ପ୍ରତିଭାରାୟ) ମୁଁ ଏହି ନାଟକ କଥା ଥରେ ଶୁଣାଇଥିଲି । ହେଡ଼ମାଷ୍ଟରଙ୍କର ଆଳସ୍ୟ

ବଡ଼ ଦୋଷ ଥିଲା । କଲମ ଧରାଇ ବରାଦ କଲେ ସେ ଯେ କୌଣସି ପାଠ୍ୟବସ୍ତୁର ନୋଟ ସରଳ ଭାଷାରେ ଲେଖିଦେବେ । ଗୀତ ବା ଏକାଙ୍କିକା ଲେଖିବେ । ମାତ୍ର ସେଇ କଲମ ଧରିବା କଷ୍ଟକର କାମ । ପଢ଼ାପଢ଼ି ଭଲଭାବେ ଚାଲିଲା । ଯେତେ ପିଲା ମାଟ୍ରିକ ପରୀକ୍ଷା ଦେଇଥିଲେ କେବଳ ଜଣକୁ ଛାଡ଼ି ଆଉ ସମସ୍ତେ ପାସ କଲେ । ବାଲିକୁଦା ଥାନାର ଏହା ଏକମାତ୍ର ହାଇସ୍କୁଲ । ଆଖପାଖ ଅଞ୍ଚଳରେ ଆନନ୍ଦ ଖେଳିଗଲା । କୃତୀ ଛାତ୍ରମାନଙ୍କୁ ଫୁଲତୋଡ଼ା ଦେଇ ସମ୍ବର୍ଦ୍ଧନା କରାଗଲା । ବିଶିଷ୍ଟ ଶିକ୍ଷାବିଦ ମଧୁସୂଦନ ବିଶ୍ୱାଳ ସେମାନଙ୍କୁ ଉଦବୋଧନ ଦେଲେ । ପ୍ରଧାନ ଶିକ୍ଷକଙ୍କ ସହିତ ମୋର ମଧ ପ୍ରଶଂସାରେ ଭାଗ ମିଳିଲା । ଏହି ସମୟରେ ମାଟ୍ରିକ ନୂଆ ସିଲାବସରେ ବ୍ରିଟିଶ ଇତିହାସ ପରିବର୍ତ୍ତେ ବିଶ୍ୱଇତିହାସ ସ୍ଥାନ ପାଇଲା । ପାଠ୍ୟପୁସ୍ତକର ଅଭାବ । H.G Wellsଙ୍କ ବିଶ୍ୱ ଇତିହାସ ବହି ମାଇନରସ୍କୁଲ ପୁସ୍ତକାଗାରରେ ହେଡ଼ମାଷ୍ଟ୍ର ରାଜକିଶୋର କାନୁନଗୋ ରଖିଥାନ୍ତି । ତାକୁ ଓ ନେହେରୁଙ୍କ Glimpses of world Historyରୁ ତଥ୍ୟ ସଂଗ୍ରହକରି ଖଣ୍ଡେ ବହି ଲେଖିଲି । ପାଣ୍ଡୁଲିପିନେଇ କଟକ ଟ୍ରେଡିଂ କଂପାନି ମାଲିକ ପଣ୍ଡିତ ଆକୁଳମିଶ୍ରଙ୍କୁ ଦେଖାଇଲି । ସେ ରଖିଥିଲେ । ମୋର ବୃତ୍ତିଗତ ପରିବର୍ତ୍ତନ ପରେ ମୁଁ ସେ ଦିଗରେ ଆଉ ଧ୍ୟାନ ଦେଲି ନାହିଁ ।

ନିଜର ଘର ଦ୍ୱାର ତ ନଥାଏ । ବାପାଙ୍କୁ ପୁରା ଦରମା ଦେଇଦିଏ । ମୋର ଖରଚ ପାଞ୍ଚ ଦଶଟଙ୍କାରୁ ବେଶି ନଥାଏ । ବେଳାଟେ ହଷ୍ଟେଲ ମେସରେ ଖାଇ ଦେଇ ପିଲାମାନଙ୍କୁ ଅଧିକା ସମୟଦେଇ ପଢ଼ାଇବାକୁ ରହିଯାଏ । କାଠ ବାଉଁଶ ମଧ ବାପାଙ୍କୁ ଧାରଉଧାରରେ ମିଳିଲା । ତେଣୁ ସେଇ ପୁରୁଣା ଘରଡ଼ିଅରେ ପୂର୍ବପଶ୍ଚିମ କରି ତିନିଗୋଟି କୋଠରୀ ଥାଇ ଗୋଟିଏ ଚାଳଛପରଘର ଛଅମାସ ମଧରେ ପ୍ରସ୍ତୁତ ହୋଇଗଲା । ମୋର ସହପାଠୀ ବଡ଼ରୋଡ଼ଙ୍ଗର ସଚିଦାନନ୍ଦ ପଟ୍ଟନାୟକ ମଧ ବି.ଏ ପରୀକ୍ଷା ନେଇ ଆସି ବିଦ୍ୟାଳୟରେ ଯୋଗଦେଲେ । ପ୍ରଧାନଶିକ୍ଷକଙ୍କ ଗଣିତ ଭୂଗୋଳ ସେ ତଳ ଶ୍ରେଣୀରେ ପଢ଼ାଇଲେ । ତାଙ୍କର ବୋଝ ଗଲା । ଉପର ଶ୍ରେଣୀର ଫଳାଫଳ ପ୍ରତି ସେ ବିଶେଷ ଦୃଷ୍ଟିଦେଲେ । କହିଲି ସିନା ପୋଥିରେ ଡ଼ୋର ବାନ୍ଧିଲି ମାତ୍ର ଜୟକୃଷ୍ଣ ଆଲାହାବାଦରେ ଅର୍ଥନୀତିରେ ଏମ.ଏ ରେ ନାମ ଲେଖାଇ ଚିଠି ଲେଖେ-ତାର ବିଶ୍ୱବିଦ୍ୟାଳୟ ପାଠପଢ଼ା କଥା ଲେଖି । ସୂର୍ଯ୍ୟକାନ୍ତ କଳାହାଣ୍ଡି ବୃତ୍ତି ପାଇ କଲିକତାରେ

ବାଣିଜ୍ୟରେ ଏମ.ଏ (ପରେ ଏମ୍.କମ୍ କୁହାଗଲା) ଓ ଆଇନ ପଢୁଥାଏ । ୩ ବରଷ ପରେ M.A.B.L. ହୋଇ ବାହାରିବ । ଆଉ ଜଣେ ଅନର୍ସ ସହପାଠୀ ନାରାୟଣ ପତି ପରେ ଓଡ଼ିଶାର MLA ମଧ କଲିକତାରେ ଅର୍ଥନୀତିରେ ପଢୁଥାଏ । ସେ ଦୁହେଁ ଚିଠି ଲେଖନ୍ତି । ଆଉମଧ ପଦାର୍ଥ ବିଜ୍ଞାନରେ ହାଇସ୍କୁଲ ସହପାଠୀ ହରିହରି ମିଶ୍ର ପଢୁଥାନ୍ତି । ସେମାନେ COSIB Calcutta Oriya Student Information Bureau ନାମରେ ଗୋଟିଏ ସଂସ୍ଥା ଗଢ଼ିଥାଆନ୍ତି । ପାଠପଢ଼ା ବିଷୟରେ ତଥ୍ୟ ଦିଅନ୍ତି । ୨ବରଷ ଶିକ୍ଷକ ହେଲାପରେ କେବଳ M.A ଘରୋଇ ଭାବରେ ଦେଇହେବ । କଲିକତାରେ ଓଡ଼ିଆ M.A ସର୍ବ ପୁରାତନ । ଆମର ରେଭେନ୍ସାରେ ମଧ ଓଡ଼ିଆ MA ଖୋଲିଥାଏ । ଉଭୟ ସିଲାବସ ମଗାଇଲି । ଭାବୁଥାଏ ଓଡ଼ିଆ M.A ପାସକରି ଚାକିରିକରି ପରେ ମୋର ବିଷୟ ଅର୍ଥନୀତିରେ ପରୀକ୍ଷା ଦେବି । ପ୍ରତିଜିଲ୍ଲାରେ କଲେଜ ଖୋଲୁଥାଏ । ତେଣୁ ନିଯୁକ୍ତି ପାଇବା କଷ୍ଟକର ନ ଥାଏ । ପ୍ରଧାନ ଶିକ୍ଷକ ପରଶୁବାବୁ B.Sc. ହେଲେ ମଧ ଓଡ଼ିଆ ପୁରାତନ କାବ୍ୟ ସାହିତ୍ୟ ଓ ସଂସ୍କୃତ ପତ୍ରରେ ମୋର ଶିକ୍ଷକ ହେବାଭଳି ଯୋଗ୍ୟତା ରଖିଥାନ୍ତି । M.A ଓଡ଼ିଆର ସିଲାବସ ଅନୁସାରେ ସବୁ ପାଠ୍ୟ ବହି ମଗାଇ ବିଦ୍ୟାଳୟ ପୁସ୍ତକାଗାରରେ ରଖିଥାଏ ।

ଯୁଦ୍ଧ ପ୍ରାୟ ସରି ଆସୁଥାଏ ମିତ୍ରଶକ୍ତି ନିଶ୍ଚେ ଜିତିବ ଏହା ଜଣା ପଡୁଥାଏ । ୧୯୪୫ ଅପ୍ରେଲ ମାସରେ ଇଟାଲିର ଉତ୍ୟକ୍ତ ଯୁଦ୍ଧ ବିରୋଧି ଲୋକ ମୁସୋଲିନିଙ୍କୁ ହତ୍ୟା କଲେ । ଅପ୍ରେଲ ବର୍ଷ ଶେଷ ଆଡ଼କୁ ପରାଜୟ ସୁନିଶ୍ଚିତ ଜାଣି ହିଟଲର ଆତ୍ମହତ୍ୟାକଲେ । ଜାପାନର ହିରୋସିମା ନାଗାଶକି ଉପରେ ଆଣବିକ ବୋମା ପଡ଼ିବାରୁ ଜାପାନ ଆତ୍ମସମର୍ପଣ କଲା । ଶେଷରେ ୧୯୪୬ ବେଳକୁ ଯୁଦ୍ଧ ସରିଗଲାଣି । ଓଡ଼ିଶାରେ ପାରଳା ମିଳିତ ମନ୍ତ୍ରୀମଣ୍ଡଳ ଭାଙ୍ଗିଯିବାପରେ ୯୩ଧାରା ଅନୁସାରେ ଲାଟ ଶାସନ ଚାଲୁଥାଏ । ଜଣେ Advisor ଥାଆନ୍ତି । ମନ୍ତ୍ରୀମଣ୍ଡଳର ସବୁ କ୍ଷମତା ତାଙ୍କର ହାତରେ । ସେତେବେଳେ ଥାଆନ୍ତି ବିଜି ଗୋଖଲେ । ସେ ପରିଜା ସାହେବଙ୍କର କେମ୍ବ୍ରିଜବେଳର ସହପାଠୀ । ସେ କହିଥାଆନ୍ତି ଯୁଦ୍ଧୋତ୍ତର ପୁର୍ନଗଠନ ଯୋଜନା ପ୍ରସ୍ତୁତ ହେବ । ଶିକ୍ଷା ସ୍ୱାସ୍ଥ୍ୟ ଜଳସେଚନ କୃଷି ପଶୁପାଳନ ଯୋଜନାମାନ କାର୍ଯ୍ୟକାରୀ କରିବାକୁ ବହୁତ ଲୋକଶକ୍ତିର ଆବଶ୍ୟକତା ପଡ଼ିବ । ବିଦେଶରେ ଶିକ୍ଷା

ନିମିତ୍ତ କୃତୀ ଛାତ୍ରମାନଙ୍କୁ ପଠାଯିବ ଓ ପ୍ରଶାସନରେ ଅନେକ ନିଯୁକ୍ତି ମିଳିବ । ସିଧାସଳଖ ଡେପୁଟି କଲେକ୍ଟର ନିଯୁକ୍ତି ପ୍ରଦେଶଗଠନ ପରେ ଉଠି ଯାଇଥାଏ । ପ୍ରତିବର୍ଷ ୪/୫ ଜଣ ସବଡେ଼ପୁଟି ନିଆଯାଉଥିଲେ ମଧ୍ୟ ସେ ବର୍ଷ ଏହାର ୩/୪ ଗୁଣ ନେବାର ଶୁଣାଯାଉଥାଏ । ବାଲିକୁଦାରେ ଏହାଶୁଣି ମୁଁ ମଧ୍ୟ ସେଥିପ୍ରତି ସଜାଗ ଥାଏ । ଯେଉଁମାନେ ପ୍ରଥମଶ୍ରେଣୀର ଛାତ୍ର ସେମାନେ ବିଦେଶ ବୃତ୍ତି ପାଇ ଚାଲିଗଲେ । ଅନ୍ୟ କେତେ ଅଧ୍ୟାପକ ଚାକିରିକୁ ବାଛିନେଲେ । ତେଣୁ ମୁଁ ନିଯୁକ୍ତିର ଆଶାୟୀ ହେଲି । ବୋରିକିନାରେ ଲାହା ଇଷ୍ଟେଟର ଜଣେ ମ୍ୟାନେଜର ଥାଆନ୍ତି । ରେଭେନ୍ସାରୁ ବିଏଲ ପାସ କରିଥାଆନ୍ତି । ଅଳ୍ପ ବୟସ । ତାଙ୍କ ଅଫିସରେ ଓଡ଼ିଶା ଗେଜେଟ ଆସେ । କଟକ ଡ଼ାକ ବାଲିକୁଦା ଆସି ସେଠାରେ ଖୋଲାଯାଇ ଅଲଗା ଥଳିରେ ପଶି ଡ଼ାକହରକରା ମାରଫତ ବୋରିକିନ ପଠାଯାଏ । ଡ଼ାକ ମୁନସି ଥାଆନ୍ତି ମରିଚିଆପଦାର ଭାବଗ୍ରାହି ମହାନ୍ତି । ସେତେବେଳେ ରବିବାର ମଧ୍ୟ ଡ଼ାକଘର ଖୋଲା ଥାଏ । ଢ଼ଗ ଥାଏ ଥାନା, ପାଇଖାନା, ଡ଼ାକ୍ତରଖାନା, ଡ଼ାକଖାନା, ମୁର୍ଦ୍ଦାରଖାନା, ଗାଡ଼ିଖାନା, ତାଡ଼ିଖାନା ଏମାନଙ୍କର ଛୁଟି ନାହିଁ । ତାଙ୍କ ସୌଜନ୍ୟରୁ ଡ଼ାକ ଦଦଲବେଳେ ମୁଁ ଓଡ଼ିଶା ଗେଜେଟ ଖୋଲି ଟିକେ ଆଖି ପକାଇଦିଏ - ବେଶିକରି ନିଯୁକ୍ତି ଫର୍ଦ୍ଦ । ବିହାର, ଓଡ଼ିଶା ଓ ମଧ୍ୟପ୍ରଦେଶ ବେରାର ତିନି ପ୍ରଦେଶପାଇ ଗୋଟିଏ ଲୋକସେବା ଆୟୋଗ ଥାଏ । ପ୍ରତି ପ୍ରଦେଶରୁ ଜଣେ ଲେଖା ସଭ୍ୟ ଥାଆନ୍ତି । ତାଙ୍କ ସଦର ମହକୁମା ରାଞ୍ଚିରେ । ଗେଜେଟେଡ଼ ଚାକିରି ନିଯୁକ୍ତି ପାଇ ସେମାନେ ସାକ୍ଷାତ କରି ଉପଯୁକ୍ତ ପ୍ରାର୍ଥୀ ତାଲିକା ସରକାରଙ୍କୁ ଦିଅନ୍ତି । ଓଡ଼ିଶାରୁ ଲକ୍ଷ୍ମୀଧର ମହାନ୍ତି (କଟକ) ରାମକୃଷ୍ଣ ରଥ (ବ୍ରହ୍ମପୁର) ସଭ୍ୟ ଥିଲେ । ସେତେବେଳେ ଅବସରପ୍ରାପ୍ତ ନୂତନ ଓଡ଼ିଶାର ପ୍ରଥମ ଆଇଜି ଇଏଓ EAO Perkin ପର୍କିନ ଆଇପି ଓଡ଼ିଶାରୁ ସଭ୍ୟ ଓ ସେ ମଧ୍ୟ କମିସନର ଅଧ୍ୟକ୍ଷ ଥାଆନ୍ତି । ବିଜ୍ଞାପନ ଦେଖି ଦରଖାସ୍ତ କଲି । ଜିଲ୍ଲା ମାଜିଷ୍ଟ୍ରେଟଙ୍କଠାରୁ ଚରିତ୍ର ଓ ଆଚରଣ ସାଟିଫିକେଟ ବ୍ୟତୀତ ଶିକ୍ଷକ ବା ସଂପର୍କିତ ନଥାଇ ଦୁଇଜଣ ରେଫରିଙ୍କ ନାମ ମଧ୍ୟ ଦେବାକୁ ପଡ଼େ । ଡ଼ାକ୍ତର ସାଟିଫିକେଟ ମଧ୍ୟ ଦିଆଯାଏ । ସାକ୍ଷାତ ପାଇ ଡ଼କରା ଆସିଲା । ନଭେମ୍ବର ୧୯୪୫ରେ ବର୍ତ୍ତମାନ ଯେଉଁଠି ମୁଖ୍ୟ ହାଇକୋର୍ଟ ବିଚାରପତି ରହୁଛନ୍ତି ସେହି କୋଠିରେ ସାକ୍ଷାତ ହୁଏ । କମିସନ ପରାମର୍ଶ ଅନୁସାରେ ସରକାରୀ

ନିଯୁକ୍ତି ପଠାଯାଏ ଜାନୁୟାରୀ ୧୯୪୬ରେ । ତାପୂର୍ବରୁ ମେଡ଼ିକାଲ ବୋର୍ଡ଼ ବସି ସ୍ୱାସ୍ଥ୍ୟପରୀକ୍ଷା କରନ୍ତି । ମୋର କୋଷବୃଦ୍ଧି (Hydrocele) ଥିବା ଜଣାଗଲା । ଅଳ୍ପସମୟ ମଧ୍ୟରେ ପରିଡ଼ା ସାହେବଙ୍କ ସୁପାରିଶରେ ମେଡ଼ିକାଲ କଲେଜ ଅଧ୍ୟକ୍ଷ ମେଜର ଓନିଲ ସାହେବ ଏହି ଅସ୍ତ୍ରୋପଚାର କରିଦେଲେ । ଫେବୃଆରି ମାସ ୧୫ ତାରିଖ ଅପରାହ୍ନରେ ଅନୁଗୁଳ Officer Training Centreରେ ଯୋଗ ଦେଲି । ସମସ୍ତ ସିଧାସଳଖ ଓ ପ୍ରମୋସନ ପାଇଥିବା ନିଯୁକ୍ତ ପ୍ରାର୍ଥୀ ମାନଙ୍କ ବ୍ୟତୀତ କେତେକ ଗଡ଼ଜାତର ସହକାରୀ ଦେୱାନ ଓ ଅନ୍ୟ ଅଫିସର ମଧ୍ୟ ଏଥିରେ ଯୋଗ ଦେଇଥାନ୍ତି । ସେଠାରେ ଆଇନ ବ୍ୟତୀତ ସର୍ଭେ ଓ ବନ୍ଦୋବସ୍ତର କ୍ଷେତ୍ରୀୟ ଶିକ୍ଷା ମଧ୍ୟ ଦିଆଯାଉଥାଏ । ୩ମାସ ଟ୍ରେନିଂ ସରିଲା ପରେ ବିଭିନ୍ନ ଜିଲ୍ଲାମାନଙ୍କୁ ଆମ୍ଭମାନଙ୍କୁ ଟ୍ରେଜରି ଟ୍ରେନିଂ ଓ ଜିଲ୍ଲା ସବଡ଼ିଭିଜନ ଅଫିସରେ ଶିକ୍ଷା ଗ୍ରହଣ ନିମିତ୍ତ ପଠାଇଦିଆଗଲା ।

ବାଲିକୁଦା ଚାକିରିରୁ ଇସ୍ତଫା ଦେଲି । ମନରେ ଯେଉଁ କଳ୍ପନା ଥିବା ଅନ୍ୟ ସାଙ୍ଗମାନଙ୍କ ଭଳିଆ ଏମ.ଏ ହେବି ତାହା ସେମିତି ରହିଗଲା । ଅବଶ୍ୟ ଦଶବର୍ଷ ପରେ ବିଶେଷ ଅନୁମତି ପାଇ ବିହାର ବିଶ୍ୱବିଦ୍ୟାଳୟର ଭାଗଲପୁର TNJ କଲେଜରୁ ବି.ଏଲ ପାସ କଲି, ଖାଲି ବୃତ୍ତିଗତ ଦକ୍ଷତା ବଢ଼ାଇବାକୁ । କୋରାପୁଟରେ ଟ୍ରେଜରି ଟ୍ରେନିଂ ସରିଲା । ତାପରେ ନବରଙ୍ଗପୁର ସବଡ଼ିଭିଜନକୁ ପଠାଗଲା । ସେଇଠି ମୁଁ ହେଲି ହାକିମ । ମାଜିଷ୍ଟ୍ରେଟ ଥାର୍ଡ଼ କ୍ଲାସ ଓ ସବଡ଼େପୁଟି କଲେକ୍ଟର । କ୍ଷମତା ପଚାଶ ଟଙ୍କାଯାଏ ଜୋରିମାନା ମାସେ ପର୍ଯ୍ୟନ୍ତ ଜେଲଦଣ୍ଡ । ଦରମା ହାର ଟ୧୦୦-୧୧୦-୧୭୫-୫ ଶେଷ ୩୨୦ ନାଁ କେତେ । "ବୋହୂ ହେଉ ପଛେ ବାଣୀ-ନାଆଁ ତ କଟକିଆଣି" । ତେଣୁ ଯାହା ଦରମା ହେଉ ପଛକେ ହାକିମତ । ହାକିମମାନଙ୍କର ଘୋଡାଚଢ଼ା ସେତେବେଳକୁ ଉଠିଗଲାଣି । ସାଇକେଲ ଓ ଯନ୍ତ୍ରଚାଳିତ ଯାନ ମିଳିବାପରେ ବନ୍ଦୋବସ୍ତ ବା ଅନ୍ୟ କ୍ଷେତ୍ର ତଦାରଖ କାମରେ ଏହାର ଆଉ ଆବଶ୍ୟକତା ନଥାଏ । ଆଗରୁ ଘୋଡ଼ାଚଢ଼ା ପାସକଲେ ଦରମା ବଢୁଥିଲା । ନହେଲେ ସେଇ ଦରମାରେ ଅଟକି ଯିବ । ବନ୍ଦୋବସ୍ତରେ ଏହା ନିତାନ୍ତ ଦରକାର ଥିଲା । ନବରଙ୍ଗପୁରରେ ଟ୍ରେନିଂ ପାଉଥିବା ବେଳେ ବିଭିନ୍ନ ଇନକୁଆରି ପାଇ ମଫସଲ ଯିବାକୁ ପଡୁଥିଲା । ସାଇକେଲରେ ଯାଏ । ଆଉ ଜଣେ ପିଅନ ଓ କାନୁନଗୋ ମଧ୍ୟ ସହାୟକ ଭାବେ

ଥାଆନ୍ତି । ଜେଜେ କହୁଥିଲେ

ପାଠପଢ଼ା ବଡ଼ ଦୁଃଖରେ
ଘୋଡ଼ାଚଢ଼ା ବଡ଼ ସୁଖ ।
ପାଠ ପଢ଼େ ଯେ,
ଘୋଡ଼ା ଚଢ଼େ ସେ ।

କୃତଜ୍ଞତା ସହ ସେଇଆ ସ୍ମରଣ କରେ । ଜେଜେ ତ ପନ୍ଦର ବରଷ ଆଗରୁ ଆଖି ବୁଜିଲେଣି । ତାଙ୍କର ଢ଼ଗ ଓ ସ୍ମୃତି ସଞ୍ଚ ରଖିଥାଏ । ବାପା ମୁଁ ହାକିମ ହେବାରୁ ଶୁଣାଇଲେ "ଆମେ ନଥିବା ଲୋକ, ଦୁଃଖ କଣ ଜାଣିଛେ, ତୁ ଯେପରି ଦୁଃଖୀ ଲୋକର ମନକଥା ବୁଝିବୁ । ଉପରହାତ ତଳ କରିବୁ ନାହିଁ ।" ଦୀର୍ଘ ଚଉତିରିଶ ବରଷ ଏଇ କଥା କେଇ ପଦ ମୋର ମାର୍ଗ ଦର୍ଶନ ହୋଇଛି । ଜଗନ୍ନାଥେ ଜାଣନ୍ତି ଜୀବନର ସଫଳତା ବା ବିଫଳତାରେ କେତେଦୂର ଏହା ସହାୟକ କି ପ୍ରତିବନ୍ଧକ ହୋଇଛି । ସେଇ ଜଗନ୍ନାଥଙ୍କୁ ଶେଷରେ ଶୁଣାଉଛି ।

ଜୀବନ ପାତ୍ର ମୋ ଭରିଛ କେତେ ମାତେ
ନ ଦେଲ କିଛି ବୋଲି କହିବି କିହେ ଆଉ ?
ଜୀବନ ପ୍ରିୟତମ ହରିଛ ମୋ ଭରମ
ତରଣୀ ମୋର ତବ ସାଗରେ ବହିଯାଉ
ବୃଥା ମୁଁ ଅଭିମାନୀ ହୃଦେ ଧରଇ ଟାଣି
ମରତ ପ୍ରବାସୀ ମୁଁ ନ ଜାଣି ଆଣେ ଦାଉ
ମାନସ ହଂସ ମୁଁ ମାନସେ ଯିବି ଉଡ଼ି
ମୋ ଦେଶେ ପଥ ହୁଡ଼ି ଭରମେ ଅବିରତ ।
ଅଳପ ତୃଷା କ୍ଷୁଧା ଲଭି ତୁମ୍ଭର ସୁଧା
ତୃପତ ହେଲା, ତେବେ ଲୋଡଇ ଏ ମରତ ।

(ବୈକୁଣ୍ଠନାଥ)






**ବିଷ୍ଣୁଚରଣ ମହାନ୍ତି**

ପି-କାଙ୍ଗାଳିଚରଣ ମହାନ୍ତି
ମାତା-କୋକିଳ ଦେବୀ

ଜନ୍ମ - ଓଢ଼ଣଷଷ୍ଠୀ ୧୯୨୨
ଗ୍ରାମ-କଣିଆ, ପୋ/ଥାନା-ବାଲିକୁଦା
ଜିଲ୍ଲା-ଅବିଭକ୍ତ କଟକ


ଅଶିବରଷ ତଳର ପାଠପଢ଼ା । କୁଚିତ ଗାଁରେ ତାଲିମ ପ୍ରାପ୍ତ ଶିକ୍ଷକ ଓ ବିଦ୍ୟାଳୟ, ଘରୋଇ ଚାଟଶାଳୀ ବେଶି । ମାଟି ଚଟାଣକୁ ଗୋବରରେ ଲିପି ଖଡ଼ି ଗୋଟାଳିରେ ଅକ୍ଷର ଶିକ୍ଷା । ତାପରେ ସିଲଟ । ମାଇନର ସ୍କୁଲ୍ ଏବର ଜଗତସିଂହପୁର ଜିଲ୍ଲାରେ ଦଶଟି ଭିତରେ । କଟକ ସହରରେ ପାଞ୍ଚୋଟି ହାଇସ୍କୁଲ । ସେଠାରୁ ସମୁଦ୍ରକୂଳ ଯାଏ ବିରାଟ ଜନାକୀର୍ଣ୍ଣ ଭୂଖଣ୍ଡରେ ଗୋଟିଏ ମାତ୍ର ହାଇସ୍କୁଲ କୁଜଙ୍ଗରେ । ଓଡ଼ିଶାରେ କଲେଜ କହିଲେ କଟକ ରେଭେନ୍ସା କଲେଜ । ସେଠାରେ ସ୍ୱଳ୍ପ ବିଷୟରେ ଆଇ.ଏ., ବି.ଏ., ଆଇ.ଏସ୍.ସି., ବି.ଏସ୍.ସି., ଇଂରାଜୀରେ ଏମ୍.ଏ. ଓ ଆଇନ (ବି.ଏଲ୍) ପଢ଼ାର ବ୍ୟବସ୍ଥା ଥାଏ । ସ୍ଥାନ ସୀମିତ । ନାମଜାଦା ଅଧ୍ୟକ୍ଷ ଓ ବହୁ ଅଧ୍ୟାପକ ବିଲାତ ଫେରନ୍ତା ଶିକ୍ଷାବିଦ୍ । ଶିକ୍ଷା ପ୍ରୋତ୍ସାହନ ନିମିତ୍ତ ସରକାର ମାଇନରରେ ସାତଟଙ୍କା, ମାଟ୍ରିକରେ ଦଶ ଟଙ୍କା ଓ ପନ୍ଦର ଟଙ୍କାର କେତୋଟି ଶିକ୍ଷାବୃତ୍ତି ଦିଅନ୍ତି ।

ତଥାପି ବହୁ ବଦାନ୍ୟ ବ୍ୟକ୍ତିଙ୍କର ଉଦାରତା, ଅଧ୍ୟାପକମାନଙ୍କର ନିଷ୍ଠା, ବିଦ୍ୟାର୍ଥୀମାନଙ୍କର ଆଗ୍ରହ ଫଳରେ ଅନେକ ନଥିଲା ଘରର ପିଲା ପାଠ ପଢ଼ି ପାରୁଥିଲେ । ଖ୍ରୀ. ୧୯୩୦ରୁ ୧୯୪୪ ଚଉଦବର୍ଷର ପାଠପଢ଼ା ବର୍ଣ୍ଣନା ସହିତ ଗୋଟିଏ ଗ୍ରାମୀଣ ଜୀବନର ନିଖୁଣ ସାମାଜିକ ଚିତ୍ର ଏଥିରେ ମିଳିବ ।


ISBN -13:978-81-87982-64-7